# ବିଜୟ ଶତପଥୀଙ୍କ
# ନାଟ୍ୟଚିନ୍ତା

ଜ୍ଞାନରଞ୍ଜନ ପଣ୍ଡା



# ବିଜୟ ଶତପଥୀଙ୍କ ନାଟ୍ୟଚିନ୍ତା

ଜ୍ଞାନରଂଜନ ପଣ୍ଡା




କଟକ–୨

ବିଜୟ ଶତପଥୀଙ୍କ
ନାଟ୍ୟଚିନ୍ତା

ଲେଖକ :
ଜ୍ଞାନରଂଜନ ପଣ୍ଡା

ପ୍ରକାଶକ :
ଅଗ୍ରଦୂତ
ବାଙ୍କାବଜାର, କଟକ - ୨

ପ୍ରଥମ ପ୍ରକାଶ : ୨୦୧୪ (ମକର ସଂକ୍ରାନ୍ତି)

କମ୍ପ୍ୟୁଟର ସହାୟତା :
ଏମ୍. ପ୍ରିଣ୍ଟର୍ସ, କଟକ

ପ୍ରଚ୍ଛଦପଟ୍ଟ : ଶଶିକାନ୍ତ ରାଉତ

ମୁଦ୍ରଣ : ପଞ୍ଚସଖା ପ୍ରକାଶନୀ, କଟକ

ମୂଲ୍ୟ : ଟ. ୧୦୦/-

**BIJOY SATPATHINKA NATYACHINTA**

Written by :
**Gyanaranjan Panda**

Published by :
**AGRADUTA**
Banka Bazar, Cuttack-2

1st Edition : **2014**

Price : ₹ **100/-**

ପୁରାଣ ଓ ପରଂପରା ଭିତର୍ ସାହିତ୍ୟର ଉତ୍ସ ଖୋଜିବାର ମାର୍ଗ ଦେଖାଇଥିବା

ମୋର ଜେଜେବାପା **ଶ୍ରୀଯୁକ୍ତ ଜୟେଶ୍ୱର ପଣ୍ଡା**

ଏବଂ

ସାହିତ୍ୟ ସମାଲୋଚନାର ବ୍ରହ୍ମା-ବିଷ୍ଣୁ... ଶିଖାଇଥିବା ପୂଜ୍ୟ ଆଲୋଚକ ଗୁରୁ

**ଂ ଲକ୍ଷ୍ମଣ କୁମାର ପରିଡ଼ା** ମହୋଦୟଙ୍କୁ...

# ଦି' ପଦକଥା

ଆଲୋଚନା ଗ୍ରନ୍ଥଟି ଲେଖିଲାବେଳେ ବାରମ୍ବାର ପ୍ରୋତ୍ସାହନ ଯୋଗାଇ ଦେଉଥିବା ପୂଜନୀୟା ପ୍ରଫେସର ସଂଘମିତ୍ରା ମିଶ୍ର ଓ ଡ. ବିଷ୍ଣୁପ୍ରିୟା ଓତାଙ୍କ ପାଖରେ ନିଜର କୃତଜ୍ଞତା ଜଣାଉଛି । ମୋତେ ନୂଆ ଦୃଷ୍ଟିଭଂଗୀ ଦେଇ ବିଜୟ ଶତପଥୀଙ୍କ ନାଟକକୁ ମୂଲ୍ୟାୟନ କରିବାର ପଥ ଦେଖାଇଛନ୍ତି ମୋର ପୂଜ୍ୟ ଗୁରୁ ଡ. ସନ୍ତୋଷ ତ୍ରିପାଠୀ । ଏହି ଗ୍ରନ୍ଥ ରଚନା ସମୟରେ ତାଙ୍କର ମୂଲ୍ୟବାନ ପରାମର୍ଶ ପାଇଁ ସେ ମୋର ସଦା ସ୍ମରଣରେ ରହିବେ । ମୋର ପ୍ରକାଶିତ ପୁସ୍ତକର ମୁଖ ଦେଖିବାକୁ ସର୍ବଦା ବ୍ୟାକୁଳ ଥିବା ବିଶିଷ୍ଟ ସମାଲୋଚକ ଡ. ସୁରେନ୍ଦ୍ର କୁମାର ମହାରଣାଙ୍କ ପାଖରେ ବିନତମସ୍ତକ ହେଉଛି । ତାଙ୍କର ପ୍ରେରଣା, ଆଶୀର୍ବାଦ ମୋତେ ଏତେ ବାଟ ଆଗେଇ ଆଣିଛି । ଅଗ୍ରଜ ପ୍ରତିମ ଜ୍ଞାନୀ ଦେବାଶିଷ ଭାଇଙ୍କ ଶୁଭେଚ୍ଛା ଏ ପୁସ୍ତକ ପ୍ରକାଶ ପାଇବା ପୂର୍ବରୁ ମୋତେ ପ୍ରେରଣା ଦେଇଛି । ଏମାନଙ୍କ ବ୍ୟତୀତ ମୋତେ ଆବଶ୍ୟକୀୟ ସହଯୋଗ ପ୍ରଦାନ କରିଥିବାରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଗବେଷକ ସନ୍ଦୀପ ଭାଇ, ମିଟୁ ଭାଇ, ଆଶିଷ ଭାଇନା ଓ ରାକେଶ ଭାଇଙ୍କୁ ସାଧୁବାଦ ପ୍ରଦାନ କରୁଛି । ଏହି ପୁସ୍ତକର ଅକ୍ଷର ମୁଦ୍ରଣ କରିଥିବା ଶୁଭମ୍ ପ୍ରେସ୍ ଓ ଶାନ୍ତି ଅପାଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି । ପୁସ୍ତକର ପ୍ରକାଶନ ଦାୟିତ୍ୱ ଅଗ୍ରଦୂତ, କଟକ ଭଳି ପ୍ରତିଷ୍ଠିତ ପୁସ୍ତକ ପ୍ରକାଶନ ସଂସ୍ଥା ବହନ କରିଥିବାରୁ ତାଙ୍କ ପାଖରେ କୃତଜ୍ଞତା ପ୍ରକାଶ କରୁଛି । ଆଶା କରୁଛି, ଏହି ପୁସ୍ତକଟି ପାଠକମାନଙ୍କ ନିକଟରେ ଆଦୃତ ହେବ '

# ମୁଖଶାଳା

"... ମୁକ୍ତି ସୁଦୂର ପରାହତ ବନ୍ଧୁଗଣ । ଚତୁର୍ଦ୍ଦିଗରେ ଅଦୃଶ୍ୟବାଡ଼ । ମୁକ୍ତି ଗୋଟେ ଭୁଲ ଶବ୍ଦ । ... କାରାଗାର ଭାଙ୍ଗୁ ଥାଏ ଗଢ଼ାଉଥାଏ ବାରମ୍ବାର ।" ଏମିତି ଏକ ସଂଳାପ ମୋ କାନରେ ବାରମ୍ବାର ଗୁଣୁଗୁଣୁ ହେଉଥାଏ । ଏ ସଂଳାପର ସ୍ରଷ୍ଟା ନାଟ୍ୟକାର ବିଜୟ ଶତପଥୀ । ତାଙ୍କର ଏ ସଂଳାପ କେବଳ ମୋର କାହିଁକି ସମସ୍ତଙ୍କ ମନରେ ରେଖାପାତ କରିବା ପାଇଁ ସମର୍ଥ । ତାଙ୍କ ନାଟକ ଭିତରେ ଜୀବନ ଓ ଜଗତ ପ୍ରତି ଅଙ୍ଗୀକାରବଦ୍ଧତାର ପ୍ରତିଶ୍ରୁତି ରହିଛି । ତାହା ଦର୍ଶକ, ପାଠକଙ୍କୁ ତାଙ୍କ ନାଟକ ପ୍ରତି ସବୁବେଳେ ଆକର୍ଷିତ କରୁଥିବ । ୧୯୭୦ ମସିହା ପରବର୍ତ୍ତୀ କାଳରେ ଓଡ଼ିଆ ନାଟକ କ୍ଷେତ୍ରରେ ବିଜୟ ଶତପଥୀ ଯେଉଁ ଅଭିନବତ୍ୱ ଆଣିଛନ୍ତି ତାହା ତାଙ୍କୁ ଓଡ଼ିଆ ସାହିତ୍ୟର ଇତିହାସରେ ସର୍ବଦା ସ୍ମରଣୀୟ କରି ରଖିବ । ପରଂପରା-ଐତିହ୍ୟ ଭିତରୁ ଉତ୍ସ ସନ୍ଧାନ କରି ଆଧୁନିକ ଜୀବନ ସହିତ ତାକୁ ଯୋଡ଼ିଦେଇ ମଞ୍ଚ ବିମୁଖ ହେଉଥିବା ଦର୍ଶକଙ୍କୁ ପୁଣି ମଞ୍ଚମନସ୍କ କରାଇବାରେ ନାଟ୍ୟକାର ମହୋଦୟ ଯେଉଁ ସିଦ୍ଧି ଅର୍ଜନ କରିଛନ୍ତି ତା'ର ତୁଳନା ନାହିଁ ।

ଅବିଭକ୍ତ କଟକ ଜିଲ୍ଲା ତଥା ଏବେର ଯାଜପୁର ଜିଲ୍ଲାର ଧର୍ମଶାଳା ଥାନା ଅନ୍ତର୍ଗତ ଶୂଳିଆ ଗ୍ରାମରେ ୧୯୫୨ ମସିହାରେ ଜନ୍ମଗ୍ରହଣ କରନ୍ତି ବିଜୟ ଶତପଥୀ । ତାଙ୍କ ରକ୍ତରେ, ବଂଶଗତ ସୂତ୍ରରେ ମିଶି ରହିଥିଲା କଳା ଓ ସଂସ୍କୃତି ପ୍ରତି ଅନୁରାଗ । ବିଜୟ କୁମାରଙ୍କ ଶିକ୍ଷକ ପିତା ବଂଶୀଧର ଶତପଥୀ ଓ ଶିକ୍ଷକ କକେଇ ପ୍ରାଣବନ୍ଧୁ ଶତପଥୀ ଥିଲେ ନାଟ୍ୟପ୍ରେମୀ କଳା-ସଂସ୍କୃତିପ୍ରାଣ ବ୍ୟକ୍ତି । ତାଙ୍କର ଆଉ ଜଣେ କକେଇ ପ୍ରତାପ ଚନ୍ଦ୍ର ଶତପଥୀ ଥିଲେ ନିଜ ଅଞ୍ଚଳର ଜଣେ ସଂସ୍କୃତିପ୍ରାଣ ବ୍ୟକ୍ତି । ପରିବାରର ଏହି ପୂଜ୍ୟମାନଙ୍କ ପାଖରୁ ବିଜୟ କଳା-ସଂସ୍କୃତିକୁ ଭଲପାଇବା ଶିଖିଥିଲେ । ଗାଁ ଆଖପାଖରେ ହେଉଥିବା ମେଳା, ମଉଛବ ଯାତ୍ରା, ପାଲା ଚପଳମତି ବିଜୟ କୁମାରଙ୍କ ମନରେ ସୃଷ୍ଟି କରିଥିଲା ସୃଜନର ଅନୁରାଗ । ସାଙ୍ଗମାନଙ୍କ ମେଳରେ ନାଟ ତାମ୍‌ସା

ଦେଖିବାକୁ ଯାଉଥିବା ବିଜୟ ଯେ ଦିନେ ଓଡ଼ିଶାର ଅଗ୍ରଗଣ୍ୟ ନାଟ୍ୟକାର ଭାବେ ଉଭା ହେବେ, ଏହା ତୁଳସୀ ଦୁଇ ପତ୍ରରୁ ବାସିଲା ପରି ତାଙ୍କ ପିଲାଦିନରୁ ଜଣାପଡ଼ିଯାଉଥିଲା । ନିଜ ବଂଶର ପରଂପରା ସୂତ୍ରରେ ଏଇ କଳା-ସଂସ୍କୃତିକୁ ଆପଣେଇ ନେବାକୁ ବିଜୟ କୁମାର କେବେ ବି କୁଣ୍ଠା ପ୍ରକାଶ କରିନଥିଲେ ।

ରେଭେନ୍‌ସା ମହାବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଲାଭ ପରେ ବିଜୟ ଶତପଥୀ ଅଧ୍ୟାପକ ଭାବେ ପ୍ରଥମେ ଗୋଦାବରୀଶ ମହାବିଦ୍ୟାଳୟ ବାଣପୁରରେ ଯୋଗ ଦିଅନ୍ତି । ଏହିଠାରୁ ତାଙ୍କ ସାହିତ୍ୟର ଜୟଯାତ୍ରା ପ୍ରସାରିତ ହୁଏ । ମାର୍କସ୍‌ବାଦୀ ଚିନ୍ତାଧାରା ଉପରେ ଗବେଷଣା ପୁଣି ନାଟକ ରଚନା ଭିତରେ ବିଜୟ ଶତପଥୀ ଓଡ଼ିଆ ସାହିତ୍ୟର ଜଣେ ଦିଗ୍‌ଗଜ ନାଟ୍ୟକାର ଓ ସମାଲୋଚକର ସ୍ୱୀକୃତି ପାଆନ୍ତି । ଗୋଦାବରୀଶ ମହାବିଦ୍ୟାଳୟରୁ ରେଭେନ୍‌ସା ମହାବିଦ୍ୟାଳୟ, ଆଉ ଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟ ଭଳି ଓଡ଼ିଶାର ବୃହତ୍ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷାଦାନ କରି ବିଜୟ ଶତପଥୀ ତାଙ୍କ ସମକାଳରେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ-ଦକ୍ଷ ଅଧ୍ୟାପକ ଭାବେ ଛାତ୍ର-ଛାତ୍ରୀଙ୍କର ପ୍ରିୟଭାଜନ ହୋଇପାରିଛନ୍ତି । ଅଧ୍ୟାପକ-ସମାଲୋଚକ-ନାଟ୍ୟକାର ଭାବରେ ବିଜୟ ଶତପଥୀଙ୍କ ଜୀବନ ଓ ସୃଜନ ଜଗତ ଯେଉଁ ଛାପ ଛାଡ଼ିଯାଇଛି, ତାହା ସାହିତ୍ୟର ଇତିହାସ ପୃଷ୍ଠାରେ ନୂତନ ଅଧ୍ୟାୟର ଯେ ସଂଯୋଜନା କରିବ ଏଥିରେ ସନ୍ଦେହ ନାହିଁ ।

'ବିଜୟ ଶତପଥୀଙ୍କ ନାଟ୍ୟଚିନ୍ତା' ପୁସ୍ତକ ଭିତରେ ମୁଁ ବିଜୟ ଶତପଥୀଙ୍କ ନାଟକଗୁଡ଼ିକର ଆବେଦନ ଓ ଉଦ୍ଦେଶ୍ୟ ସଂପର୍କରେ ପାଠକମାନଙ୍କୁ ଅବଗତ କରାଇବାର ସାମାନ୍ୟ ପ୍ରୟାସ କରିଛି । ପୁସ୍ତକର ପ୍ରଥମ ଭାଗରେ ବିଜୟ ଶତପଥୀଙ୍କ ନାଟକର ବିଭିନ୍ନ ଦିଗ ଉପରେ ମୁଁ ଆଲୋଚନା କରିଛି । ଏହି ପର୍ଯ୍ୟାୟରେ ତାଙ୍କ ନାଟକର ବିଭବଗୁଡ଼ିକ ସଂପର୍କରେ ସଂକ୍ଷେପରେ ସୂଚାଇବା ପାଇଁ ମୁଁ ଚେଷ୍ଟା କରିଛି । ବିଜୟ ଶତପଥୀଙ୍କ ନାଟକ ଓଡ଼ିଆ ନାଟ୍ୟଧାରାକୁ ଯେପରି ବୈଚିତ୍ର୍ୟ ମଣ୍ଡିତ କରିଛି ତାହା ପୁସ୍ତକର ପ୍ରଥମ ଭାଗରେ ଆଲୋଚିତ । ପୁସ୍ତକର ଦ୍ୱିତୀୟ ଭାଗରେ ମୁଁ ବିଜୟ ଶତପଥୀଙ୍କ ସମସ୍ତ ମୌଳିକ ନାଟକ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଅଛି । ଏଥିରୁ ତାଙ୍କର ଉପନ୍ୟାସ ଓ ଗଳ୍ପଗୁଡ଼ିକର ନାଟ୍ୟ ରୂପାନ୍ତରଗୁଡ଼ିକ ବାଦ ପଡ଼ିଛି । ତାଙ୍କର ପ୍ରଥମ ନାଟକ 'ଫସିଲ୍‌ର ନିଦ୍ରାଭଂଗ'ଠାରୁ ନିକଟରେ ପ୍ରକାଶ ପାଇଥିବା 'ସୁନ୍ଦରୀ ପ୍ରତିଯୋଗିତା ଓ ଅନ୍ୟାନ୍ୟ ନାଟିକା' ପର୍ଯ୍ୟନ୍ତ ନାଟକ ଗୁଡ଼ିକର ଆଲୋଚନା ମୁଁ ଏହି ପର୍ଯ୍ୟାୟରେ କରିଛି । ନାଟକଗୁଡ଼ିକର ସାହିତ୍ୟିକ ବିଭବ ସହିତ ସେଗୁଡ଼ିକର

ମଞ୍ଚକଳା ଏ ପ୍ରସଙ୍ଗରେ ଆଲୋଚନାର ପରିସରକୁ ଆସିଛି । ନାଟକଗୁଡ଼ିକର ଆବେଦନ ସହ ନାଟକର ବାର୍ତ୍ତାକୁ ପାଠକମାନଙ୍କ ପାଖରେ ପହଞ୍ଚାଇବା ହୋଇଛି ମୋର ଉଦ୍ଦେଶ୍ୟ । ଗ୍ରନ୍ଥରେ ବିଜୟ ଶତପଥୀଙ୍କ ସହ ଏକ ଅନ୍ତରଙ୍ଗ ସାକ୍ଷାତ୍‌କାର ସଂଯୋଜିତ ହୋଇଛି ।

ଉକ୍ତ ପୁସ୍ତକଟି ହେଉଛି ଜଣେ ନାଟ୍ୟକାରଙ୍କ ସମଗ୍ର କୃତିକୁ ଆକଳନ କରିବାର ଏକ ସାମାନ୍ୟ ପ୍ରୟାସ । ବିଜୟ ଶତପଥୀଙ୍କ ପରି ସାଂପ୍ରତିକ କାଳର ଓଡ଼ିଆ ନାଟ୍ୟଧାରାର ଜଣେ ଅଗ୍ରଗାମୀ ସ୍ରଷ୍ଟାଙ୍କ ନାଟକ ବିଷୟରେ ଆଲୋଚନା କରିବା ସେତେଟା ସହଜସାଧ ନୁହେଁ ବୋଲି ମୋର ଧାରଣା । ପରିଶ୍ରମ ଓ ଗବେଷଣା କରି ତାଙ୍କ ନାଟକ ସଂପର୍କରେ ଯେଉଁ ଆଲୋଚନା ମୁଁ ଲେଖିଛି, ତାହା ଯେ ଶେଷ ସିଦ୍ଧାନ୍ତ, ଏକଥା କହିବି ନାହିଁ । ପରବର୍ତ୍ତୀ କାଳରେ ତାଙ୍କ ନାଟକ ସଂପର୍କରେ ସୁଧୀ ଗବେଷକ, ପାଠକ ଆହୁରି ନୂଆ ତଥ୍ୟ, ଦୃଷ୍ଟିଭଂଗୀର ପରିଚୟ ଦେବେ ବୋଲି ଆଶା କରୁଛି । ଏ କ୍ଷେତ୍ରରେ ମୋର ଏହି ପୁସ୍ତକ ସେମାନଙ୍କୁ ସଠିକ୍ ମାର୍ଗଦର୍ଶନ ଦେଇପାରିବ ବୋଲି ମୋର ବିଶ୍ୱାସ ।

ଜ୍ଞାନରଂଜନ ପଣ୍ଡା

# ସୂଚୀପତ୍ର





# ଅପହଞ୍ଚ ଜଗତ ଅଦୂର ଜୀବନର ରୂପକାର
# ବିଜୟ କୁମାର ଶତପଥୀ

୧୯୭୦ ପରବର୍ତ୍ତୀ କାଳରେ ଓଡ଼ିଆ ନାଟକ ଗତାନୁଗତିକ ଶୃଙ୍ଖଳରୁ ମୁକ୍ତ ହୋଇ ନୂତନ ସରଣୀରେ ଯିବା ପାଇଁ ବାଟ ଖୋଜୁଥିବା ବେଳେ ଶତ ଘାତ-ପ୍ରତିଘାତ ଭିତରେ ତାକୁ ନୂତନ ପରିଚିତି ଦେବା ପାଇଁ ସତେ ଯେମିତି ଦୃଢ଼ ସଂକଳ୍ପ ଗ୍ରହଣ କରିଥିଲେ ନାଟ୍ୟକାର ବିଜୟ କୁମାର ଶତପଥୀ । ଜୀବନ ଓ ଜଗତ ପ୍ରତି ଅଙ୍ଗୀକାରବଦ୍ଧ ଦୃଷ୍ଟିକୋଣର ମହମହ ବାସ୍ନାରେ ଭରପୂର ତାଙ୍କର ସୃଷ୍ଟି ସଂଭାର । ନାଟକକୁ ମନୋରଂଜନର ମାଧ୍ୟମ ଅପେକ୍ଷା ସମାଜ ପରିବର୍ତ୍ତନର ମାଧ୍ୟମ ଭାବେ ପରିଣତ କରିବାରେ ଯାଦୁକରର ଭୂମିକା ନିର୍ବାହ କରିଛନ୍ତି ନାଟ୍ୟକାର ଡ. ବିଜୟ କୁମାର ଶତପଥୀ । ଉତ୍ତର ଉପନିବେଶବାଦୀ ଜୀବନର ସମସ୍ତ ଆବର୍ଜ୍ଜନା, ଯାବତୀୟ କେଳେଙ୍କାରୀକୁ ଆଡ଼େଇ ଦେଇ ଏକ ସୁସ୍ଥ-ନୂତନ ପରଂପରାଯୁକ୍ତ ମୂଲ୍ୟବୋଧର ଆବାହନ ତାଙ୍କ ନାଟକରେ ଦେଖିବାକୁ ମିଳେ । ତାଙ୍କ ନାଟ୍ୟସଂଭାର ମଧ୍ୟରେ ଦର୍ଶକଙ୍କୁ ବରାବର ମଞ୍ଚ ମନସ୍କ କରାଇ ପାରିବାର ସାମର୍ଥ୍ୟ ଥିବା ଯୋଗୁ ଆଜିର ସମୟରେ ତାଙ୍କ ନାଟକର ଯଥେଷ୍ଟ ପ୍ରାସଙ୍ଗିକତା ରହିଛି ।

ବିଜୟ କୁମାର ଶତପଥୀ ନାଟକ ରଚନା କଲା ବେଳକୁ ନବନାଟ୍ୟ ଆନ୍ଦୋଳନର ଅଗ୍ରଗଣ୍ୟ ନାୟକ ଭାବେ ପ୍ରତିଷ୍ଠିତ ହୋଇସାରି ଥାଆନ୍ତି ମନୋରଂଜନ ଦାସ, ରମେଶ ପ୍ରସାଦ ପାଣିଗ୍ରାହୀ, ବିଶ୍ୱଜିତ୍ ଦାସ ବିଜୟ ମିଶ୍ର, କାର୍ତ୍ତିକ ରଥ ପ୍ରମୁଖ ନାଟ୍ୟକାର । ସତୁରି ମସିହା ବେଳକୁ ପରୀକ୍ଷା ନିରୀକ୍ଷା ଫଳରେ ଦର୍ଶକଙ୍କଠାରୁ କ୍ରମେ ଦୂରେଇ ଆସୁଥିବା ନାଟକକୁ ପୁନଶ୍ଚ ଦର୍ଶକଙ୍କ ମନଲାଖି କରିବା ଲାଗି ଯେମିତି ସଂକଳ୍ପବଦ୍ଧ ଥିଲେ ନାଟ୍ୟକାର ଡ. ଶତପଥୀ । ନାଟକରେ ଲୋକ ଉପାଦାନର ବ୍ୟବହାର, ପ୍ରାଚ୍ୟ ପରଂପରାର ଆବାହନ, ସଂଗୀତ, ଲୋକପ୍ରିୟ ମିଥିର ଅବତାରଣା କରି ଓଡ଼ିଆ ନାଟକକୁ ଅଧିକରୁ ଅଧିକ ଦର୍ଶକାଭିମୁଖୀ ସେ କରିପାରିଛନ୍ତି । ତାଙ୍କର ସମଗ୍ର ନାଟକ ଜୀବନ ପାଇଁ ଓ ତାହା ଭିଜାମାଟିର ବାସ୍ନାରେ ବିଭୋର ହେଲା ପରି ମନେହୁଏ । ବିଜୟ ଶତପଥୀଙ୍କ ଲେଖନୀ କେବେବି ଜୀବନର ଆହ୍ୱାନକୁ ଟାଳିଦେଇନାହିଁ, ସେ ଲେଖନୀ କେବେ ପର କରିନି ନାଟ୍ୟକାରଙ୍କ ଅନୁସନ୍ଧିତ୍ସୁ ମନକୁ । ଅପହଞ୍ଚ ଜଗତକୁ ଚିହ୍ନି ତା'ର ସ୍ୱରକୁ ନେଇ ଚିହ୍ନା ମଣିଷ ପାଖରେ ପରିଚିତ କରାଇବାରେ ନାଟ୍ୟକାର ସଫଳ ହୋଇଛନ୍ତି । ବାସ୍ତବ ଜୀବନର ସତ୍ୟଠାରୁ ଆଉ ଏକ

ବୃହତ୍ତର ସତ୍ୟ ରହିଛି ତାହା ହେଉଛି ଅପହଞ୍ଚ ଜଗତର ସତ୍ୟ । ଏ ଦୁଇ ସତ୍ୟର ମହାମିଳନ ବିଜୟ କୁମାର ଶତପଥୀଙ୍କ ନାଟ୍ୟମାନସରେ ଅନ୍ତର୍ନିହିତ ଭାବରେ ରହିଛି । ଅପହଞ୍ଚ ପୁଣି ଅଚିହ୍ନା, ଏଇ ଅଚିହ୍ନା ମନେ ହେଉଥିବା, ଦୂର ଲାଗୁଥିବା ଜଗତକୁ ଆପଣାର ମନେ ହେଉଥିବା ମଣିଷର ଅନ୍ତର୍ଜଗତ କୋଳେଇ ନେଇଛି, ଅପହଞ୍ଚ ଜଗତ ବି ପାଖ ମନେ ହେଉଛି ଜୀବନ ସହ ଏକାତ୍ମ ହେବାପରେ । ଏମିତି ଜୀବନ ପ୍ରତି ଏକ ନୂତନ ଦୃଷ୍ଟିକୋଣର ସୂତ୍ରଟିଏ ଲୁକ୍କାୟିତ ହୋଇ ରହିଛି ତାଙ୍କ ନାଟକ ଭିତରେ । ତେଣୁ ଏଇସବୁ ଗୁଣ ହେତୁ ଅପହଞ୍ଚ ଜଗତ ଅଦୂର ଜୀବନର ରୂପକାର ଭାବେ ବିଜୟ କୁମାର ଶତପଥୀଙ୍କୁ ଅଭିହିତ କରିବାରେ କୌଣସି ସଙ୍କୋଚ ନାହିଁ ।

୧୯୭୨ ମସିହାରୁ ନାଟକ ରଚନା ଆରମ୍ଭ କରନ୍ତି ନାଟ୍ୟକାର ବିଜୟ କୁମାର ଶତପଥୀ । ମନଗହନରେ ତାଙ୍କର ଫସିଲ୍‌ର ନିଦ୍ରାଭଂଗ ହେଉ ହେଉ ପୁଣି ଅନୁସନ୍ଧିତ୍ସୁ ମନ ତାଙ୍କର ଦେଖିପାରେ ସମୟର ପଟ୍ଟପରିବର୍ତ୍ତନରେ 'ବିବର୍ଣ୍ଣ ସହର' । ମଣିଷ ଭିତରେ ଥିବା 'କ୍ଷୁଧିତ ସରୀସୃପ'କୁ ଚିହ୍ନଉ ଚିହ୍ନଉ ଲେଖନୀ ତାଙ୍କର କହିଯାଏ, 'ବିଷାଦ ବୃତ୍ତର କାହାଣୀ' । ବାରମ୍ବାର ବଞ୍ଚି ଉଠୁଥିବା 'କଂସର ଆତ୍ମା'କୁ ଦେଖାଇ ପାରିଥିବା ଏ ସାରସ୍ୱତ ସାଧକଙ୍କ ଆଖିରୁ କେବେ ପୁଣି ଅଶ୍ରୁ ଝରିପଡ଼େ ସେଇ ଯୋଗ୍ୟ ଅଥଚ ହତଭାଗ୍ୟ 'କର୍ଣ୍ଣ' ପ୍ରତି । ଜୀବନ ଯୁଦ୍ଧରେ ବାରମ୍ବାର ହାରି ଯାଉଥିବା ମଣିଷର ଅନ୍ଧକାରମୟ ଜୀବନ, ଶୋଷଣ ବ୍ୟବସ୍ଥାର ଅମା ରାତିକୁ ଦୂରେଇ ଦେବା ପ୍ରୟାସରେ ଆଶାର ଆଲୋକ ଦେଖାଇ ସେ କହିପାରନ୍ତି - 'ଏଇ ଯେ ସୂର୍ଯ୍ୟ ଉଏଁ' । ନାଟକ ତାଙ୍କର ପୁରାଣରୁ ମଙ୍ଗଳ-ଅମଙ୍ଗଳର ଛକା-ପଞ୍ଝା ଖେଳ ଭିତରେ ବିଲ୍ୱମଙ୍ଗଳଙ୍କୁ ଯେମିତି ଦେଖାଇପାରେ, ସେମିତି କାରାଗାର ଭିତରେ ଘଟିଥିବା ଦୁଃଖଦ ଘଟଣା, ଅବଦମିତ ବିଦ୍ରୋହର ସ୍ୱରକୁ ନିଜେ କାରାଗାର କହେ 'କାରାଗାରର କାହାଣୀ'ରେ । ବିଦ୍ରୋହୀ ମଣିଷର ସ୍ୱର ରଚିଯାଏ 'ଶୋଣିତ ସ୍ୱାକ୍ଷର' । 'ପ୍ରଳୟ ପରେ'ରେ ବଦଳିଯାଇଥିବା ସଂପର୍କର ମାନଚିତ୍ର, ମଣିଷର ବିଚିତ୍ର ପରିବର୍ତ୍ତନ ସହ ଠିକାଦାରୀ ବ୍ୟବସ୍ଥାକୁ ଦେଖି ଉପହାସ କରି ତାଙ୍କ ନଟସତ୍ତା ଚେତେଇ ଦିଏ 'ପଙ୍କା ପଇସା ଦେଖ୍ ତାମ୍‌ସା' । ନିଜର ବିପୁଳ ସୃଷ୍ଟି ସମ୍ଭାର ଭିତରେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିବା ଡ. ଶତପଥୀଙ୍କ ନାଟ୍ୟପ୍ରତିଭାର ଆଉ ଏକ ବିଶେଷତ୍ୱ ହେଉଛି ନାଟ୍ୟ ରୂପାନ୍ତର । 'ନୀଳଶୈଳ'ରୁ 'ତୃତୀୟ ପର୍ବ' ପୁଣି 'ମଶାଣିର ଫୁଲ'ଠାରୁ 'ବୃନ୍ଦାବନର ଶେଷଧୂପ' ପର୍ଯ୍ୟନ୍ତ ଅନେକ କାଳଜୟୀ ଉପନ୍ୟାସ ଓ ଗଳ୍ପର ନାଟ୍ୟ ରୂପାନ୍ତର କରି ନାଟ୍ୟକାର ମହୋଦୟ ଛାଡ଼ିଯାଇଛନ୍ତି ନିଜସ୍ୱ ଶୈଳୀର ମୁଦ୍ରାଙ୍କ । ଡ. ଶତପଥୀ 'ଏଇ ଯେ ସୂର୍ଯ୍ୟ ଉଏଁ' ଲାଗି ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, 'ଶୋଣିତ ସ୍ୱାକ୍ଷର' ଲାଗି ବିଷୁବ ପୁରସ୍କାର ଲାଭ କରିବା ସହ ବିବିଧ ସାରସ୍ୱତ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

ବିଜୟ କୁମାର ଶତପଥୀଙ୍କ ପ୍ରଥମ ନାଟକ 'ଫସିଲ୍‌ର ନିଦ୍ରାଭଙ୍ଗ'ରେ ଜୀବନର ନୈରାଶ୍ୟ, ପ୍ରେମରେ ବିଫଳତା ସହିତ ମଣିଷ ମନର ଅବଚେତନ ସ୍ତରର ରୂପାୟନ ଦେଖିବାକୁ ମିଳେ । ସେହିପରି ସମଗ୍ର ମାନବଜୀବନର ବିଫଳତା, ନୈରାଶ୍ୟ, ସଙ୍କଟର ରୂପ ଉଦ୍‌ଭାସିତ କରି ତା' ମଧ୍ୟରୁ ଏକ ଉତ୍ତରଣ ପ୍ରକ୍ରିୟାକୁ ଦେଖାଇବାର ଚେଷ୍ଟା କରିଛନ୍ତି ନାଟ୍ୟକାର । ଆମ ରୁଗ୍‌ଣ ସମାଜ ବ୍ୟବସ୍ଥା, ଅବକ୍ଷୟୀ ମୂଲ୍ୟବୋଧ, ସାଂସ୍କୃତିକ ସଙ୍କଟର ବ୍ୟାପକ ପୃଷ୍ଠଭୂମିକୁ ଉପଜୀବ୍ୟ କରି ରଚିତ ହୋଇଛି 'ବିବର୍ଣ୍ଣ ସହର' ନାଟକ । ଏହି ଦୁଇ ନାଟକ ସଂପର୍କରେ ଅନ୍ୟତମ ଅଗ୍ରଗଣ୍ୟ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥ ମତ ଦେଇଛନ୍ତି "ଆଧୁନିକ ନାଟକର ଚରମ ଉତ୍କର୍ଷ ହେଲା ଯେତେବେଳେ ଦର୍ଶକ ନିଜର ଆନନ୍ଦ ଯନ୍ତ୍ରଣା, ସ୍ୱପ୍ନ, ସଂଘର୍ଷ ତଥା ବ୍ୟକ୍ତିସତ୍ତାକୁ ଚରିତ୍ର ମାଧ୍ୟମରେ ଉପଲବ୍ଧି କରିବସେ, ତା' ସହିତ ଏକୀଭୂତ ହୋଇପଡ଼େ । ପୁନଶ୍ଚ ରଙ୍ଗମଞ୍ଚ ଏବଂ ପ୍ରେକ୍ଷାଳୟ ମଧ୍ୟରେ ରହିଥିବା ବ୍ୟବଧାନ, ଦୂରତା ସଙ୍କୁଚିତ ହୋଇଆସେ । ଏହି ପରିପ୍ରେକ୍ଷୀତରେ ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ ଛୋଟ ନାଟକଦୁଇଟି 'ଫସିଲ୍‌ର ନିଦ୍ରାଭଂଗ ଓ 'ବିବର୍ଣ୍ଣ ସହର' ଅଭିନନ୍ଦୀୟ ପ୍ରତିଦ୍ୱ । ତାଙ୍କ ନାଟକରେ ଜୀବନ ଅଛି, ଜିଜ୍ଞାସା ରହିଛି, ଅନ୍ୱେଷଣ ରହିଛି, ଚିନ୍ତା ଅଛି, ଚେତନା ଅଛି ଏବଂ ରହିଛି ପ୍ରଚୁର ସାର୍ଥକତା ଓ ପ୍ରଚଣ୍ଡ ସଂଭାବନା ।"

ଲୋକ ନାଟକର ମୁକ୍ତଧାରା ଗ୍ରହଣ କରି ନାଟ୍ୟକାର ବିଜୟ କୁମାର ଶତପଥୀ ନାଟକକୁ ଅଧିକରୁ ଅଧିକ ଗଣଚେତନା ସହ ଜଡ଼ିତ କରିପାରିଛନ୍ତି । ଲୋକ ସାହିତ୍ୟର ଦିଗ ଗୁଡ଼ିକ ମଧ୍ୟରେ ସମୂହ ଭାବାବେଗ ପ୍ରତିଫଳିତ ହେଉଥିବାରୁ ଆଜିର ଦର୍ଶକଙ୍କୁ ତାହା ବେଶ୍ ସ୍ପର୍ଶ କରିପାରିଛି । ନାଟକର ଏହି କୌଶଳକୁ ନାଟ୍ୟକାର ମହୋଦୟ 'କଂସର ଆତ୍ମା', 'ଏଇ ଯେ ସୂର୍ଯ୍ୟ ଉଏଁ', 'ଶୋଣିତ ସ୍ୱାକ୍ଷର', 'ପକା ପଇସା ଦେଖ୍ ତାମ୍‌ସା', 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ପ୍ରଭୃତି ନାଟକରେ ପ୍ରୟୋଗ କରିଛନ୍ତି । ଏହି ଲୋକ ଉପାଦାନ ଭିତରେ ରହିଛି ପାଲା, ଚଢ଼େୟା ନାଟ, ପତର ଶଉରା ନାଚ, ମୋଗଲ ତାମ୍‌ସା ପ୍ରଭୃତି । ତାଙ୍କର ନାଟକ ଗୁଡ଼ିକ ପ୍ରଗତିବାଦୀ ଚିନ୍ତାଧାରାକୁ ଗ୍ରହଣ କରିବା ସହ ଏହି ଲୋକ ଉପାଦାନକୁ ସେ ବିପ୍ଳବର ମନ୍ତ୍ର ଉତ୍ସବରେ ନାଟକର ପରିଧିକୁ ଟାଣି ଆଣିଛନ୍ତି । ତାଙ୍କର 'କର୍ଣ୍ଣ', ଏଇ ଯେ ସୂର୍ଯ୍ୟ ଉଏଁ, ଶୋଣିତ ସ୍ୱାକ୍ଷର, 'ପ୍ରଳୟ ପରେ' ପ୍ରଭୃତି ନାଟକରେ ବିପ୍ଳବୀ ଚିନ୍ତାଧାରାଟିଏ ଆତ୍ମପ୍ରକାଶ କରିଥାଏ । ଏହି ନାଟକମାନଙ୍କରେ ନାଟ୍ୟକାର ଯେତିକି ପରିମାଣରେ ପରଂପରା ପ୍ରତି ସଚେତନ ରହିଛନ୍ତି, ସେତିକି ଭାବରେ ସେ ବିଦ୍ରୋହୀ ତଥା ସମାଜର କଳୁଷିତ ବ୍ୟବସ୍ଥା ବିରୋଧରେ ଲଢ଼େଇ କରିବାର ମନୋବୃତ୍ତି ଦେଖାଇଛନ୍ତି । ଏଥିସହ ଅନେକ ନାଟକରେ ଡ. ଶତପଥୀ ସାଂପ୍ରତିକ ସମୟର ସୁବିଧାବାଦୀ ଶିଷ୍ଟବର୍ଗୀଙ୍କ ମୁଖାକୁ ଖୋଲି ଦେଇଛନ୍ତି । ଅନ୍ୟ ପକ୍ଷରେ ନିଜର ପ୍ରଗତିବାଦୀ ମାନସିକତା ଓ ବିପ୍ଳବୀ ସତ୍ତାକୁ,

ଲୋକନାଟକର ବିବିଧ ଉପାଦାନ (ଯଥା - ପାରଂପରିକ ଯାତ୍ରା, ପାଲା, ନାଟ, କୀର୍ତ୍ତନ) ମଧ୍ୟରେ ଗ୍ରହଣ କରିବା ସହ ଆମର କ୍ଲାସିକାଲ ନାଟ୍ୟରୀତି ଅନୁସାରେ ସେ ସୂତ୍ରଧାରଙ୍କୁ ମଞ୍ଚରେ ଅବତୀର୍ଣ୍ଣ କରାଇଛନ୍ତି ।

ମିଥ୍‌ର ପୁନର୍ଗଠନ ତଥା ବିନିର୍ମାଣ ଭିତରେ ବୃହତ୍ତର କଳାଜଗତଟିଏ ନିର୍ମାଣ କରିପାରିଛନ୍ତି ବିଜୟ କୁମାର ଶତପଥୀ । 'କଂସର ଆତ୍ମା'ରେ କଂସର ମିଥ୍, 'କର୍ଣ୍ଣ'ରେ କର୍ଣ୍ଣର ମିଥ୍, ଶୋଣିତ ସ୍ୱାକ୍ଷରରେ ଖୁଲଣା ସୁନ୍ଦରୀର ମିଥ୍‌କୁ ନାଟ୍ୟକାର ପ୍ରୟୋଗ କରିଛନ୍ତି । ସମୂହ ମନ ଭିତରେ ଥିବା ପ୍ରାଚୀନ ପରଂପରା, ଆଧ୍ୟାତ୍ମିକ ବିଶ୍ୱାସ ସହ ଆଧୁନିକ ଜୀବନକୁ ଯୋଡ଼ିଦେବାର ପ୍ରୟାସ ହିଁ ଡ. ଶତପଥୀଙ୍କ ମିଥ୍‌ଧର୍ମୀ ନାଟକଗୁଡ଼ିକରେ ଦେଖିବାକୁ ମିଳେ । ତେବେ 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକରେ ମିଥ୍‌ର ବିଘଟନ ହେବା ସହ ଏହା ନବାର୍ଥବୋଧକ ଭାବରେ ଉପସ୍ଥାପିତ ହୋଇଛି । ପୁରାଣର ବିଲ୍ୱମଙ୍ଗଳ ଚରିତ୍ର ସତେ ଯେମିତି ଏ ନାଟକରେ ନୂତନ ପରିଚିତିଟିଏ ପାଇଛି । ଧନିକ ପୁତ୍ର ବିଲ୍ୱମଙ୍ଗଳ - ଗଣିକା ଚିନ୍ତାମଣିର ବୃତ୍ତାନ୍ତକୁ ଲୋକ ଉପାଦାନର ଉପଜୀବ୍ୟରେ ଅଲଗା ଢଙ୍ଗରେ ନାଟ୍ୟକାର ପ୍ରକାଶ କରିବା ସହ ପ୍ରବୃତ୍ତି - ନିବୃତ୍ତିର ମାନସିକ ଦ୍ୱନ୍ଦ୍ୱରେ ବିଲ୍ୱମଙ୍ଗଳ ଚରିତ୍ରକୁ ଆଉଟି ତା'ର ଚାରିତ୍ରିକ ବିଶେଷତ୍ୱକୁ ଦର୍ଶାଇ ଅଛନ୍ତି । ନାଟକ ଶେଷରେ ଚିନ୍ତାମଣି - ବିଲ୍ୱମଙ୍ଗଳ ନିବୃତ୍ତି ପଥରେ ଆଉ ଯାଇନାହାନ୍ତି କିମ୍ବା ପୁରାଣର ଉପାଖ୍ୟାନ ଭିତ୍ତିରେ ଦୁହେଁ ବୃନ୍ଦାବନ ଗମନ କରିନାହାନ୍ତି । ଚିନ୍ତାମଣି ସନ୍ନ୍ୟାସୀ ବିଲ୍ୱମଙ୍ଗଳଙ୍କ ପନ୍ଥାକୁ ଗ୍ରହଣ କରିବାକୁ ଆଗ୍ରାହ୍ୟ କରିଦେଇଥିବା ବେଳେ ବିଲ୍ୱମଙ୍ଗଳ ଚିନ୍ତାମଣିର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଶେଷରେ ଚିନ୍ତାମଣି ପ୍ରବୃତ୍ତି ଭିତରେ ବଞ୍ଚିବାର ଆସ୍ପର୍ଦ୍ଧା ରଖିଥିବା ବେଳେ ବିଲ୍ୱମଙ୍ଗଳ ନିବୃତ୍ତିର ମାର୍ଗକୁ ଆପଣାର କରି ନିଜ ମାର୍ଗରେ ଗମନ କରିଛନ୍ତି । ଏହି ନାଟକରେ ବିଲ୍ୱମଙ୍ଗଳ ଉପାଖ୍ୟାନର ବିନିର୍ମାଣ ସହ ତାକୁ ନିଆରା ଆତ୍ମବୋଧରେ ପରିଣତ କରିବା ହେଉଛି ନାଟ୍ୟକାରଙ୍କ କୌଶଳ ।

ଅନ୍ୟପକ୍ଷରେ ପ୍ରତୀକାତ୍ମକ ଉପସ୍ଥାପନ ଶୈଳୀ ନାଟ୍ୟକାର ଡ. ଶତପଥୀଙ୍କ ନାଟକର ଅନ୍ୟତମ ବିଶେଷତ୍ୱ । ପ୍ରତ୍ୟେକ ମଣିଷର ବିଷାଦ ଗ୍ରସ୍ତ ଜୀବନର ପ୍ରତୀକ ଭାବେ 'ବିଷାଦ ବୃତ୍ତର କାହାଣୀ'କୁ ଆମେ ଯେଉଁଭଳି ଦେଖୁ, ସେପରି ମହାବାତ୍ୟାର ପ୍ରତୀକାତ୍ମକ ଉପସ୍ଥାପନ ଦେଖିଥାଉ 'ପ୍ରଳୟ ପରେ' ନାଟକରେ । ଚଳନ୍ତି ସମୟର ଆଧ୍ୟାତ୍ମିକ ଛଦ୍ମତା, ଭଣ୍ଡ ଧାର୍ମିକତା, ସୁବିଧାବାଦୀ ସ୍ୱେଚ୍ଛାଚାରୀ ଶାସନ, ଗଣତନ୍ତ୍ରର କଣ୍ଠରୋଧର ପ୍ରତୀକାତ୍ମକ ଉପସ୍ଥାପନା 'ପକା ପଇସା ଦେଖ୍ ତାମସା' ନାଟକରେ ବେଶ୍ ଜୀବନ୍ତ ହୋଇଉଠିଛି । କୌଣସି ଅଙ୍କ/ଦୃଶ୍ୟ ବିଭାଜନ ନଘଟାଇ କାହାଣୀ କହିବା ନ୍ୟାୟରେ ନିରବଚ୍ଛିନ୍ନ ଭାବରେ ଘଟିଯାଉଥିବା ଦୃଶ୍ୟର ଅବତାରଣା କରିବା ପରିପ୍ରେକ୍ଷୀରେ ଶାସକର, ଅହଙ୍କାର, ଗର୍ବ ଓ ମଣିଷର ଉଦ୍ଧତ ପଣିଆର

ପ୍ରତୀକ ଭାବେ କାଳ କାଳ ଧରି ଦଣ୍ଡାୟମାନ ହେଉଥିବା କାରାଗାରକୁ ନେଇ 'କାରାଗାରର କାହାଣୀ' ଭଳି ପ୍ରତୀକାତ୍ମକ ନାଟକ ରଚନା କରିଛନ୍ତି ବିଜୟ କୁମାର ଶତପଥୀ ।

ମୂଲ୍ୟବୋଧ ରହିତ ସମାଜର ଦୁରବସ୍ଥାକୁ ଚିତ୍ରଣ କରିବା ସହ ମୂଲ୍ୟବୋଧର ପ୍ରତିଷ୍ଠା ଉପରେ ଡ. ଶତପଥୀଙ୍କ ନାଟକ ଗୁରୁତ୍ୱ ଦେଇଥାଏ । ଭାଙ୍ଗିପଡୁଥିବା ନୈତିକ ମୂଲ୍ୟବୋଧ, ଭୁଷୁଡି ପଡୁଥିବା ସାମାଜିକ ମୂଲ୍ୟବୋଧକୁ ପୁନଃ ପ୍ରତିଷ୍ଠା କରିବାର ଆସ୍ପର୍ଦ୍ଧାଟିଏ ତାଙ୍କ ନାଟକ ଭିତରେ ଦେଖିବାକୁ ମିଳେ । ସମାଜର ଗତାନୁଗତିକ ବ୍ୟବସ୍ଥା, ସ୍ୱେଚ୍ଛାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବା ମଧ୍ୟରେ ନାଟ୍ୟକାର ବିପର୍ଯ୍ୟସ୍ତ ଜୀବନ ଚର୍ଯ୍ୟା ସହ ମୂଲ୍ୟବୋଧର ବିପର୍ଯ୍ୟୟକୁ ସୂଚାଇଛନ୍ତି । ଏସବୁ ସତ୍ତ୍ୱେ ନବମୂଲ୍ୟବୋଧର ପ୍ରତିଷ୍ଠା ଲାଗି ଚରମ ଆଶାବାଦୀ ହେବା ତାଙ୍କ ନାଟକର ସ୍ୱତନ୍ତ୍ରତା । 'ଶୋଣିତ ସ୍ୱାକ୍ଷର' 'ପକା ପଇସା ଦେଖ୍ ତାମ୍‌ସା', 'ପ୍ରଳୟ ପରେ' ଭଳି ନାଟକମାନଙ୍କରେ ସାମାଜିକ ଅବକ୍ଷୟ, ଗଣତନ୍ତ୍ରର ହତ୍ୟା, ମୂଲ୍ୟବୋଧକୁ ମୂଲ୍ୟରେ ବିକ୍ରି କରିବା, ଶିଷ୍ଟବର୍ଗୀଙ୍କ ଚକ୍ରାନ୍ତ, ପ୍ରତିବାଦୀମାନଙ୍କୁ ଦମନ କରିବାର ଷଡ଼ଯନ୍ତ୍ର ଭିତରେ ଅସୁସ୍ଥ ସମାଜର କଥା କହିଥାଏ ତାଙ୍କ ନାଟକ । ତେବେ ଏହି ବଳୟରୁ ମୁକ୍ତ ହେବାକୁ ପଡ଼ିବ । ସମାଜ ପ୍ରତି ନିଜର ଦାୟବଦ୍ଧତାକୁ ପାଳନ କରିବା ସହ ମୂଲ୍ୟବୋଧ ଯୁକ୍ତ ସମାଜ ଗଠନର ଭରସା ଆମେ ତାଙ୍କ ନାଟକ ଭିତରୁ ଦେଖିଥାଉ ।

ବ୍ୟକ୍ତିଗତ ଦୁଃଖ ଅପେକ୍ଷା ସମଗ୍ର ସମାଜର ଦୁଃଖକୁ ତଥା ସାମାଜିକ ବିଷାଦ ବୋଧକୁ ନେଇ ବିଜୟ କୁମାର ଶତପଥୀ 'ଏଇ ଯେ ସୂର୍ଯ୍ୟ ଉଏଁ','ଶୋଣିତ ସ୍ୱାକ୍ଷର', 'ପ୍ରଳୟ ପରେ' ଆଦି ତିନୋଟି ନାଟକ ମାଧ୍ୟମରେ ଓଡ଼ିଆ ନାଟକରେ ନୂଆ ଅଧ୍ୟାୟ ସୃଷ୍ଟି କରିଛନ୍ତି । ଏହି ନୂତନତାଟି ହେଉଛି 'ସୋସିଆଲ୍ ଟ୍ରାଜେଡି' – ଯାହା ଓଡ଼ିଆ ନାଟକ ଭିତରେ ପ୍ରଥମ କରି ଡ. ଶତପଥୀ ଦେଖାଇଛନ୍ତି ଏଇସବୁ ନାଟକରେ ପାରଂପରିକ ସମସ୍ୟାଧର୍ମୀ ନାଟକର ନାୟକର ଦୁଃଖ ବ୍ୟକ୍ତିଗତ ବିଫଳତା ନାହିଁ, ବରଂ ରହିଛି ସମୁଦାୟ ଜନ ସମାଜର ବିଷାଦ, ଦୁଃଖ । ମନ୍‌ଷ୍ଟରମାନଙ୍କ ଷଡ଼ଯନ୍ତ୍ରରେ ଜନସମାଜର ପ୍ରତିନିଧି ପରାହତ ହେବା ସହ ସମୁଦାୟ ଜନମାନସ-ଜନସମାଜ ଏହାର କବଳିତ ହେଉଛି । ସେମାନଙ୍କର ଏ ପ୍ରକାର ଦୁଃଖ ସାମାଜିକ ବିଷାଦ ବୋଧ ସୃଷ୍ଟି କରି ଚାଲିଛି । 'ଏଇ ଯେ ସୂର୍ଯ୍ୟ ଉଏଁ' ନାଟକରେ ଶିଷ୍ଟବର୍ଗୀଙ୍କ ସାମ୍ରାଜ୍ୟ ପତନ କରିବାରେ କଣ୍ଢଦାସ ବିଫଳ ହେବା, 'ଶୋଣିତ ସ୍ୱାକ୍ଷର' ନାଟକରେ ଦ୍ୱିତୀୟ ପର୍ଯ୍ୟାୟବେଳକୁ ସୁବିଧାବାଦୀମାନେ ଆପଣାର ସୁବିଧା ପାଇଁ ଶ୍ରୀଧରକୁ ହତ୍ୟା କରିବା, ଶ୍ରୀଧର ଆଉ ନ ଫେରିବା ଫଳରେ ଜନଶକ୍ତିର ସାମର୍ଥ୍ୟ ପରାହତ ହୋଇଛି । ଶିଷ୍ଟବର୍ଗୀମାନେ ଏହି ସାମୁଦାୟିକ ଶକ୍ତିକୁ ଅବଦମନ କରିବା, ସେମାନଙ୍କର ସାଧାରଣ ଦାବିକୁ ଉପେକ୍ଷା କରିବା, ଆଶାକୁ ଧୂଳିସାତ୍ କରିବା ସୃଷ୍ଟି କରିଛି ଏକ ବୃହତ୍ତର ଟ୍ରାଜିକ୍ ବାତାବରଣ । ବିଶେଷ କରି ସୋସିଆଲ୍ ଟ୍ରାଜେଡ଼ିର ଶ୍ରେଷ୍ଠ ନିଦର୍ଶନ ହେଉଛି ନାଟ୍ୟକାରଙ୍କ

'ପ୍ରଳୟ ପରେ' ନାଟକ । ଏହି ନାଟକରେ ପ୍ରକୃତି ରାଜ୍ୟରେ ସଂଘଟିତ ମହାବାତ୍ୟାଠାରୁ ଆଉ ଏକ ଭୟଙ୍କର ମହାବାତ୍ୟାର ଅସ୍ତିତ୍ୱ ଯେଉଁଳି ମଣିଷର ଚେତନାକୁ ବିକ୍ଷୁବ୍ଧ କରିଦେଇଛି ତାକୁ ପ୍ରତୀକାତ୍ମକ ଭାବେ ନାଟ୍ୟକାର ଉପସ୍ଥାପନ କରିଛନ୍ତି । ମହାବାତ୍ୟା ପରେ ତାତ୍କାଳିକ ସମାଜରେ ଯେଉଁ ସଙ୍କଟ ସୃଷ୍ଟି ହୋଇଛି, ଯେଉଁ ଦୁରବସ୍ଥା ଆସିଛି, ବଞ୍ଚିବା ଲାଗି ସାଧାରଣ ମଣିଷ ଯେଉଁ ସଂଘର୍ଷ କରିଛି, ତାହାର ଜୀବନ୍ତ ରୂପ ଉକ୍ତନାଟକରେ ଦେଖିବାକୁ ମିଳେ । ମହାବାତ୍ୟାପରର ପରିସ୍ଥିତି ଆଉ କୌଣସି ବ୍ୟକ୍ତିର ବ୍ୟକ୍ତିଗତ ଦୁଃଖ / ଦୁଃସ୍ଥିତି ହୋଇ ଉଭା ହୋଇନାହିଁ, ବରଂ ସମୁଦାୟ ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କ ଲାଗି ଏହା ପାଲଟିଛି ଦୁଃଖର କାରଣ । ସାଧାରଣ ଜନତା ଏହାଦ୍ୱାରା କବଳିତହୋଇ ଯେଉଁ ଦୁଃଖ ଭୋଗ କରୁଛନ୍ତି ତାହାର ମାର୍ମିକ-କରୁଣ ଚିତ୍ର ଆମେ 'ପ୍ରଳୟପରେ' ନାଟକରୁ ହିଁ ପାଇଥାଉ । ମୋଟ ଉପରେ କହିବାକୁ ଗଲେ ଏହି ତିନୋଟି ନାଟକ ଭିତରେ ଡ. ବିଜୟ କୁମାର ଶତପଥୀ ସମୁଦାୟ ଜନ ସମାଜର ଦୁଃଖ-ଦୁର୍ଦ୍ଦଶାକୁ ଚିତ୍ରଣ କରିବା ସହ ସାମାଜିକ ବିଷାଦବୋଧକୁ ପ୍ରତୀକ, ରୂପକ, ମିଥ୍ ମାଧ୍ୟମରେ ଚମତ୍କାର ଶିଳ୍ପ କଳାରେ ସଜ୍ଜିତ କରି ଯେପରି କଳାତ୍ମକରୂପ ଦେଇଛନ୍ତି ତାହା ହିଁ ତାଙ୍କର ଅଭିନବତ୍ୱ ।

ବିଜୟ କୁମାର ଶତପଥୀଙ୍କ ନାଟକକୁ ପଢ଼ିସାରିଲା ପରେ, ଦେଖିସାରିଲା ପରେ ନିଶ୍ଚିତ ଭାବେ କହିହେବ ଯେ, ଡ. ଶତପଥୀ ନାଟ୍ୟ ଜୀବନର ଆରମ୍ଭରେ ଯେପରି ଥିଲେ ଶବ୍ଦ ଓ ସଂଳାପର ଫାଲ୍‌ଗୁନି, ମଧ୍ୟପର୍ଯ୍ୟାୟରେ ଭାବବସ୍ତୁର ଶକ୍ତିଶାଳୀ ଦ୍ରୋଣ ଆଉ ଆଜିର ନାଟ୍ୟ ଜୀବନର ଅପରାହ୍ନରେ ସେ ଆବେଦନର ଅପରାଜେୟ ଭୀଷ୍ମ । ସମାଲୋଚକର ଦୁଃଶାସନୀ ମନ ତାଙ୍କ ନାଟକକୁ ଯେତେ ଉନ୍ମୁକ୍ତ କଲେବି ସେ ଲାଗୁଥିବ ସେତେ ଆବୃତ । ଏହି ଆବୃତ ରହିବାର ରହସ୍ୟ ହିଁ ନାଟ୍ୟକାରଙ୍କ ନାଟକର ବଡ଼ ବିଶେଷତ୍ୱ । ଏବେ ଡ. ଶତପଥୀଙ୍କ ନାଟକର ବୈଶିଷ୍ଟ୍ୟଗୁଡ଼ିକ ସଂପର୍କରେ ସୂଚନା ଦିଆଯାଇପାରେ ।

(କ) ବିଜୟ କୁମାର ଶତପଥୀଙ୍କ ନାଟକ ନାଟ୍ୟପ୍ରେମୀ ମାନଙ୍କୁ ନାଟକ-ମଞ୍ଚ ମନସ୍କ କରିବା ସହ ନାଟକଠାରୁ ଦୂରେଇ ଯାଉଥିବା ଦର୍ଶକଙ୍କୁ ନାଟକ ଅଭିମୁଖୀ କରାଇଛି ।

(ଖ) ବଳିଷ୍ଠ ମିଥ୍ ଓ ପ୍ରତୀକାତ୍ମକ ଉପସ୍ଥାପନା ଶୈଳୀସହ ଲୋକନାଟକର ଉପାଦାନକୁ ନାଟ୍ୟକାର ନାଟକରେ ବ୍ୟବହାର କରିଛନ୍ତି ।

(ଗ) ମଣିଷର ସୁପ୍ତ ଅବଚେତନର କଥା କହିବା ସହ ଚରିତ୍ରମାନଙ୍କର ମନସ୍ତତ୍ତ୍ୱ ଉପରେ ସେ ଗୁରୁତ୍ୱ ଦେଇଛନ୍ତି ।

(ଘ) ଜୀବନର ନୈରାଶ୍ୟ, ହତାଶା, ବ୍ୟର୍ଥତାକୁ ଦେଖାଇ ଦେଇଛନ୍ତି ।

(ଙ) ସମାଜର କଳୁଷିତ ବ୍ୟବସ୍ଥା, ସୁବିଧାବାଦ ଓ ଶୋଷଣମନୋବୃତ୍ତି ବିରୋଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି ।

(ଚ) ବ୍ୟକ୍ତିଗତ ଦୁଃଖ ଅପେକ୍ଷା ବୃହତ୍ତର ସମାଜ ଜୀବନର ଦୁଃଖ ତଥା ସୋସିଆଲ୍ ଟ୍ରାଜେଡ଼ିର ସ୍ୱର ସେ ଓଡ଼ିଆ ନାଟକରେ ଶୁଣାଇଛନ୍ତି ।

(ଛ) ମୂଲ୍ୟବୋଧ ପ୍ରତି ସଜାଗ ହେବା ସହ ଜଗତ ଓ ଜୀବନର ଦୁଇ ସତ୍ୟକୁ ସମନ୍ୱିତ କରିପାରିଛନ୍ତି ।

(ଜ) ଉତ୍ତର ଆଧୁନିକତାର ପ୍ରଥମ ରୂପକାର ଭାବରେ ସେ ଓଡ଼ିଆ ନାଟକରେ ଆତ୍ମପ୍ରକାଶ କରନ୍ତି ।

ଅତଏବ ୧୯୮୦ ପରବର୍ତ୍ତୀ ଓଡ଼ିଆ ନାଟ୍ୟଧାରାରେ ବିଘଟନ ମୂଲ୍ୟବୋଧବାଦୀ ସର୍ଜନଶୀଳ ପ୍ରତିଭା ରୂପେ ବିଜୟ କୁମାର ଶତପଥୀ ଦର୍ଶକାନୁମୋଦିତ ପ୍ରତିଷ୍ଠା ପାଇଛନ୍ତି । ତାଙ୍କର ସାମାଜିକ ବିବେକ ନିର୍ମାଣ ଓ ଏହି ନିର୍ମାଣକୁ ମନସ୍ତାତ୍ତ୍ୱିକ ଚିତ୍ର ଧର୍ମରେ ମଞ୍ଚରୂପ ଦେବା ଅନାସ୍ୱାଦିତ ପୂର୍ବ ଆଧୁନିକତାର ନିଦର୍ଶନ । ଏ ଦୃଷ୍ଟିରୁ ତାଙ୍କ ରଚିତ ନାଟକ ଗୁଡ଼ିକ ଓଡ଼ିଆ ନାଟ୍ୟ ସାହିତ୍ୟର ଆଙ୍ଗିକ-ଆତ୍ମିକ ଆବେଦନକୁ ମନୋରଂଜନ-ରମେଶ ପ୍ରସାଦ-ବିଶ୍ୱଜିତ- ବିଜୟ ମିଶ୍ରଙ୍କ ଗଠିତ ଧାରାଠାରୁ ସ୍ୱତନ୍ତ୍ର କରି ସର୍ବଭାରତୀୟ ପ୍ରତିଷ୍ଠା ହୋଇଛି ।

ଡ. ଶତପଥୀଙ୍କ ନାଟକ ସଂପର୍କରେ ଏତିକି କୁହାଯାଇପାରେ ତାଙ୍କ ନାଟ୍ୟମାନସ ବାସ୍ତବ ଜୀବନ ଓ ଜଗତର କଥା କହେ । ମଣିଷର ଅନ୍ତର୍ମୁଖୀ ଚେତନାର ବିକାଶ କରିବାପାଇଁ ପ୍ରବର୍ତ୍ତାଏ । ସତ୍ୟ ଭିତରେ ଥିବା ଆଉ ଏକ ସତ୍ୟକୁ ପରିବେଷଣ କରେ । ତେଣୁ ବିଜୟ କୁମାର ଶତପଥୀଙ୍କୁ ଯଥାର୍ଥରେ ଅପହଞ୍ଚ ଜଗତ ଅଦୂର ଜୀବନର ରୂପକାର ଭାବରେ ଅଭିହିତ କରାଯାଇପାରେ ।



# ମିଥ୍‌ର ସତ୍ୟ ଓ ବିଜୟ କୁମାର ଶତପଥୀଙ୍କ ନାଟ୍ୟମାନସ

ମାନବ ସଭ୍ୟତାର ବିକାଶ ସହ ତା'ର ଚଳିଚଳଣି, ଜୀବନ ଜୀଇଁବାର ତରିକା କ୍ରମେ ବଦଳିବାକୁ ଲାଗିଲା । ତା'ର ନୃତାତ୍ତ୍ୱିକ ବିକାଶ ସହ ଅନେକ ଅନେକ କଥାଣି, କିମ୍ବଦନ୍ତୀ ଓ ଗାଲୁଗଳ୍ପ ଯୋଡ଼ିହୋଇ ମାନବ ସମ୍ପର୍କରେ କିଛି ଆଖ୍ୟାନ ତିଆରି କଲା । ମଣିଷ ସଭ୍ୟତାର ଉତ୍‌ଥାନ ସହିତ ତା'ର ଇତିହାସ, ସଭ୍ୟତାର ବିବର୍ତ୍ତନ, ଜୀବନ ପ୍ରଣାଳୀ ଧୀରେ ଧୀରେ ସ୍ୱତନ୍ତ୍ର କାହାଣୀ ସୃଷ୍ଟି କଲା । ମନୁଷ୍ୟର ଜନ୍ମ, ମୃତ୍ୟୁ, ଗ୍ରହ-ନକ୍ଷତ୍ର, ପୁରାଣ, ଉପନିଷଦକୁ ନେଇ 'ଅତିକଥା', 'ଗାଳକଥା' ଆଖ୍ୟାନର ସଂଖ୍ୟା ବି ବୃଦ୍ଧି ପାଇବାକୁ ଲାଗିଲା । ପ୍ରାଚୀନ ଓ ପରମ୍ପରା ପ୍ରତି ଆମୁଖତା କ୍ରମେ ମନୁଷ୍ୟର ବଢ଼ିବାକୁ ଲାଗିଲା । ଫଳରେ ପୁରାଣ, ପରମ୍ପରା ଓ ଐତିହ୍ୟକୁ ନେଇ କିମ୍ବଦନ୍ତୀ ଓ ପୁରାବୃତ୍ତର ନିର୍ମାଣ ହୋଇଚାଲିଲା । ସଭ୍ୟତାର କ୍ରମ ବିବର୍ତ୍ତନ ଭିତରେ ମଣିଷ ଆଧୁନିକ ହେଲେ ବି ନିଜର ପୁରାଣ ପରମ୍ପରା-ଐତିହ୍ୟ-କିମ୍ବଦନ୍ତୀର ମୋହକୁ ଛାଡ଼ିପାରିଲା ନାହିଁ । ପୁନଶ୍ଚ ସାହିତ୍ୟ ସର୍ଜନା ବେଳେ ସ୍ରଷ୍ଟାମାନେ ସାହିତ୍ୟର ପରିଧିକୁ ଏସବୁକୁ ସ୍ୱାଗତ୍ କରିବାରେ କୁଣ୍ଠାବୋଧ କଲେ ନାହିଁ । ବିଶେଷକରି ବିଂଶ ଶତକରେ ସାହିତ୍ୟ ସ୍ରଷ୍ଟାଗଣ ସ୍ୱତନ୍ତ୍ର-କାଳ୍ପନିକ କାହାଣୀ ରଚନା ଅପେକ୍ଷା ପୁରାଣ-ଇତିହାସ-କିମ୍ବଦନ୍ତୀ-ଲୋକକଥାରୁ ସୁପ୍ତ ପୁରାଣ-ଐତିହ୍ୟକୁ ନବ ଜୀବନ ଦେବା ସହ ନିର୍ମାଣ-ବିନିର୍ମାଣ ଭିତରେ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟିକଲେ ଆଉ ସେ ସାହିତ୍ୟରେ ଗୋଟିଏ ନୂଆ ସ୍ୱର ଶୁଣାଗଲା 'ମିଥ୍' ।

'ମିଥ୍'କୁ ନେଇ ବିଶ୍ୱର ପ୍ରତ୍ୟେକ ସର୍ଜନଶୀଳ ବ୍ୟାଖ୍ୟାକାର ନୂଆ ନୂଆ ସଂଜ୍ଞା ଓ ଅର୍ଥର ପୋଷାକ ପିନ୍ଧାଇଛନ୍ତି । ମିଥ୍ ଭିତରେ ଜୀବନର ଗଭୀରତମ ଉପଲବ୍ଧିକୁ ପ୍ରତ୍ୟକ୍ଷ କରାଇବାର ପ୍ରୟାସ କରିଛନ୍ତି । ଏହି ମିଥ୍ କେବେ ସତ୍ୟର ପ୍ରତିଲିପି ତ ଆଉ କେବେ ପବିତ୍ର କାହାଣୀର ମର୍ଯ୍ୟାଦା ପାଇଛି । ପୁଣି କେବେ ଗାଳକଥା ଭାବେ ସ୍ୱୀକୃତ ହେଉଛି । ଗ୍ରୀକ୍‌ଶବ୍ଦ 'mythos'ରୁ ମିଥ୍ ଶବ୍ଦ ଉତ୍ପତ୍ତି ଲାଭ କରିଛି । ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର ରହସ୍ୟଠାରୁ ଜନ୍ମ ମୃତ୍ୟୁ, ପୁନର୍ଜନ୍ମ, ଆତ୍ମା-ପରମାତ୍ମାର ଅନୁସନ୍ଧିତ୍ସା, ଅଲୌକିକ ପୁରାଣ କାହାଣୀ ସହିତ ମିଥ୍ ଯୋଡ଼ି ହୋଇରହିଛି । ତେଣୁ ମିଥ୍ ଭିତରେ ମଣିଷର ଧର୍ମ ବିଶ୍ୱାସ ସହିତ କିମ୍ବଦନ୍ତୀ, ପୁରାଣ ଆଖ୍ୟାନର ସମୟ ସଂକେତ ଭରିରହିଛି । "ସୁତରାଂ ମିଥ୍‌ର ଏକ

ସାଧାରଣ ସଂଜ୍ଞା ଏଭଳି ନିରୂପଣ କରାଯାଇପାରେ- ପ୍ରାଚୀନତମ ମନୁଷ୍ୟର ଧର୍ମବିଶ୍ୱାସ ପ୍ରଣୋଦିତ ଅଲୌକିକ ରସାଶ୍ରିତ ଘଟଣା ନିର୍ଭର କାହାଣୀର ନାମ ହିଁ ମିଥ୍ । ସାଂପ୍ରତିକ ବସ୍ତୁତାନ୍ତ୍ରିକ ବୈଜ୍ଞାନିକ ଯୁଗରେ ମିଥ୍ ଅନ୍ତର୍ଗତ ପୂଜାବିଧି ଓ ଅଲୌକିକତା ହୁଏତ ଆଉ ଗ୍ରହଣ ଯୋଗ୍ୟ ନ ହେଇପାରେ, କିନ୍ତୁ ଅନ୍ୟାନ୍ୟ ଗଳ୍ପ ଅପେକ୍ଷା ଏ ମିଥ୍ କାହାଣୀଗୁଡ଼ିକର ଯେ ଏକ ସ୍ୱତନ୍ତ୍ର ଆବେଦନ ରହିଛି; ଯେଉଁ ଆବେଦନ ବିଂଶ ଶତାବ୍ଦୀର ସଚେତନ କବି ସାହିତ୍ୟିକମାନଙ୍କୁ ବେଶ୍ କ୍ରିୟାଶୀଳ କରିବାରେ କ୍ଷମ ହୋଇଛି ।" (ଆଧୁନିକ ଓଡ଼ିଆ କବିତା ଓ ମିଥ୍ ପ୍ରସଂଗ, ଡ. ଗିରୀଶ ଚନ୍ଦ୍ର ମିଶ୍ର, ପୃ.୩୧)

ସଭ୍ୟତା, ସଂସ୍କୃତି ଓ ସାହିତ୍ୟର ବିବର୍ତ୍ତନ ଭିତରେ 'ମିଥ୍'ର ସଂଜ୍ଞା ବି ବଦଳିବାକୁ ଲାଗିଲା । ପ୍ରାଚୀନ ପରମ୍ପରା, ଆଧ୍ୟାତ୍ମିକ ବିଶ୍ୱାସ, ଓ ଧର୍ମ ଧାରଣାର ଉର୍ଦ୍ଧ୍ୱରେ ମିଥ୍ର ଅର୍ଥ ବି ବଦଳିବାକୁ ଲାଗିଲା । "କାହାଣୀ, କିମ୍ବଦନ୍ତୀ, ଇତିହାସ, ପୁରାଣର ଆଖ୍ୟାୟିକା ଏଥି ଭିତରକୁ ଧସେଇ ପଶିଆସିଲା । ଏ କାହାଣୀ ସତ୍ୟ ହୋଇପାରେ କିମ୍ବା ଫାଣ୍ଟାସି ବା କାଳ୍ପନିକ ମଧ୍ୟ ହୋଇପାରେ । କାଳକ୍ରମେ ଏଥିରେ ମାନବର ଚିନ୍ତାଚେତନା, ଧର୍ମ ଧାରଣା, ବିଶ୍ୱାସ ଲୋକକଥା, ଧର୍ମୀୟ କ୍ରିୟାନୁଷ୍ଠାନ, ନୃତାତ୍ତ୍ୱିକ ପରମ୍ପରା ଆଦି ସ୍ଥାନ ପାଇଲା । ଅର୍ଥାତ୍ ମାନବୀୟ କଳ୍ପନାର ଏକ ମନ୍ମୟ ଅଭିବ୍ୟକ୍ତି ରୂପରେ ଏହା ଆତ୍ମପ୍ରକାଶ ଲୋଡ଼ିଲା ।" (ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକରେ ମିଥ୍, ଡ. ନାରାୟଣ ସାହୁ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା, (ସଂ) ଡକ୍ଟର ବୈଷ୍ଣବ ଚରଣ ସାମଲ, ପୃ.୩୬୪)

ସାହିତ୍ୟରେ ଏହି 'ମିଥ୍'କୁ ସ୍ରଷ୍ଟାମାନେ ନିଜ ନିଜ ଦୃଷ୍ଟିଭଙ୍ଗୀ ଓ ଆବଶ୍ୟକତା ଅନୁଯାୟୀ ଗ୍ରହଣ କରି ସାର୍ଥକ ସୃଷ୍ଟିମାନ କରିଛନ୍ତି । କବିତା, ଗଳ୍ପ, ନାଟକ, ଉପନ୍ୟାସରେ 'ମିଥ୍' ବିଂଶ ଶତକର ମଧ୍ୟଭାଗ ବେଳକୁ ପ୍ରମୁଖ ଚେତନା ଭାବରେ ପ୍ରତିପାଦିତ ହୋଇଛି । ଏହି ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ କଥା ବିଚାର କରାଯାଇପାରେ ।

ପୁରାଣ-ଐତିହ୍ୟ-କିମ୍ବଦନ୍ତୀକୁ ନେଇ ଓଡ଼ିଆ ସାହିତ୍ୟରେ ଆଦି ପର୍ଯ୍ୟାୟରୁ ଉଚ୍ଚାଙ୍ଗ କୃତିମାନ ରଚିତ ହୋଇଆସିଛି । ତେବେ ବିଂଶ ଶତକର ମଧ୍ୟ ଭାଗରେ ତଥା ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟ ବିଶ୍ୱ ସାହିତ୍ୟର ଚିନ୍ତାଧାରା ଓ ଭାବାଦର୍ଶକୁ ଗ୍ରହଣ କରିବାବେଳେ ତା'ର ଦୃଷ୍ଟିଭଙ୍ଗୀରେ ବି ପରିବର୍ତ୍ତନ ଆସିଛି । ଏହି ସମୟର ସ୍ରଷ୍ଟାମାନେ ସମାଜତାତ୍ତ୍ୱିକ ମନୋବୈଜ୍ଞାନିକ, ନୃତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ନେଇ ପୁରାଣ-ପରମ୍ପରା- କିମ୍ବଦନ୍ତୀର ଉତ୍ସକୁ 'ମିଥ୍'ର ଆଖ୍ୟା ଦେଇ ସାହିତ୍ୟ ଜଗତକୁ ନିମନ୍ତ୍ରଣ କରିଆଣିଛନ୍ତି । ଆଧୁନିକ ଜୀବନ ସହିତ ମିଥ୍କୁ ସଂଯୁକ୍ତ କରି ଓଡ଼ିଆ ସାହିତ୍ୟର ସାଧକମାନେ କାଳଜୟୀ ଚିରନ୍ତନ ସତ୍ୟର ସନ୍ଧାନ ଦେଇଛନ୍ତି । ମିଥ୍ର ଉତ୍ସକୁ ଜୀବନର ନୂଆ ମାର୍ଗ ଖୋଜିବାରେ ବ୍ୟବହାର କରିଛନ୍ତି । ତେଣୁ ଏ ଦୃଷ୍ଟିରୁ ଓଡ଼ିଆ ନାଟ୍ୟ ସାହିତ୍ୟରେ ମିଥ୍ର ବ୍ୟବହାର ସମ୍ପର୍କରେ ଅନୁଶୀଳନ

କଲାବେଳେ ଜଣାଯାଏ ଯେ, ମିଥ୍‌କୁ ନେଇ ଯେତେଗୁଡ଼ିଏ ନାଟକ ରଚନା କରାଯାଇଛି, ସେ ସବୁରେ କେବେ କାହାଣୀକୁ ପ୍ରତ୍ୟକ୍ଷ ଉପସ୍ଥାପନା କରାଯାଇଛି ତ ଆଉ କେଉଁଠି ପ୍ରତୀକାତ୍ମକ ଢଙ୍ଗରେ ପରିବେଷଣ କରାଯାଇଛି । ମଣିଷର ଅନ୍ତର୍ଜଗତର କଥା, ବେଦନାକୁ ପ୍ରକାଶ କରିବା ସହ ସମାଜରେ ଏବେ ବି ପୁରାଣ-କିମ୍ବଦନ୍ତୀ ଆଶ୍ରିତ ଘଟଣାମାନ ଭିନ୍ନ ଭାବରେ ଯେ ଘଟୁଛି ଏ କଥା ଆମ ନାଟ୍ୟକାରମାନେ ଦର୍ଶାଇବାକୁ ଭୁଲି ନାହାନ୍ତି ।

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକରେ ମିଥ୍‌କୁ ନେଇ ନାଟକ ରଚନା କରିବା କ୍ଷେତ୍ରରେ ନାଟ୍ୟକାର ବିଜୟ କୁମାର ଶତପଥୀ ନିଆରା ସ୍ରଷ୍ଟା ଭାବେ ନିଜକୁ ପ୍ରମାଣ କରିଛନ୍ତି । ତାଙ୍କ ପୂର୍ବରୁ ମନୋରଂଜନ ଦାସ 'ନନ୍ଦିକା କେଶରୀ', ବିଜୟ ମିଶ୍ର 'ତଟ ନିରଂଜନା', 'ପର୍ଶୁରାମ', ରମେଶ ପ୍ରସାଦ ପାଣିଗ୍ରାହୀ 'ଧୃତରାଷ୍ଟ୍ରର ଆଖି', ରତ୍ନାକର ଚଇନି 'ଅଥଚ ଚାଣକ୍ୟ', 'ପୁନଶ୍ଚ ପୃଥିବୀ', 'ନଚିକେତା ଉବାଚ', କାର୍ତ୍ତିକ ଚନ୍ଦ୍ର ରଥ 'ଈଶ୍ୱର ଜଣେ ଯୁବକ', 'ସ୍ୱର୍ଗଦ୍ୱାର', ଯଦୁନାଥ ଦାଶ ମହାପାତ୍ର 'ଅଥବା ଅନ୍ଧାର', 'ଅଶାନ୍ତ ଦ୍ରୌପଦୀ' ଭଳି ମିଥିକ୍ ନାଟକ ରଚନା କରିସାରିଛନ୍ତି । ଏସବୁ ନାଟକ ଭିତରେ ଅଧିକାଂଶ ନାଟକ ପୁରାଣ-କିମ୍ବଦନ୍ତୀ-ଇତିହାସର ଘଟଣାକୁ ପୁନର୍ନିର୍ମାଣ କରିବାର ଦୃଷ୍ଟାନ୍ତ ରହିଛି । ଆହୁରି ବି ଏହି ନାଟକ ଭିତରେ ପୂର୍ବ କାହାଣୀଗୁଡ଼ିକ ଅବିକଳ ଭାବେ ଉପସ୍ଥାପିତ ହେବାର ନଜିର ଅଛି । ପୁଣି ଆଧୁନିକ ସମାଜ ସହ ଏହି ମିଥ୍‌ଗୁଡ଼ିକୁ ଯୋଡ଼ିଦେବାରେ ଏସବୁ ନାଟକ ସଫଳ ହୋଇଛି । କିନ୍ତୁ ନାଟ୍ୟକାର ବିଜୟ କୁମାର ଶତପଥୀ ପୁରାଣ-ପରମ୍ପରାର ଉତ୍ସ ଅନୁସନ୍ଧାନ କରି ନାଟକ ଲେଖିବା ସହ ବ୍ୟାପକତର ଜୀବନବୋଧ ଓ ସମାଜ ଚେତନା ସହ ଏହାର ସମନ୍ୱୟ ଘଟାଇଛନ୍ତି । ଏହା ହେଉଛି ମିଥ୍ ପ୍ରୟୋଗ କ୍ଷେତ୍ରରେ ତାଙ୍କର ବୈଶିଷ୍ଟ୍ୟ । ତାଙ୍କର ମିଥ୍ ଦୃଷ୍ଟି ସମାଜ ବିପ୍ଳବ ପାଇଁ ସତେଯେପରି ଅନୁପ୍ରେରିତ । ମିଥ୍‌କୁ ନେଇ ତାଙ୍କର ନାଟ୍ୟପ୍ରତିଭା କେଉଁ ଖେଳ ଖେଳିଛି ତାହା ଏବେ ଆଲୋଚନା କରାଯାଇପାରେ ।

ପ୍ରଥମେ 'କଂସର ଆତ୍ମା' ନାଟକକୁ ଗ୍ରହଣ କରାଯାଉ । ପୁରାଣ ଯୁଗର କଂସକୁ ଅତ୍ୟାଚାରର ଓ ଶୋଷଣର ପ୍ରତୀକଭାବେ ଏହି ନାଟକରେ ଉପସ୍ଥାପନ କରାଯାଇଛି । ପୁରାଣର ଏହି ଚରିତ୍ରକୁ ଆଧୁନିକତାର ମାପକାଠିରେ ବିଚାର କରି ନାଟ୍ୟକାର ବିବର୍ତ୍ତିତ ମୂଲ୍ୟବୋଧ ସହ ତା'ର ସଂଯୋଗ କରିଛନ୍ତି । ତେଣୁ ଏ ନାଟକ ସମ୍ପର୍କରେ ନାଟ୍ୟକାର 'ନିଜସ୍ୱ ସଂଳାପ'ରେ ଲେଖିଛନ୍ତି, "ଏଥିରେ କଂସର ଆତ୍ମା ବୋଲି ମୁଁ ଯାହାକୁ ମନେକରିଛି ସେ ହେଉଛି କଂସର ଭାବମୂର୍ତ୍ତି । ସେ ହେଉଛି ଅନ୍ୟାୟ, ଶୋଷଣ ଓ ଅତ୍ୟାଚାରର ପ୍ରତୀକ । ମଣିଷର ମନ ମଧ୍ୟରେ ତା'ର ସ୍ଥାନ । ବହୁ ବିପ୍ଳବ, ସମାଜର ବିବର୍ତ୍ତନଧାରା ତାକୁ ବିନାଶ କରିପାରିନି କି କିମ୍ବା ପାରିବ ନାହିଁ ମଧ୍ୟ । ଏକଥା ହୁଏତ ଇତିହାସରେ ଦେଖାଦେଇଛି କେତେବେଳେ ଶାସିତ ବିପ୍ଳବର ଡାକରା ଦେଇ ଅତ୍ୟାଚାରୀ ଶାସକକୁ ଗାଦିଚ୍ୟୁତ କରିଛି

କିମ୍ବା ପରାଜିତ ହୋଇଛି ନିର୍ମମ ଭାବରେ । ନୂତନ ଶାସନ ଧାରା ଆସିଛି ସମାଜକୁ, ମାତ୍ର ସବୁଠି କଂସ, ବଡ଼ ବ୍ୟାପକ ତା'ର ଗତି । ସେ ବିଶ୍ୱର ପ୍ରତି ଅଣୁ ପରମାଣୁରେ ମିଶିଯାଇଛି । କୃଷ୍ଣ କିମ୍ବା ଯେତେ ମହାପୁରୁଷ ଆସିଛନ୍ତି ଏ ପୃଥିବୀକୁ ତା'ର କେହି କିଛି କରିପାରି ନାହାନ୍ତି ।"

ପ୍ରକୃତରେ କଂସ କୃଷ୍ଣଙ୍କ ହାତରେ ମରି ନାହିଁ, ବରଂ ସେ ବଞ୍ଚି ରହିଛି ପ୍ରତ୍ୟେକ ମଣିଷର ସଇତାନୀ ପ୍ରବୃତ୍ତି ଭିତରେ । ଯାହାକୁ ନାଟ୍ୟକାର ଦର୍ଶାଇବାକୁ ଚାହିଁଛନ୍ତି । ନାଟକର ପ୍ରଥମ ପର୍ବରେ ରାଜାରାଜୁଡ଼ା ଅମଳର ଏକ କାଳ୍ପନିକ ପୃଷ୍ଠଭୂମି ଭିତରେ ନାଟ୍ୟକାର କଂସର ଅସ୍ତିତ୍ୱକୁ ଦର୍ଶାଇବାର ପ୍ରୟାସ କରିଛନ୍ତି । ରାଜା ଅନ୍ଧକ ଭିତରେ କଂସର ଆତ୍ମାଟି ପ୍ରତିଭାତ ହୋଇଛି । ଅନ୍ଧକ ରାଜ୍ୟର ଦରିଦ୍ର ପ୍ରଜା ଧର୍ମପାଳ ଓ ତା'ର ପତ୍ନୀକୁ ବନ୍ଦୀ କରିଛନ୍ତି । ସେମାନଙ୍କଠାରୁ ବନ୍ଦୀଗୃହରେ ଜନ୍ମନେଇଥିବା ଅଲୌକିକ ଶିଶୁର ଜନ୍ମ ପରେ ପରେ ଅନ୍ୟାୟର ଅନ୍ଧକାର ହଟିଯାଇଛି । ନିରୀହମାନେ ଶୃଙ୍ଖଳମୁକ୍ତ ହୋଇଛନ୍ତି, ରାଜା ଅନ୍ଧକ ପ୍ରଜା ବିଦ୍ରୋହରେ ବନ୍ଦୀ ହୋଇଛନ୍ତି । କେଉଁଠି ବି କୃଷ୍ଣ ଜନ୍ମର ସାମାନ୍ୟ ଆଭାସ କି ଦୃଶ୍ୟରେ ସୂଚନା ନ ଦେଇ କୃଷ୍ଣ ଜନ୍ମର ମିଥ୍‌କୁ ନାଟ୍ୟକାର ମହୋଦୟ ଧର୍ମପାଳର ପୁତ୍ରଜନ୍ମ ସହିତ ଯୋଡ଼ି ଦେଇ ପ୍ରତୀକାତ୍ମକ ଢଙ୍ଗରେ ଏହାକୁ ଉପସ୍ଥାପନ କରିଛନ୍ତି । ସେହିପରି ନାଟକର ଦ୍ୱିତୀୟ ପର୍ବରେ ଗଣତନ୍ତ୍ର ନାଁରେ ଶାସନ କରୁଥିବା ଶିଳ୍ପପତି ଅନ୍ଧଲୋଚନଙ୍କ ଭିତରେ କଂସର ବିଦ୍ୟମାନ ସତ୍ତାକୁ ନାଟ୍ୟକାର ଉପଲବ୍ଧି କରାଇଛନ୍ତି । ଏହି ଭାଗରେ ନିଜ ଷଡ଼ଯନ୍ତ୍ରରେ ସଫଳ ହୋଇଥିବା ଶିଳ୍ପପତି ଅନ୍ଧଲୋଚନଙ୍କ ମାଧ୍ୟମରେ ଦର୍ଶାଇ ଦିଆଯାଇଛି ଯେ, କଂସର ସତ୍ତା ରାଜତନ୍ତ୍ରରୁ ଗଣତନ୍ତ୍ର ପର୍ଯ୍ୟନ୍ତ ଲମ୍ବି ଆସିଛି । ତା'ର ଶୋଷଣ ସଭ୍ୟତାର ସତ୍ୟନିଷ୍ଠ ମାନଙ୍କ କଣ୍ଠରୋଧ କରି ଅସତ୍ୟର ଅନ୍ୟାୟର କଳଙ୍କିତ ସତ୍ତାକୁ ବିସ୍ତାରିତ କରିଛି । ମାର୍କସ୍‌ବାଦୀ ଚିନ୍ତାଧାରା ଭିତରେ ନାଟ୍ୟକାର କଂସର ମିଥ୍‌କୁ ଯୋଡ଼ିଦେଇ ଏହାକୁ ଉପସ୍ଥାପନ କରିବାରେ ସଫଳ ହୋଇଛନ୍ତି ।

ମିଥ୍‌ର ପୁନର୍ନିର୍ମାଣ ଭିତରେ ନାଟ୍ୟକାରଙ୍କ 'କର୍ଣ୍ଣ' ନାଟକ ଏକ ସ୍ୱତନ୍ତ୍ର ଆବେଦନ ସୃଷ୍ଟି କରିଛି । ଭାଗ୍ୟ ଓ ପୌରୁଷର ସଂଘର୍ଷ ମଧ୍ୟରେ କର୍ଣ୍ଣର ଅସ୍ତିତ୍ୱ ସର୍ବଦା ମଣିଷ ଭିତରେ ଦେଖାଦେଇଛି । ନାଟକର ମୁଖଶାଳାରେ ସେଥିପାଇଁ ନାଟ୍ୟକାର ସ୍ୱୀକାର କରିଛନ୍ତି, "କର୍ଣ୍ଣ କେବଳ ମହାଭାରତର ଚରିତ୍ର ବିଶେଷ ହୋଇ ରହିନାହିଁ, ଆଧୁନିକ ମାନସିକତା ମଧ୍ୟରେ ସେ ତା'ର ଅସ୍ତିତ୍ୱ ବି ବାଛି ନେଇଛି । ଶତ ଉପେକ୍ଷା ଓ ନିର୍ଯ୍ୟାତନା ମଧ୍ୟରେ ସେ ପ୍ରତିଷ୍ଠା ଖୋଜେ । ଯୁଗଯୁଗ ଧରି ତା'ର ଜୟଯାତ୍ରା ।'' ଏହି ଚିନ୍ତାଧାରା ଉପରେ ଆଧାରିତ ନାଟକ 'କର୍ଣ୍ଣ' ଯେଉଁଥିରେ ପୁରାଣ ଦୃଷ୍ଟି ସହ ଆଧୁନିକ ଜୀବନବୋଧକୁ ଗୁନ୍ଥିହେବାର ଚେଷ୍ଟା କରାଯାଇଛି ।

ମୁକ୍ତ ଧାରାରେ ରଚିତ ଏହି ନାଟକର ପ୍ରସ୍ତାବନାରେ କର୍ଣ୍ଣ-ଅର୍ଜ୍ଜୁନର ଯୁଦ୍ଧ ଦୃଶ୍ୟ ଅଭିନୀତ ହେଉଛି । ପ୍ରଥମ ଜୋନ୍‌ଟି ଅନ୍ଧକାରମୟ ହୋଇଥିଲା ବେଳେ ଦ୍ୱିତୀୟ ଜୋନ୍‌ଟି ଆଲୋକିତ ହୋଇଛି । ଏହି ଦ୍ୱିତୀୟ ଜୋନ୍‌ରେ ଯୁଦ୍ଧର ଘନଘଟା, ଅସ୍ତ୍ରଶସ୍ତ୍ର ଝନ୍‌ତକାର ସହ ଯୁଦ୍ଧାଶ୍ୱମାନଙ୍କର ହେଷ୍ରାରବ, ଟଳିପଡୁଥିବା ଯୋଦ୍ଧାମାନଙ୍କର ସ୍ୱର ଶୁଣାଯାଇଛି । ପୁଣି ପ୍ରଥମ ଜୋନ୍ ଆଲୋକିତ ହେଲାବେଳକୁ କର୍ଣ୍ଣଙ୍କ ରଥଚକ୍ର ମେଦିନୀ ଗ୍ରାସ କରିଥିବାର ଦୃଶ୍ୟ ଦେଖିବାକୁ ମିଳିଛି । ରଥଚକକୁ ଉଦ୍ଧାର କରୁଥିବାବେଳେ ନିରସ୍ତ୍ର କର୍ଣ୍ଣ ଅର୍ଜ୍ଜୁନର ଶରରେ ଟଳି ପଡିଛନ୍ତି । କରୁଣ ସଂଗୀତର ମୂର୍ଚ୍ଛନା ସହ ମଞ୍ଚ ଅନ୍ଧକାର ହୋଇଛି ।

ସମୟର ବିବର୍ତ୍ତନ ଧାରାରେ ପୁରାଣର ଚରିତ୍ରମାନେ ଆଧୁନିକ ଜୀବନରେ ରୂପାନ୍ତରିତ ହୋଇଛନ୍ତି । ନାଟକର ଦ୍ୱିତୀୟ ଭାଗଟି ଚରିତ୍ରମାନଙ୍କର ଏହି ପରିବର୍ତ୍ତନକୁ ଦର୍ଶାଇଛି । କୃଷ୍ଣ-କେଶବ ଦାସ ବିଧାୟକ ରୂପରେ, ଅର୍ଜ୍ଜୁନ-ଶିଳ୍ପପତି ପାର୍ଥ ନାମରେ, କର୍ଣ୍ଣ-ସୂର୍ଯ୍ୟପ୍ରକାଶ ଭାବେ, ଦ୍ରୌପଦୀ-ଶିଳ୍ପପତି ପାର୍ଥଙ୍କ ପତ୍ନୀ କୃଷ୍ଣା ନାମରେ ଏହି ଦ୍ୱିତୀୟ ପର୍ଯ୍ୟାୟରେ ଆତ୍ମପ୍ରକାଶ କରିଛନ୍ତି । ପୁରାଣର କର୍ଣ୍ଣ ପରି ଆଧୁନିକ କର୍ଣ୍ଣ-ସୂର୍ଯ୍ୟପ୍ରକାଶ ବି ନିଜର ମାତୃ-ପିତୃ ପରିଚୟ ନ ପାଇ ଲାଞ୍ଛିତ ହୋଇଛି । ବିଧାୟକ କେଶବ ଓ ଶିଳ୍ପପତି ପାର୍ଥଙ୍କ ରୋଷର ଶିକାର ହୋଇ ନିଜର ଜୀବିକା ଅର୍ଜ୍ଜନରେ ସୂର୍ଯ୍ୟପ୍ରକାଶ ବିଫଳ ହୋଇଛି । ଏପରିକି ସେ ଭଲ ପାଉଥିବା କୃଷ୍ଣାକୁ ବି ବିବାହ କରିପାରିନି । କୃଷ୍ଣା ବିବାହ କରିଛି ଶିଳ୍ପପତି ପାର୍ଥକୁ । ସର୍ବହରାମାନେ ନିଜର ନ୍ୟାଯ୍ୟଦାବି ପାଇଁ ଶିଳ୍ପପତି ପାର୍ଥ ବିରୋଧରେ ବିଦ୍ରୋହ କଲାବେଳେ ସେମାନଙ୍କୁ ସହଯୋଗର ହାତ ବଢ଼ାଇଛନ୍ତି ସୂର୍ଯ୍ୟପ୍ରକାଶ ଓ ତା'ର ବନ୍ଧୁ ଦୁର୍ଯ୍ୟୋଧନ । ଏଠି ଦୁର୍ଯ୍ୟୋଧନ ପୁରାଣର ଚରିତ୍ର ପରି ନକରାତ୍ମକ ନହୋଇ ସକରାତ୍ମକ ଚରିତ୍ରର ମର୍ଯ୍ୟାଦା ପାଇଥିବା ବେଳେ କେଶବ ଦାସ ଛକାପଞ୍ଝା ରାଜନୀତିର କାର୍ପଟଦାର ଓ ଶିଳ୍ପପତି ପାର୍ଥ ଶୋଷକ ପୁଞ୍ଜିପତିର ବଟସ୍କର ଭାବରେ ଉପସ୍ଥାପିତ ହୋଇଛି । ଏହି ଚରିତ୍ରମାନଙ୍କୁ ନେଇ ନାଟ୍ୟକାର ପୌରାଣିକ କାହାଣୀର ବିନିର୍ମାଣ କରିଛନ୍ତି । ନିଜର ବିବେକ ପାଖରେ ପରାଜିତ ହୋଇ କୁନ୍ତୀ ଯେତେବେଳେ ପ୍ରତ୍ୟାଖ୍ୟାନ କରିଥିବା ଆପଣାର ପୁତ୍ର ସୂର୍ଯ୍ୟପ୍ରକାଶକୁ ତା'ର ବଂଶ ପରିଚୟ ଦେଇଛନ୍ତି, ସେତେବେଳେ ସୂର୍ଯ୍ୟର ନିଜ ପ୍ରତି ଘୃଣାଭାବ ଆସିଯାଇଛି । କୁନ୍ତୀ ସୂର୍ଯ୍ୟକୁ ନିଜର ପୁତ୍ର ଭାବେ ସର୍ବସାଧାରଣରେ ସ୍ୱୀକାର କଲାବେଳକୁ ସୂର୍ଯ୍ୟପ୍ରକାଶ ପାର୍ଥର ଗୁଳିରେ ନିହତ ହେଉଛନ୍ତି । ପୁରାଣର କର୍ଣ୍ଣ ଆଧୁନିକ ଜୀବନର ସୂର୍ଯ୍ୟ ପ୍ରକାଶରେ ପରିବର୍ତ୍ତିତ ହୋଇଛି ସତ, ମାତ୍ର ସୁବିଧାବାଦୀ ଗାଣତାନ୍ତିକ ବ୍ୟବସ୍ଥା ଭିତରେ ତା'ର ପରାହତ ଅସ୍ତିତ୍ୱ, ବଂଶ ଆଭିଜାତ୍ୟର ଅଭାବ, ତାକୁ ଚିରଦିନ ଲାଞ୍ଛନାର ନିଆଁରେ ଜାଳିଦେଇଛି । ଭାଗ୍ୟ ଓ ପୁରୁଷାକାରର ସଂଘର୍ଷ ଭିତରେ ତା'ର ହାହାକାର, ଅସରନ୍ତି ଜୀବନଜ୍ୱାଳାରେ ତାକୁ ଭସ୍ମୀଭୂତ କରିଚାଲିଛି । ଏକଥା ସତ ଯେ, ବ୍ୟାସ ଓ ସାରଳାଙ୍କ କର୍ଣ୍ଣଠାରୁ ବିଜୟ କୁମାର ଶତପଥୀଙ୍କ 'କର୍ଣ୍ଣ' ନାଟକର ଆଧୁନିକ କର୍ଣ୍ଣ-ସୂର୍ଯ୍ୟପ୍ରକାଶ

ଚିନ୍ତା ଓ ଚେତନାର ଦୃଷ୍ଟିରୁ ନିଆରା । ପୁଣି ସେହି କର୍ଣ୍ଣ ଆଧୁନିକ ଜୀବନର ନିର୍ଯ୍ୟାତିତ ମଣିଷର ପ୍ରତୀକ । ମାର୍କସ୍‌ବାଦର ଶ୍ରେଣୀ ସଂଘର୍ଷ ସହ ପୁରାଣର କର୍ଣ୍ଣ ମିଥ୍‌କୁ ଆଧୁନିକ ଜୀବନ ସହ ଯୋଡ଼ିଦେଇ ନାଟ୍ୟକାର ବିଜୟ କୁମାର ଶତପଥୀ କର୍ଣ୍ଣ ଚରିତ୍ରକୁ ଆଉ ଏକ ସ୍ତରକୁ ଉତ୍ତୀର୍ଣ୍ଣ କରାଇଛନ୍ତି ।

ଅନ୍ୟପକ୍ଷରେ 'ଶୋଣିତ ସ୍ୱାକ୍ଷର' ନାଟକରେ ନାଟ୍ୟକାର ଖୁଲଣା ସୁନ୍ଦରୀ ତଥା ନିଶା ମଙ୍ଗଳବାର ଓଷାର ମିଥ୍‌କୁ ଚମତ୍କାର ଭାବେ ଉପସ୍ଥାପନ କରିଛନ୍ତି । ନାଟକର ପ୍ରଥମ ପର୍ଯ୍ୟାୟରେ ଶ୍ରୀଧର ରାଜା ସୁଦର୍ଶନଙ୍କ ଅନ୍ଧ ଶାସନରୁ ରାଜ୍ୟକୁ ମୁକ୍ତ କରିବା ସହ ବନ୍ଦୀ ପିତାଙ୍କ ପାଇଁ ମୁକ୍ତିଦାତା ହୋଇଛି । ସେ ମୁକ୍ତି ଓ ନୂତନ ସକାଳର ମଙ୍ଗଳମୟ ଆବାହନ କରି ସତ୍ୟନିଷ୍ଠତାର ପରିଚୟ ଦେଇଛି । ତେବେ ନାଟକର ଦ୍ୱିତୀୟ ପର୍ଯ୍ୟାୟରେ ଟ୍ରାନ୍‌ସଫରମେସନ୍ ଟେକ୍‌ନିକ୍ ଦ୍ୱାରା ନାଟକର କଥାନକ ଓ ଚରିତ୍ରର ରୂପାନ୍ତର ଘଟିଥିବା ବେଳେ ଶ୍ରୀଧର ଶ୍ରେଣୀହୀନ ମଣିଷମାନଙ୍କ ପ୍ରତିନିଧି ସାଜିଛି । ଏଠାରେ ବି ମାର୍କସ୍‌ବାଦୀ ଚିନ୍ତାଧାରା ସହ ଶ୍ରୀଧରଙ୍କୁ ନାଟ୍ୟକାର ସଂଯୁକ୍ତ କରି ଶ୍ରେଣୀ ସଂଗ୍ରାମରେ ଅବତୀର୍ଣ୍ଣ କରାଇଛନ୍ତି । ସମସ୍ତେ ଏହି ଦ୍ୱିତୀୟ ପର୍ଯ୍ୟାୟରେ ଶ୍ରୀଧରର ଆସିବା ପଥକୁ ଅପେକ୍ଷା କରିଥିବା ବେଳେ ଶ୍ରୀଧର ଫେରିନି । ଶିଳ୍ପପତି ପ୍ରିୟଦର୍ଶନଙ୍କ ଷଡ଼ଯନ୍ତ୍ରରେ ବଳି ପଡ଼ିଯାଇଛି ଶ୍ରୀଧର । ଶ୍ରୀଧର ଆସିବାର ସମ୍ଭାବନା ଭିତରେ ଅତି ଆକସ୍ମିକ ଭାବେ ନାଟକର ଯବନିକା ପଡ଼ିଛି । "ନାଟକର ପ୍ରଥମ ପର୍ଯ୍ୟାୟରେ ଶ୍ରୀଧର ଏକ ପରିବର୍ତ୍ତିତ ମୂଲ୍ୟବୋଧ ଆଣିଛି । କିନ୍ତୁ ସେଇ ପରିବର୍ତ୍ତିତ ମୂଲ୍ୟବୋଧ ପରେ ଯେଉଁ ପଚମାନ ଅପସଂସ୍କୃତି ଓ ଭ୍ରଷ୍ଟାଚାରର ଶିକାର ହୋଇଛି – ସେଥିରେ ଶ୍ରୀଧର ବଡ଼ କରୁଣ ଭାବରେ ମୃତ୍ୟୁବରଣ କରିଛି । କିନ୍ତୁ ସମସ୍ତେ ଚାହିଁଛନ୍ତି କେବେ ଆସିବ ଶ୍ରୀଧର ? ତା' ଆସିବାର ଇଙ୍ଗିତ ମଧ୍ୟରେ ସଂଗଠିତ ଅସହାୟ ଜନତାର ଶକ୍ତି ଯେପରି ଜାଗ୍ରତ ହୋଇଛି । ତେଣୁ ପ୍ରଥମ ପର୍ଯ୍ୟାୟ ପରେ ଶ୍ରୀଧରକୁ ମଞ୍ଚକୁ ଆସିବାର ଆବଶ୍ୟକତା ପଡ଼ିନାହିଁ ।" (ମୁଖଶାଳା- 'ଶୋଣିତ ସ୍ୱାକ୍ଷର') ଏହି ନାଟକର ନାଟ୍ୟକାର ଖୁଲଣାସୁନ୍ଦରୀ କାହାଣୀ ମାଧ୍ୟମରେ ପ୍ରତିପାଦନ କରିଛନ୍ତି ଯେ ଅବକ୍ଷୟ ମୂଲ୍ୟବୋଧକୁ ଧ୍ୱଂସ କରି ସତ୍ୟ, ସୁନ୍ଦର ଓ ଶ୍ରୀର ବାର୍ତ୍ତା ଆଣୁଥିବା ଶ୍ରୀଧରମାନେ କେବେ ବି ସମାଜ ବ୍ୟବସ୍ଥାର ଷଡ଼ଯନ୍ତ୍ରରେ ମୃତ୍ୟୁବରଣ କରିପାରିବେ ନାହିଁ । ସେମାନେ ନିଶ୍ଚିତ ମଙ୍ଗଳର, ବିଜୟର ବାର୍ତ୍ତା ଦେଇଯିବେ । ଶ୍ରୀଧର କିମ୍ବା ଅନ୍ୟ କେଉଁ ରୂପରେ ।

ନାଟ୍ୟକାରଙ୍କର ଆଉ ଗୋଟିଏ ନାଟକ 'କାରାଗାରର କାହାଣୀ'ରେ ମିଥ୍‌ର ପ୍ରତୀକାତ୍ମକ ଉପସ୍ଥାପନାଟି ଅତ୍ୟନ୍ତ ଉଚ୍ଚକୋଟୀର ହୋଇଛି । ଏକଦା ଯେଉଁ କାରାଗାର ବନ୍ଦୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା, ତାର ପରିଚୟ ବଦଳି ଯାଇଛି । ଏଇ ସନ୍ଦେଶ ଦେବା ଭିତରେ ନାଟ୍ୟକାର ଶ୍ରୀକୃଷ୍ଣ ଜନ୍ମର ମିଥ୍‌କୁ ପ୍ରଥମ ପର୍ଯ୍ୟାୟରେ ଦର୍ଶାଇଛନ୍ତି । କଂସ, ବସୁଦେବ କିମ୍ବା ଦେବକୀ ଚରିତ୍ରକୁ ପ୍ରତ୍ୟକ୍ଷ ଭାବେ ନ ଦର୍ଶାଇ ବନ୍ଦୀ ଓ ତା'ର ପତ୍ନୀର

କାରାଗାର ମଧ୍ୟରେ ପୁତ୍ର ଜନ୍ମହେବା, ପୁତ୍ରର ଜନ୍ମ ପରେ ପ୍ରହରୀମାନେ ଶୋଇପଡିବାର ଦୃଶ୍ୟ ଅବତାରଣା କରିବା ସହ ଭାଗବତର ପଙ୍‌କ୍ତିକୁ ଏହି ଦୃଶ୍ୟ ସହ ଯୋଡ଼ି ନାଟ୍ୟକାର ପ୍ରତୀକାତ୍ମକ ଭାବରେ କୃଷ୍ଣଜନ୍ମ ମିଥ୍‌ର ଦୃଶ୍ୟରୂପ ସଂଯୋଜନା କରିଛନ୍ତି ।

ନାଟ୍ୟକାରଙ୍କ 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକଟି ମିଥ୍‌ର ନିର୍ମାଣ-ବିନିର୍ମାଣ ଭିତରେ କରୁଣରସର ଆବେଦନ ସୃଷ୍ଟି କରିଛି । ସମସ୍ତ ପ୍ରଥାବଦ୍ଧତାକୁ ଭାଙ୍ଗି ନାଟ୍ୟକାର ମିଥ୍‌ର ଗଢ଼ଣକୁ ବି ନାଟକରେ ବିଘଟନ କରିଛନ୍ତି । 'ଦାର୍ଢ୍ୟତା ଭକ୍ତି'ର ବିଲ୍ୱମଙ୍ଗଳ ମିଥ୍‌କୁ ନେଇ ନାଟ୍ୟକାର ପ୍ରବୃତ୍ତି-ନିବୃତ୍ତିର ଛକାପଞ୍ଝା ଖେଳ ଭିତରେ ଅମଙ୍ଗଳର ବାର୍ତ୍ତା ଆଣିଥିବା ବିଲ୍ୱମଙ୍ଗଳଙ୍କୁ ମଙ୍ଗଳମୟ ଭାବେ ଉପସ୍ଥାପନ କରିଛନ୍ତି । ନିଜର ରୁଗ୍‌ଣ ପିତାଙ୍କୁ ଶଯ୍ୟାରେ ଛାଡ଼ିଦେଇ ଗଣିକା ଚିନ୍ତାମଣି ନିକଟକୁ ରତିଭିକ୍ଷା କରିବାକୁ ଯାଇଥିବା ବିଲ୍ୱମଙ୍ଗଳ ତା'ଠାରୁ ନିଜର ପ୍ରବୃତ୍ତି ପାଇଁ ଧିକ୍‌କାର ଶୁଣି ନିବୃତ୍ତିମାର୍ଗରେ ପାଦ ଦେଇଛନ୍ତି । ତଥାପି ପ୍ରବୃତ୍ତିର ତାଡ଼ନାରୁ ମୁକ୍ତ ହୋଇ ନ ପାରି ବିଲ୍ୱମଙ୍ଗଳ ଜନୈକ ସାଧବର ପତ୍ନୀକୁ ଉପଭୋଗ କରିବାର ଲାଲସାରେ କବଳିତ ହୋଇଛନ୍ତି । ସାଧବ ପତ୍ନୀ ନିକଟରେ ପହଞ୍ଚି ଆପଣାର ଅଭିପ୍ରାୟ ବ୍ୟକ୍ତ କରନ୍ତେ ସାଧବ ପତ୍ନୀର ଧିକ୍‌କାର ଶୁଣି ସେ ସଚେତନ ହୋଇଛନ୍ତି ଓ ସାଧବପତ୍ନୀର ମୁଣ୍ଡ ଖୋସାରେ ଥିବା କଣ୍ଟା ଦ୍ୱାରା ନିଜର ଚକ୍ଷୁ ଫୁଟାଇ ଦେଇ କୃଷ୍ଣଙ୍କ ଅନ୍ୱେଷଣରେ ବାହାରିଯାଇଛନ୍ତି । ଶ୍ରୀକୃଷ୍ଣଙ୍କ କୃପାରେ ବିଲ୍ୱମଙ୍ଗଳ ଚକ୍ଷୁ ପ୍ରାପ୍ତ ହେବା ସହ ଆଧ୍ୟାତ୍ମିକ ଜ୍ଞାନ ଲାଭ କରିଛନ୍ତି ଏବଂ ଏହି ଘଟଣାର ଅନ୍ତରାଳରେ ପ୍ରଚ୍ଛନ୍ନ ଭୂମିକା ନିର୍ବାହ କରିଥିବା ଗଣିକା ଚିନ୍ତାମଣିକୁ ଗୁରୁଭାବରେ ସ୍ୱୀକାର କରି ସେ ତା' ନିକଟକୁ ପାଖକୁ ଫେରି ଆସିଛନ୍ତି । ମୂଳ କାହାଣୀରେ ଚିନ୍ତାମଣି ବିଲ୍ୱମଙ୍ଗଳ ସହ କୃଷ୍ଣପ୍ରେମରେ ନିମଜ୍ଜିତ ହୋଇ ବୃନ୍ଦାବନ ଯାତ୍ରା କରିବା ପ୍ରସଙ୍ଗ ରହିଥିଲାବେଳେ ନାଟ୍ୟକାର ଏହି ନାଟକରେ କାହାଣୀର ବିଘଟନ କରିଛନ୍ତି, ଫଳରେ ବିଲ୍ୱମଙ୍ଗଳଙ୍କ ବୈରାଗ୍ୟକୁ ଅସ୍ୱୀକାର କରି ଚିନ୍ତାମଣି ତାର ଅନୁରାଗର ବିଲ୍ୱମଙ୍ଗଳଙ୍କୁ ଦେଖିବାକୁ ଚାହିଁଛି । ଚିନ୍ତାମଣି ଏଥିରେ ବିଫଳ ହେବା ପରେ ବିଲ୍ୱମଙ୍ଗଳଙ୍କୁ ତା'ପାଖରୁ ଫେରାଇ ଦେଇଛି । ଚିନ୍ତାମଣିର ରୂପାନ୍ତର, ଆଧ୍ୟାତ୍ମିକ ବୈରାଗ୍ୟକୁ ବୁଝେନି ବରଂ ସେ ଅନୁରାଗ ଓ ପ୍ରେମର ଜୀବନ ଚାହେଁ, ଯାହାକୁ ନାଟ୍ୟକାର ଏହି ଚରିତ୍ର ଭିତରେ ଦର୍ଶାଇଛନ୍ତି । ଏକଦା ଅନ୍ୟମାନଙ୍କ ପାଇଁ ଅମଙ୍ଗଳର ରାହୁଥିବା ବିଲ୍ୱମଙ୍ଗଳ ରୂପାନ୍ତରରେ ମଙ୍ଗଳର ମନ୍ତ୍ରଧ୍ୱନି ଶୁଣାଇବା ପରେ ବି ଚିନ୍ତାମଣି ନିକଟରୁ ପ୍ରତ୍ୟାଖାତ ହେବା ଘଟଣା ବିଲ୍ୱମଙ୍ଗଳ ମିଥ୍‌ର ବିଘଟନକୁ ପ୍ରକାଶ କରିଛି । ନାଟ୍ୟକାର ଏହି ନାଟକରେ ମଙ୍ଗଳ ଅମଙ୍ଗଳ ଭିତରେ ବିଲ୍ୱମଙ୍ଗଳ ଚରିତ୍ରର ରୂପାନ୍ତର ଦର୍ଶାଇ ପରମ୍ପରା ପୁରାଣର ବଳୟ ମଧ୍ୟରୁ ଚରିତ୍ରମାନଙ୍କୁ ଆଣି ଦର୍ଶକଙ୍କ ପାଖରେ ଅଧିକ ବାସ୍ତବ କରି ଗଢ଼ିତୋଳିଛନ୍ତି ।

୨୦୧୧ ମସିହା ପୂଜାସଂଖ୍ୟା 'ବର୍ତ୍ତିକା' ପତ୍ରିକାରେ ପ୍ରକାଶ ପାଇଥିଲା ନାଟ୍ୟକାର ଶତପଥୀଙ୍କର 'କୋକୁଆ' ନାଟକ । ଏହା ୦୪.୦୭.୨୦୧୩ ଓ ୨୫.୦୯.୨୦୧୩ରେ

ତ୍ରିନେତ ନାଟ୍ୟସଂସ୍ଥା ତରଫରୁ ରବୀନ୍ଦ୍ରମଣ୍ଡପ ଓ କଳାବିକାଶ କେନ୍ଦ୍ରଠାରେ ମଞ୍ଚସ୍ଥ ହୋଇଥିଲା । ସାରଳା ମହାଭାରତ ବର୍ଣ୍ଣିତ 'କୋକୁଆ' ଉପାଖ୍ୟାନର ନିର୍ଯ୍ୟାସ ବା essenceକୁ ଧରି ରଖିଛି ଏହି ନାଟକ । 'କୋକୁଆ' ହେଉଛି ଭୟ ଓ ଆତଙ୍କର ପ୍ରତୀକ । ସଂପ୍ରତି ଆମର ସମାଜ ଜୀବନ ନିକ୍ଷିପ୍ତ ହୋଇଛି ଏହା ମଧ୍ୟକୁ । ବିସ୍ଥାପନ ଓ ନକ୍ସଲ ସମସ୍ୟାକୁ ଏକ ମାନବିକ ସମ୍ବେଦନା ଦୃଷ୍ଟିରୁ ନାଟ୍ୟକାର ବିଚାର କରିଛନ୍ତି । ଅର୍ଥ, କ୍ଷମତା, ପାଶବିକ ପ୍ରବୃତ୍ତି ଆଦି ସବାର୍ ହୋଇଛି ମଣିଷ ମନରେ । ପଲ୍ଲୀର କମ୍ର ବୁକୁ ଉପରେ କୋକୁଆର ଅଶାନ୍ତ ଡେଣା, ସବୁ ହୋଇଛି ବିପର୍ଯ୍ୟସ୍ତ-ନାରଖାର । ଆଦିବାସୀର ସରଳ ଜୀବନଚର୍ଯ୍ୟା ନଈ, ଝରଣା, କ୍ଷେତ ଓ ଜଙ୍ଗଲ ସବୁ ବିଧ୍ୱସ୍ତ ଆଜି । ବିସ୍ଥାପନ ଆଣିଛି ଆଦିବାସୀ ପାଇଁ ନୂତନ ସମସ୍ୟା । ନାଟକ ବର୍ଣ୍ଣିତ ଆଦିବାସୀ ପଲ୍ଲୀ ଧମାଗୁଡ଼ା ଗାଆଁ ମଧ୍ୟ ସେଥିରୁ ମୁକୁଳିନି । ଏଠାରେ ଭୟ ଓ ଆତଙ୍କର କଳା ବାଦଲ ଢାଙ୍କି ହୋଇରହିଛି । ଶ୍ୟାମାନନ୍ଦ ଏହି ଗାଆଁରେ ଏକ ଆଶ୍ରମ କରି ମଣିଷ ଚରିତ୍ରର ରୂପାନ୍ତର ପାଇଁ ଉଦ୍ୟମ କରନ୍ତି । ମାନବିକତାର ମହାମନ୍ତ୍ର ପ୍ରଚାର କରନ୍ତି । କିନ୍ତୁ ତାଙ୍କ ଆଦର୍ଶର ରୂପାୟନ ସମ୍ଭବ ହୁଏନି । ହାରିଯାଆନ୍ତି ଶ୍ୟାମାନନ୍ଦ- ଯିଏ ଦିନେ କହୁଥିଲେ ହତ୍ୟା, ଧ୍ୱଂସ ଓ ବିଭୀଷିକା ସମାଜ ପରିବର୍ତ୍ତନର ନିୟାମକ ନୁହେଁ । ଏଥିପାଇଁ ଚିତ୍ତବୃତ୍ତିରେ ପରିବର୍ତ୍ତନ ଆବଶ୍ୟକ । ପୁଣି ଆଗପରି ଚାଲେ କୋକୁଆର ରାଜୁତି । ତେବେ ଶ୍ୟାମାନନ୍ଦଙ୍କ ବିପର୍ଯ୍ୟୟ ଏକ ସାମୟିକ କିମ୍ବା କାଳାନ୍ତରର ଇସ୍ତାହାର ସେଇ ପ୍ରଶ୍ନର ଅବତାରଣା ମଧ୍ୟରେ ଏହି ସମସ୍ୟା ଆଧାରିତ ନାଟକର ପରିସମାପ୍ତି ଘଟିଛି ।

ବିଜୟ କୁମାର ଶତପଥୀଙ୍କ ନାଟକରେ ମିଥ୍‌ର ଖେଳ ସମ୍ପର୍କରେ ଉପରୋକ୍ତ ଆଲୋଚ୍ୟ ନାଟକଗୁଡ଼ିକର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ହୋଇଛି । ବିଜୟ କୁମାର ଶତପଥୀ କେବେ ପୁରାଣର କାହାଣୀ-ଚରିତ୍ର-ଆଖ୍ୟାନକୁ ଆଣି ଆଧୁନିକ ଜୀବନ ସହ ଯୋଡ଼ି ନୂତନ ସତ୍ୟର ଅବତାରଣା କରିଛନ୍ତି ତ ଆଉ କେବେ ପ୍ରତୀକାତ୍ମକ ଢଙ୍ଗରେ ଏହି ସବୁକୁ ଉପସ୍ଥାପନା କରିଛନ୍ତି । ପୁଣି କେବେ ପୁରାଣ ଚରିତ୍ରମାନଙ୍କୁ ମାର୍କସ୍‌ବାଦୀ ଚିନ୍ତାଧାରାର ଚରିତ୍ର ଭାବେ ଉପସ୍ଥାପନ କରିଛନ୍ତି ତ ଆଉ କେବେ ପୁରାଣ ପରମ୍ପରାକୁ ନିର୍ମାଣ-ବିନିର୍ମାଣ କରିବାର ଖେଳ ଖେଳିଛନ୍ତି । ଏହାହିଁ ମିଥ୍‌କୁ ନେଇ ନାଟକରେ ସ୍ୱତନ୍ତ୍ର ଭାବେ ବ୍ୟବହାର କରିବାରେ ନାଟ୍ୟକାର ଡ. ଶତପଥୀଙ୍କ କୌଶଳ ।

ବିଜୟ କୁମାର ଶତପଥୀଙ୍କ ନାଟକ ପ୍ରତିପାଦନ କରିପାରିଛି ମିଥ୍‌ର ସତ୍ୟ କାଳଜୟୀ ସତ୍ୟ, ଏହା ଭିତରେ ଲୁକ୍‌କାୟିତ ଥାଏ ସମ୍ବେଦନଶୀଳତା, ସୂକ୍ଷ୍ମ ମନନଶୀଳତା । ମିଥ୍‌ର ସତ୍ୟ ଭିତରେ ଜୀବନ ସତ୍ୟର ସନ୍ଧାନ କରି ଆଧୁନିକ ଜୀବନକୁ ନୂତନ ଦୃଷ୍ଟିଭଙ୍ଗୀରେ ଦେଖିଛନ୍ତି ନାଟ୍ୟକାର । ଫଳରେ ତାଙ୍କ ନାଟକର ଆଙ୍ଗିକ ଓ ବକ୍ତବ୍ୟର ନିର୍ମାଣ-ବିନିର୍ମାଣ ଭିତରେ ମିଥ୍ ଆହୁରି ଉଜ୍ଜ୍ୱଳ ହୋଇ ନୂତନ ମୂଲ୍ୟବୋଧର ସନ୍ଧାନ କରିଛି ।



# ବିଜୟ କୁମାର ଶତପଥୀଙ୍କ ନାଟକରେ ଲୋକ ଉପାଦାନ

ମଣିଷ ସଭ୍ୟତାର ବିକାଶ କାଳରୁ ଲୋକସାହିତ୍ୟର ଉନ୍ମେଷ ଘଟିଛି । ଏହି ଲୋକ ସାହିତ୍ୟ ମାନବ ସଭ୍ୟତାର ଜୀବନ ବେଦରେ ପରିଣତ ହୋଇଛି । ଗୋଟିଏ ଜାତିର ଚଳଣି, ଆଚରଣ, ପର୍ବପର୍ବାଣି, କୃଷି, ସାମାଜିକ ବ୍ୟବସ୍ଥାର ପ୍ରତିବିମ୍ବ ଏହି ଲୋକ ସାହିତ୍ୟ ଭିତରେ ପ୍ରତିଫଳିତ ହୋଇଥାଏ । ମଣିଷ ସଭ୍ୟତା ଯେତେ ବିକଶିତ ହେଲେ ମଧ୍ୟ, ଆଧୁନିକ ହେଲେ ମଧ୍ୟ, ଲୋକସାହିତ୍ୟର ଆହ୍ୱାନକୁ ଟାଳିଦେଇ ପାରିନାହିଁ । ଆଧୁନିକ ଜୀବନର, ଆଧୁନିକ ସଭ୍ୟତାର ଭାବ ନିର୍ମାଣକାରୀ ମାନେ ଲୋକସାହିତ୍ୟ ପ୍ରତି ନିଜର ସଶ୍ରଦ୍ଧ ଦୃଷ୍ଟିକୋଣ ପ୍ରକାଶ କରିଛନ୍ତି । ବିଶ୍ୱର ପ୍ରତ୍ୟେକ ସାହିତ୍ୟ ଏହି ଲୋକ ସାହିତ୍ୟରୁ ଉପାଦାନ ସଂଗ୍ରହ କରିଛନ୍ତି । ପୁଣି ଲୋକ ସାହିତ୍ୟର ବିଭିନ୍ନ ବିଭାବ ଯେପରି ଲୋକଗୀତ, ଲୋକନାଟକ, ଲୋକକାହାଣୀ, ଲୋକଚଳଣି ଆଧୁନିକ ସାହିତ୍ୟର ପରିଧି ଭିତରେ ସ୍ୱତନ୍ତ୍ର ଭାବେ ଉପସ୍ଥାପିତ ହୋଇଛି । ଏ ଦୃଷ୍ଟିରୁ ତର୍ଜମା କଲେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଲୋକ ସାହିତ୍ୟର ଉତ୍ସ ନୂତନ ଢଙ୍ଗରେ କବିତା, ଗଳ୍ପ, ଉପନ୍ୟାସ, ନାଟକ ପ୍ରଭୃତିରେ ପରିଲକ୍ଷିତ ହୋଇଛି । ଯଦି ଓଡ଼ିଆ ନାଟକ ପ୍ରସଙ୍ଗକୁ ବିଚାର କରାଯିବ, ତେବେ ଏ କଥା ସତ ଯେ ଲୋକ ସାହିତ୍ୟର ଉପାଦାନ ଓଡ଼ିଆ ନାଟକକୁ ଘୋର ସଂକଟ ସମୟରୁ ଉଦ୍ଧାର କରି ଦର୍ଶକାଭିମୁଖୀ କରାଇପାରିଛି । ନବନାଟ୍ୟ ଆନ୍ଦୋଳନର ପ୍ରଭାବରେ ପରୀକ୍ଷା-ନିରୀକ୍ଷା ଫଳରେ ଓଡ଼ିଆ ନାଟକ ବୌଦ୍ଧିକତାର ମୁଖାପିନ୍ଧି ଷଷ୍ଠ ସପ୍ତମ ଦଶନ୍ଧି ବେଳକୁ ଦର୍ଶକଙ୍କ ପାଖରୁ ଦୂରେଇ ଗଲା । ଫଳରେ ମଞ୍ଚ-ନାଟକ-ଦର୍ଶକଙ୍କ ଭିତରେ ଥିବା ସମ୍ପର୍କର ଡୋରଟି କୋହଳ ହୋଇ ସଂକଟମୟ ସ୍ଥିତିରେ ପହଞ୍ଚିଲା । ଏମିତି ଘଡ଼ିସନ୍ଧି ସମୟରେ ରମେଶ ପ୍ରସାଦ ପାଣିଗ୍ରାହୀ, ମନୋରଞ୍ଜନ ଦାସ, ବିଜୟ ମିଶ୍ରଙ୍କ ଭଳି ପ୍ରତିଷ୍ଠିତ ନାଟ୍ୟକାରମାନେ ଲୋକ ଉପାଦାନର ବ୍ୟବହାର କରି ଓଡ଼ିଆ ନାଟକ ପ୍ରତି ଦର୍ଶକଙ୍କୁ ପୁଣି ଆକର୍ଷିତ କରିବାରେ ସଫଳ ହୋଇଛନ୍ତି । ଲୋକ ଉପାଦାନ କେବଳ ଓଡ଼ିଆ ନାଟ୍ୟରୀତିରେ ନୁହେଁ, ଭାରତୀୟ ନାଟ୍ୟଧାରାରେ ୧୯୭୦ ପରବର୍ତ୍ତୀ କାଳରେ ପ୍ରକାଶ ପାଇ ୧୯୮୦ ବେଳକୁ ବ୍ୟାପକ ହୋଇଛି । ନାଟକର କାହାଣୀ ସହ ଲୋକ ଉପାଦାନ ସଂଯୁକ୍ତ ହୋଇ ଏହାକୁ ଶ୍ରୁତିମଧୁର ଓ ଆହୁରି ଶ୍ରାବ୍ୟ-ଦୃଶ୍ୟ ଉପଯୋଗୀ

କରିବାରେ ଲାଗିଛି । ମନୋରଞ୍ଜନଙ୍କ 'ଅମୃତସ୍ୟ ପୁତ୍ର', 'କାଠଘୋଡ଼ା' ରମେଶ ପ୍ରସାଦଙ୍କ 'ମହାନାଟକ'ରେ ଲୋକ ଉପାଦାନର ପ୍ରୟୋଗ ନାଟକକୁ ନୂଆମୋଡ଼ ଦେବାରେ ସଫଳ ହୋଇଛି । ଲୋକ ନାଟ୍ୟରୀତି, ଲୋକ ସଂଗୀତ, ପାଲା, ଦାସକାଠିଆ, ଚଢ଼େଇୟା ନାଟ, ପତରା ସଉରା ନାଚ ପରି ଲୋକସାହିତ୍ୟର ଏହି ଉପାଦାନକୁ ମାଧ୍ୟମ କରି ଓଡ଼ିଆ ନାଟ୍ୟକାରମାନେ ମଞ୍ଚ ନାଟକ ଦର୍ଶକଙ୍କ ଭିତରେ ଶିଥିଳ ହୋଇ ଯାଇଥିବା ଡୋରିକୁ ପୁଣି ଦୃଢ଼ କରିବାରେ ସଫଳ ହୋଇଛନ୍ତି ବୋଲି କୁହାଯାଇପାରେ ।

୧୯୮୦ ପରବର୍ତ୍ତୀ କାଳରେ ନାଟକରେ ଲୋକ ଉପାଦାନକୁ ବ୍ୟାପକ ଓ ବର୍ଣ୍ଣାଢ଼୍ୟ ପ୍ରୟୋଗ କରିବାରେ ନାଟ୍ୟକାର ବିଜୟ କୁମାର ଶତପଥୀ ସଫଳ ସ୍ରଷ୍ଟାର ମାନ୍ୟତା ପାଇଛନ୍ତି । ତାଙ୍କ ରଚିତ 'ଏଇ ଯେ ସୂର୍ଯ୍ୟ ଉଏଁ', 'ଶୋଣିତ ସ୍ୱାକ୍ଷର', 'ପକା ପଇସା ଦେଖ୍ ତାମ୍‌ସା', 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକଗୁଡ଼ିକରେ ଲୋକ ଉପାଦାନର ପ୍ରୟୋଗ ନାଟକକୁ ଦର୍ଶକାନୁମୋଦିତ ଜନପ୍ରିୟତା ଦେଇଛି । ନାଟକର ଏଇ ଲୋକ ଉପାଦାନ ପ୍ରୟୋଗ କରିବା ଫଳରେ ତାଙ୍କ ନାଟକର ବାର୍ତ୍ତା ଅଧିକ ସଂପ୍ରେଷଣକ୍ଷମ ହେବା ସହ ତାଙ୍କର ଜୀବନ ଦୃଷ୍ଟି ଆହୁରି ନିବିଡ଼ ହୋଇପାରିଛି । ସେ ଲୋକ ଉପାଦାନକୁ ନାଟ୍ୟକାହାଣୀ ସହ କୌଶଳରେ ଗୁନ୍ଥି ଦେଇପାରନ୍ତି ପୁଣି ଗଣଚେତନାର ଜାଗୃତି ପାଇଁ ଏହାକୁ ସମାଜ ବିପ୍ଳବ ସହ ଏକୀଭୂତ କରିପାରନ୍ତି ।

ପ୍ରଥମେ 'ଏଇ ଯେ ସୂର୍ଯ୍ୟ ଉଏଁ' ନାଟକ କଥା ବିଚାର କରାଯାଉ । ଏହି ନାଟକଟି ଦୁଇଟି ପର୍ଯ୍ୟାୟରେ ଯଥା; ରାଜାରାଜୁଡ଼ା ସମୟର ପୃଷ୍ଠଭୂମି ଓ ଶିଳ୍ପ ସଭ୍ୟତାର ତଥା ପୁଞ୍ଜିବାଦର ପୃଷ୍ଠଭୂମି ନେଇ ଗଢ଼ିଉଠିଛି । ନାଟକର ପ୍ରଥମ ପର୍ବରେ ମଞ୍ଚର ପ୍ରଥମ ଜୋନ୍‌କୁ ଆଲୋକ ଆସିଲା ବେଳକୁ ଖୋଳ କରତାଳ ସହିତ ପ୍ରବେଶ କରିଛନ୍ତି ପାଲାଦଳ । ପାଳିଆମାନେ ମଞ୍ଚରେ ପ୍ରବେଶ କରି ଖୋଳ କରତାଳ ବଜେଇ ବିଭିନ୍ନ ଧ୍ୱନିମାନ ସୃଷ୍ଟି କରି ମଞ୍ଚର ଚତୁର୍ଦ୍ଦିଗର ପ୍ରଦକ୍ଷିଣ କରିଛନ୍ତି । ଶ୍ରୀ ପାଳିଆଙ୍କ ନୃତ୍ୟର ଭଙ୍ଗୀ ଓ ପ୍ରାରମ୍ଭିକ ବନ୍ଦନା ପରେ ମଞ୍ଚକୁ ଗାୟକଙ୍କର ପ୍ରବେଶ ଘଟିଛି । ଗାୟକ ମହାଶୟ ପ୍ରଥମେ ଶ୍ଳୋକ ଆବୃତ୍ତି କରିବା ସହ ନାରାୟଣଙ୍କ ସ୍ତୁତିଗାନ କରି ନାଟକର ବିଷୟବସ୍ତୁ ସମ୍ପର୍କରେ ଦର୍ଶକମାନଙ୍କୁ ଅବଗତ କରାଇଛନ୍ତି । ରାଜା ବୀରାଦିତ୍ୟଙ୍କ କୁଶାସନ, ଅତ୍ୟାଚାର ଓ ପ୍ରଜା ଶୋଷଣ ବିଷୟରେ ଗାୟକ ମହାଶୟ ବର୍ଣ୍ଣନା କରି ଗାଇଛନ୍ତି –

"କର୍ଣ୍ଣପୁର ରାଜ୍ୟେ ରାଜା ବୀରାଦିତ୍ୟ
କରୁଥିଲେ ରାଜପଣ
ମନ୍ତ୍ରୀ ଥିଲେ ତାଙ୍କ ଚଣ୍ଡାଦିତ୍ୟ ବୀର
ଅସମ୍ଭବ ଶକ୍ତିମାନ ।

ରାଜାଙ୍କ ଶାସନେ ପ୍ରଜାଗଣ ସର୍ବେ
ତ୍ରାହି ତ୍ରାହି ଡାକୁଥିଲେ
ରାଜଦରବାରରେ କାନକୁହା ଦଳ
ରାଜା ମନ ତୋଷୁଥିଲେ ।
ହତ୍ୟା ବ୍ୟଭିଚାର, ଦୁର୍ନୀତି, ଅନୀତି
ବ୍ୟାପିଥିଲା ରାଜ୍ୟସାରା
ରାଜ କର୍ମଚାରୀ ଧରି ବୁଲୁଥିଲେ
ତୋଷାମଦର ପସରା ।"

ପାଳିଆମାନେ ଗାୟକଙ୍କ ସହ ପାଳିଧରି ଗାନ କରିବା ଅବସ୍ଥାରେ ପ୍ରହରୀର ଡାକ ଶୁଣାଯାଇଛି । ପରେ ଆଲୋକ ପରିବର୍ତ୍ତିତ ହେବା ସହ ମଞ୍ଚରେ ରାଜା ବୀରାଦିତ୍ୟଙ୍କ ପ୍ରବେଶ ଘଟିଛି । ଲକ୍ଷ୍ୟ କରାଯାଇପାରେ କେବଳ ପାଲାର ଆଙ୍ଗିକ ନୁହେଁ, ଏହାର ରିଚୁଆଲସ୍‌କୁ ନାଟକର କାହାଣୀ ଭାଗ ସହିତ କେମିତି ଫେଣ୍ଟି ଦିଆଯାଇଛି । ଏହା ହେଉଛି ଲୋକ ମିଥ୍‌ର ଶକ୍ତିଶାଳୀ ପ୍ରୟୋଗ ରୀତି ।

ସେହିପରି ନାଟକର ଦ୍ୱିତୀୟ ପର୍ଯ୍ୟାୟରେ ଏହି ପାଲାବାଲା ଦଳ ବହି ବିକାଳି ଓ ଷ୍ଟ୍ରିଟ୍ ସିଙ୍ଗର୍ ଭାବରେ ରୂପାନ୍ତରିତ ହୋଇଛନ୍ତି । ଦ୍ୱିତୀୟ ପର୍ବର ଆଲୋକ ଆସିଲାବେଳକୁ ଯେଉଁଠି ସେମାନେ ପାଲା କରୁଥିଲେ ସେଇ ସ୍ଥାନରେ ଜଣେ ବାଉଁଶରେ ଗୋଟିଏ ବଡ଼ ଛବି ଧରିଛି । ଜଣେ ହାରମୋନିୟମ୍ ଆଉ ଜଣେ ମୃଦଙ୍ଗ ବଜାଇବା ସହ ଅନ୍ୟ ଜଣେ ସେମାନଙ୍କ ସହ ପାଳି ଧରୁଛି । ସେମାନଙ୍କ ବେଶ ପରିପାଟୀରେ ବି ପରିବର୍ତ୍ତନ ଆସିଛି । ସେମାନେ ଆଧୁନିକ ସମାଜ ସହ ଖାପଖାଇଲା ଭଳି ପୋଷାକ ପିନ୍ଧିଛନ୍ତି । ପରେ ଗାୟକ ମହାଶୟ କିରଣପୁରରେ ବିଶିଷ୍ଟ ଶିଳ୍ପପତି ଓ ନେତା ଆଉ ତାଙ୍କ ସହକର୍ମୀଙ୍କ ଲାଳସାର ଶିକାର ହୋଇ ମୃତ୍ୟୁବରଣ କରିଥିବା ନିରିମାଖୀ ମାଳତୀ ହତ୍ୟାକାଣ୍ଡକୁ ଗୀତଗାଇ ପରିବେଷଣ କରିଛନ୍ତି । ଏବଂ ଏହି ହତ୍ୟାକାଣ୍ଡକୁ ବହି ଛପାଇ ବିକ୍ରି ବି କରିଛନ୍ତି 'ମାଳତୀ ହତ୍ୟାକାଣ୍ଡ' ନାମକ ଏହି ବହିଟି ମାତ୍ର ଏକ ଟଙ୍କାରେ କିଣିବା ପାଇଁ ଗାୟକ ପ୍ରଚାର କରିଛନ୍ତି । ଏଥିସହ ସେ ଗୀତ ଗାଇବା ମଧ୍ୟ ଜାରିରଖିଛନ୍ତି ।

"ରାଜା ରାଜୁଡ଼ା ତ ଗଲେ ସଙ୍ଗାତରେ
ରାଜା ରାଜୁଡ଼ା ତ ଗଲେ
ଗଣତନ୍ତ୍ର ନାମେ ଆଉ ଦଳେ ରାଜା
ଶାସନ ଡୋରି ଧଇଲେ ।
ଦୁଃଖତ ମେଣ୍ଟିଲା ନାହିଁ ସଙ୍ଗାତରେ
ଦୁଃଖତ ମେଣ୍ଟିଲା ନାହିଁ

ଅଣ୍ଟିଛୁରୀ ଯଦି ତଣ୍ଟି କାଟିଦିଏ
କାହାକୁ କହିବି ଯାଇ ।”

ଏହି ଗୀତରେ ପ୍ରଥମ ଜୋନ୍‌ଟି ଅନ୍ଧକାରମୟ ହେବା ସହ ଦ୍ୱିତୀୟ ଜୋନ୍‌ରେ ଆଲୋକ ଆସିଛି ଓ ଏହି ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୋଇଛି । ନାଟକଟିରେ ପାଲା ପରି ଏକ ଲୋକଉପାଦାନର ସାହାଯ୍ୟ ନେବା ସହିତ ଲୋକପ୍ରିୟ ସଙ୍ଗୀତର ସାହାଯ୍ୟରେ ଶୋଷଣ-ଅରାଜକତାପୂର୍ଣ୍ଣ ଶାସନ ବ୍ୟବସ୍ଥାକୁ ନାଟ୍ୟକାର ଦର୍ଶାଇଛନ୍ତି । ଏହି ଷ୍ଟ୍ରିଟ୍ ସିଙ୍ଗରମାନଙ୍କ ସହାୟତାରେ ନାଟକର କାହାଣୀ ସହିତ ଦର୍ଶକମାନଙ୍କୁ ଏକାତ୍ମ କରିବାର ପ୍ରୟାସ ନାଟ୍ୟକାର କରିଛନ୍ତି ।

‘ଖୁଲଣା ସୁନ୍ଦରୀ’ର ମିଥ୍‌କୁ ଆଧାର କରି ରଚିତ ନାଟକ ‘ଶୋଣିତ ସ୍ୱାକ୍ଷର’ ମଧ୍ୟ ଦୁଇଟି ପର୍ଯ୍ୟାୟକୁ ନେଇ ଗତିଶୀଳ ହୋଇଛି । ପ୍ରଥମ ପର୍ଯ୍ୟାୟରେ ଖୁଲଣା ସୁନ୍ଦରୀ ମିଥ୍ ସହାୟତାରେ ରାଜକୀୟ ପରିବେଶର ଅବତାରଣା କରାଯାଇଥିବା ବେଳେ ଦ୍ୱିତୀୟ ପର୍ଯ୍ୟାୟରେ ଶିଳ୍ପପତିର ଶୋଷଣ ଓ ଶିଳ୍ପ ସମାଜର ଦୃଶ୍ୟପଟ୍ଟକୁ ଦର୍ଶାଇ ଦିଆଯାଇଛି । କୌଣସି ସେଟ୍ ବ୍ୟବହୃତ ହୋଇନଥିବା ମଞ୍ଚରେ ପ୍ରଥମ ପର୍ଯ୍ୟାୟରେ ନଟନଟୀ ପ୍ରଥମ ଜୋନ୍‌ରେ ଆସି ଦର୍ଶକଙ୍କୁ ଜୁହାର କରି ନିଜର ନୃତ୍ୟ-ସଂଗୀତ ପରିବେଷଣ କରିଛନ୍ତି । ଏହି ଛଳରେ ସେମାନେ ଖୁଲଣା ସୁନ୍ଦରୀ ପ୍ରସଙ୍ଗକୁ ଉପସ୍ଥାପନ କରିଛନ୍ତି ।

ନଟ : କଥାଏ କହିବି ନାଗରୀବର ଲୋ
କଥାଏ କହିବି ମୁହିଁ
କଥା ଶୁଣିଲେ ତୋ ବଥା ଚାଲିଯିବ
ପରାଣକୁ ଯିବ ଛୁଇଁ ।
ଖୁଲଣା ସୁନ୍ଦରୀ କଥା ସଜନୀ ଲୋ
ଖୁଲଣା ସୁନ୍ଦରୀ କଥା
କଥା ସଙ୍ଗେ ପୁଣି ଲଥା ଯୋଡୁଥିବି
ଆକାଶେ ଲାଗିବ ମଥା ।

ପରସ୍ପର କଥୋପକଥନ ଛଳରେ ନଟ-ନଟୀ ସଭାଜନଙ୍କ (ଦର୍ଶକଙ୍କ) ମନତୋଷ ପାଇଁ ନୃତ୍ୟ କରି ଖୁଲଣା ସୁନ୍ଦରୀ ପ୍ରସଙ୍ଗ ସହ ଦର୍ଶକକୁ ଯୋଡ଼ିବାର ଆଭାସ ଦେଇ ମଞ୍ଚରୁ ଅପସରି ଯିବା ପରେ ନାଟକ ଆରମ୍ଭ ହେଉଛି । ସେହିପରି ନାଟକର ମଧ୍ୟଭାଗରେ ଦର୍ଶକଙ୍କୁ ନାଟକର ଥିମ୍ ସହ ଆହୁରି ନିବିଡ଼ କରିଦେବାକୁ ଯାଇ ନଟ-ନଟୀ ମଝିରେ ମଝିରେ ମଞ୍ଚ ଉପରକୁ ଆସି କାହାଣୀର ଅବତାରଣା କରି ଦର୍ଶକଙ୍କ ଉତ୍କଣ୍ଠା ବଢ଼ାଇ ଚାଲିଛନ୍ତି । ନାଟକର ଦ୍ୱିତୀୟ ପର୍ଯ୍ୟାୟର ଆରମ୍ଭ ପରେ ନଟ-ନଟୀ ଶିଳ୍ପପତି ପ୍ରିୟଦର୍ଶକଙ୍କ ଶୋଷକ ମନୋବୃତ୍ତି

ସମ୍ପର୍କରେ ଦର୍ଶକଙ୍କୁ ଅବଗତ କରାଇଛନ୍ତି । ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାରେ ଟଙ୍କାଦ୍ୱାରା ସବୁକିଛି କ୍ରୟ କରିହୁଏ । ଏମାନେ ବିଦ୍ରୂପ କଣ୍ଠରେ ଗାଇଛନ୍ତି –

ନଟନଟୀ : ଟଙ୍କାର ପିଆରା ଜଗତଟା ସାରା
ସବୁ ଏଠି କିଣାବିକା
ଗରମ ନଥିଲେ ପକେଟ ତୁମର
ମରମେ ଆସଇ ଦକା
ହାଏ ଟଙ୍କା .... ହାଏ ଟଙ୍କା ... ହାଏଟଙ୍କା ।

ମୂଲ୍ୟବୋଧକୁ ଧୂଳିସାତ୍ କରି ସମାଜବ୍ୟବସ୍ଥାକୁ ବିଶୃଙ୍ଖଳିତ କରୁଥିବା ଘଟଣାଗୁଡ଼ିକ ସମ୍ପର୍କରେ ନଟ-ନଟୀ ବିଦ୍ରୂପାତ୍ମକ ଭାବେ ସୂଚନା ଦେଇ ମଞ୍ଚରୁ ଅପସରି ଯିବାପରେ କାହାଣୀ ପୂର୍ବ ପରି ଗତିଶୀଳ ହୋଇଛି । ନାଟକର ଶେଷଭାଗ ବେଳକୁ ଶ୍ରୀଧର ପ୍ରତୀକ୍ଷାରେ ଯେତେବେଳେ ସର୍ବହରା ଶ୍ରମିକଶ୍ରେଣୀ ଚାହିଁ ବସିଛନ୍ତି, ସେତେବେଳେ ନଟ-ନଟୀ ବ୍ୟଥିତ ସ୍ୱରରେ ଗାଇଛନ୍ତି –

ନଟ ଓ ନଟୀ : (ଉଭୟେ କାନ୍ଦଣା ସ୍ୱରରେ)
. ଆକୁଳେ ଖୋଜନ୍ତି ସର୍ବେ ଶ୍ରୀଧର ଶ୍ରୀଧର
ଫେଡ଼ଇ ହେ କଷଣ ଆମ ଫେଡ଼ ଦୁଃଖଭାର
ଦିନରାତି, ମାସ ବର୍ଷ ତୁମ ଅପେକ୍ଷାରେ
ବିତିଯାଏ ଲେପି ହୋଇ ଦୁଃଖ କାଳିମାରେ ।
ଆସ ହେ ଶ୍ରୀଧର ଆସ, ନୂତନ ସକାଳ
ଶୋଣିତ ସ୍ୱାକ୍ଷର ରଚ ହୋଇଲାଣି ବେଳ ।

ପ୍ରେ ନଟ-ନଟୀ, ଗୀତଗାଇ ମଞ୍ଚରୁ ଅପସରି ଯିବାପରେ ମଞ୍ଚର ଦ୍ୱିତୀୟ ଜୋନ୍‌ରେ ନାଟକର ଅନ୍ତିମ ଭାଗ ଅବତାରଣା କରାଯାଇଛି । ନାଟକର ଆବଶ୍ୟକତା ଅନୁଯାୟୀ ନଟନଟୀ ଏକାଧିକ ଥର ମଞ୍ଚକୁ ଆସି ନାଟକର କାହାଣୀ ସହ ଦର୍ଶକମାନଙ୍କୁ ଏକାତ୍ମ କରିଦେବାର ସଫଳ ପ୍ରୟାସ କରିଛନ୍ତି । ଲୋକ ଉପାଦାନ ସହ ଲୋକପ୍ରିୟ ଉପାଦାନର ପ୍ରୟୋଗ ରୀତି ଓଡ଼ିଆ ନାଟକରେ ପ୍ରଥମକରି ଯେପରି 'ଏଇ ଯେ ସୂର୍ଯ୍ୟ ଉଏଁ'ରେ ଦେଖା ଦେଇଥିଲା ତାହା ଆଲୋଚ୍ୟ ନାଟକରେ ଆହୁରି ସଂପ୍ରସାରିତ ହୋଇଛି ।

ବର୍ତ୍ତମାନ 'ପକା ପଇସା ଦେଖ୍ ତାମ୍‌ସା' ନାଟକ କଥା ବିଚାର କରାଯାଉ । ମୋଗଲ ତାମ୍‌ସା ପରି ଏକ ଫୋକ୍ ଏଲିମେଣ୍ଟର ଆଙ୍ଗିକ ନେଇ ନାଟ୍ୟକାର ଏହି ନାଟକରେ ଆମ ଚତୁଃପାର୍ଶ୍ୱରେ ଘଟି ଚାଲିଥିବା ସତ ସତିକା ତାମ୍‌ସାକୁ ଦର୍ଶାଇଛନ୍ତି । ସମାଜରେ ଚାଲିଥିବା ଠିକାଦାରୀ ବ୍ୟବସ୍ଥା, ସାଂସ୍କୃତିକ ଦଲାଲୀ, ବ୍ୟଭିଚାର, ରାଜନୀତିକ ନେତାମାନଙ୍କର ଶଠତାକୁ

ଏହି ମୋଗଲ ତାମ୍‌ସାର ଆଙ୍ଗିକରେ ଦୃଶ୍ୟାୟନ କରାଯାଇଛି । ନାଟକର ଆରମ୍ଭରେ ମଞ୍ଚରେ ଆଲୋକ ଆସିଲାବେଳକୁ ଯେ କୌଣସି ଶିବ ମନ୍ଦିର ସମ୍ମୁଖ ଭାଗରେ ସତରଞ୍ଜି ବିଛାଯାଇ ତାମ୍‌ସାର ପରିବେଷଣକୁ ଚିତ୍ରଣ କରାଯାଇଛି । ସଂଗୀତ ଆସରରେ ମୋଗଲ ଅମଳର ମିର୍ଜା ସାହେବ ମଞ୍ଚକୁ ଏକ ପାଲିଙ୍କି ବା ହାନ୍ଦୋଳାରେ ଆସି ପହଞ୍ଚିଛନ୍ତି ଏବଂ ନାଚଗୀତର ଆସରକୁ ଆହୁରି ରଙ୍ଗୀନ୍ କରିଛନ୍ତି । ଏହି ଆସରବାଲାଙ୍କ କଥାଭାଷାରେ ମୋଗଲ ତାମ୍‌ସାର ସଂଳାପରୀତିକୁ ସଂଯୋଜନା କରାଯାଇଛି । ଦର୍ଶକମାନେ ଦର୍ଶକ ଗ୍ୟାଲେରୀରେ କୋଳାହଳ କରିବା ସହ ଜଣେ ଦର୍ଶକ ମଞ୍ଚ ଉପରକୁ ଉଠିଯାଇ ଏହି ତାମ୍‌ସା ବନ୍ଦ କରିବାପାଇଁ କହିଛି କାରଣ ଲୋକ ନାଟକ ଦେଖିବାପାଇଁ କେହି ଆଗ୍ରହ ପ୍ରକାଶ କରୁନାହାଁନ୍ତି । ତେଣୁ ନିର୍ଦ୍ଦେଶଙ୍କୁ କୁହାଯାଇଛି ସାଂପ୍ରତିକ ସମସ୍ୟା ଆଧାରିତ କୌଣସି ନାଟକ ସେମାନେ କରନ୍ତୁ । ନିର୍ଦ୍ଦେଶକ ତାଙ୍କୁ ବୁଝାଇବାର ପ୍ରୟାସ କରିଛନ୍ତି । ପରେ ଆରମ୍ଭ ହୋଇଛି ଆଜିର ତାମ୍‌ସା ଆଧାରିତ ନାଟକ । ଦୁଇଟି ପୁଅଝିଅ ମଞ୍ଚକୁ ଆସି ଲୋକପ୍ରିୟ ସଂଗୀତ ଆଧାରିତ ଡୁଏଟ୍ ପରିବେଷଣ କରିଛନ୍ତି ।

ତାମ୍‌ସା ଚାଲିଛି ଦେଖିବ ଆସଗୋ
ଦେଖିବ ଆସ
ବଡ଼ କଉତୁକ ତାମ୍‌ସା ଏ'ତ
ହୁଏ ନା ଶେଷ ....
ଦେଖିବ ଆସ ।

ପଇସାରାଜ୍ ଭିତରେ ମଣିଷ ପଣିଆ, ମାନବୀୟ ମୂଲ୍ୟବୋଧ କିପରି ଭୁଷୁଡ଼ି ପଡୁଛି ତାକୁ ନାଟକରେ ନୃତ୍ୟ ଗୀତ ଓ କେତେକ ଲୋକପ୍ରିୟ ସଂଗୀତ ମାଧ୍ୟମରେ ଉପସ୍ଥାପନ କରାଇଛନ୍ତି । ଯେପରି -

ନାରୀ - ଆଲୋ ମଉସା ଜଡ଼ ପଇସା
ନଡ଼ିଆ ଗୋଟିକ କେତେ ପଇସା
ପୁରୁଷ - ଆଲୋ ମାଉସୀ କ'ଣ କରୁଛୁ ପିଣ୍ଡାରେ ବସି
ଖଇନି ପତର ପାଟିରେ ପକା
ପଇସା ନ ଥିଲେ ଆସିବ ଦକା ।

ଲୋକ ପ୍ରବାଦ, ଲୋକସଂଗୀତ ତାଳରେ ନାରୀ ପୁରୁଷ ନାଚିନାଚି ମଞ୍ଚରୁ ବିଦାୟ ଦେଇଛନ୍ତି । ସେମାନଙ୍କ ପରେ ମଞ୍ଚରେ ନାଟକର ପ୍ରକୃତ କାହାଣୀ ଅବତାରଣା କରାଯାଇଛି । ତେବେ ଏହି ତାମ୍‌ସା ଆସର ଓ ଲୋକପ୍ରିୟ ନୃତ୍ୟ ସଂଗୀତ ମାଧ୍ୟମରେ ନାଟ୍ୟକାର ସମାଜର ବ୍ୟଭିଚାର, ପଇସାରାଜ୍ ଓ ଠିକାଦାରୀ ବ୍ୟବସ୍ଥାର ଉଗ୍ରରୂପକୁ ଦର୍ଶକଙ୍କ ପାଖରେ

ପହଞ୍ଚାଇପାରିଛନ୍ତି । ଏହା ହେଉଛି ୧୯୮୦ ପରବର୍ତ୍ତୀ ଓଡ଼ିଆ ନାଟ୍ୟଧାରାର ନାଟ୍ୟକାର ଶତପଥୀ ଆଣିଥିବା ନୂତନତାର ସ୍ୱାକ୍ଷର ।

'ଦାର୍ଢ୍ୟତା ଭକ୍ତି'ର ବିଲ୍ୱମଙ୍ଗଳ ମିଥ୍‌କୁ ପୁନର୍ଗଠନ କରି ନାଟ୍ୟକାର ରଚନା କରିଥିବା 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକଟିରେ ଲୋକଉପାଦାନର ପ୍ରୟୋଗକୁ ବିଚାର କରାଯାଇପାରେ । ନାଟକର ଆରମ୍ଭରେ ମଞ୍ଚଟି ଦୁଇଗୋଟି ଭାଗରେ ବିଭକ୍ତ ହୋଇଛି । ମଞ୍ଚର ସମ୍ମୁଖ ଅଂଶ ତା'ର ପଛଭାଗଠାରୁ କିଛି ପରିମାଣରେ ଉଚ୍ଚା ହୋଇଛି । ମଞ୍ଚର ସମ୍ମୁଖ ଭାଗକୁ ଆଲୋକ ଆସିଲା ବେଳକୁ ଅନ୍ତରାଳରୁ ଲୋକପ୍ରିୟ ଗୀତିନାଟ୍ୟର ସ୍ୱର ଶୁଣାଯାଇଛି ଓ ପରେ ପରେ ନଟନଟୀ ଗୀତଗାଇ ନାଚିନାଚି ମଞ୍ଚକୁ ଆସିଛନ୍ତି । ପତର ସଉରା ନାଚର ଆଙ୍ଗିକ ମାଧ୍ୟମରେ ନଟନଟୀ ଇଷ୍ଟ ବନ୍ଦନା କରି ନୃତ୍ୟ ପରିବେଷଣ କରିଛନ୍ତି । ସେମାନେ କଥୋପକଥନ ଛଳରେ ନାଟକର ଉଦ୍ଦେଶ୍ୟ ସମ୍ପର୍କରେ ଦର୍ଶକମାନଙ୍କୁ ଅବଗତ କରାଇ ମଞ୍ଚରୁ ଅପସରି ଯାଇଛନ୍ତି । ପୁଣି ନାଟକରେ ଆବଶ୍ୟକତା ଅନୁଯାୟୀ ସେମାନେ ମଝିରେ ମଝିରେ ଆସି ନାଟକ ସହ ଦର୍ଶକମାନଙ୍କୁ ବାନ୍ଧି ରଖିବାର ପ୍ରୟାସ କରିଛନ୍ତି । ବିଶେଷ କରି ବିଲ୍ୱମଙ୍ଗଳ ଅନ୍ଧହୋଇ କୃଷ୍ଣଙ୍କୁ ଅନ୍ୱେଷଣ କଲାବେଳେ ନଟନଟୀ ଗୀତ ଓ ନୃତ୍ୟ ମାଧ୍ୟମରେ ଏହାର ଇଙ୍ଗିତ ଦେଇଛନ୍ତି ।

ନଟୀ : କାହିଁ ଜନପଦ କାହିଁ ସମୁଦ୍ରର କୂଳଲୋ
ସମୁଦ୍ରର କୂଳ ।
ହରି ହରି ବୋଲି ଡାକେ ହୋଇ ସେ ବିକଳ ଲୋ
ହୋଇ ସେ ବିକଳ ।
ନଟ : ଭକତମନ ଜାଣି ପ୍ରଭୁ ଦଇତାରୀ ହୋ
ପ୍ରଭୁ ଦଇତାରୀ
ପରମ ପୁରୁଷ ସିଞ୍ଚି ଦେଲେ କୃପା ବାରି ହୋ
ଦେଲେ କୃପା ବାରି ।

ନଟନଟୀ ଏହିଭଳି ମଝିରେ ମଝିରେ ମଞ୍ଚରେ ଉପସ୍ଥିତ ହୋଇ ଲୋକପ୍ରିୟ ସଂଗୀତ ନୃତ୍ୟ ମାଧ୍ୟମରେ କାହାଣୀ ସମ୍ପର୍କରେ ସୂଚନା ଦେବା ସହ ନାଟକୀୟ ଉତ୍କଣ୍ଠାକୁ ବଢ଼ାଇଛନ୍ତି ।

ଏ କଥା ସତ ଯେ ନାଟକରେ ଏହି ଲୋକ ଉପାଦାନର ବ୍ୟବହାର ନାଟକକୁ ପୂର୍ବପେକ୍ଷା ଅଧିକ ଦର୍ଶକ ଗ୍ରାହୀ କରିପାରିଛି । "ଲୋକନାଟ୍ୟର ଷ୍ଟାଇଲ୍ ଖୁବ୍ ଆକର୍ଷଣୀୟ ହୋଇଥିବା ଯୋଗୁ ସଂପ୍ରତିକ ନାଟକରେ ସୂତ୍ରଧର, ନିର୍ଦ୍ଦେଶକ କିମ୍ବା କୋରସ୍‌ର ବକ୍ତବ୍ୟରେ ଏହାକୁ ବ୍ୟବହାର କରିବା ସୁବିଧାଜନକ ହେଉଛି । ଏହା ଫଳରେ ଶୂନ୍ୟମଞ୍ଚ ଦୃଶ୍ୟ ମଞ୍ଚରେ ରୂପାୟିତ ହୋଇପାରିଛି ।" (ନାଟକରେ ଲୋକଉପାଦାନର ପ୍ରାସଙ୍ଗିକତା ଓ ସ୍ୱାଧୀନତା

ପରବର୍ତ୍ତୀ ଓଡ଼ିଆ ନାଟକର ଏହାର ପ୍ରୟୋଗ, ଡ. ବିଜୟ କୁମାର ଶତପଥୀ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା; (ସଂ. ପ୍ରଫେସର ବୈଷ୍ଣବ ଚରଣ ସାମଲ)

ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ବିଜୟ କୁମାର ଶତପଥୀ ନିଜ ନାଟକରେ କେବେ ପାରମ୍ପରିକ ଲୋକନୃତ୍ୟ ତ ଆଉ କେବେ ପାଲା ପୁଣି କୋରସ୍ ମାଧ୍ୟମରେ ନାଟକକୁ ପରିବେଷଣ କରିଛନ୍ତି । ଏହା ସହ ଲୋକପ୍ରିୟ କିଂବଦନ୍ତୀ, ଲୋକସଂଗୀତର ଶୈଳୀ ପ୍ରୟୋଗରେ ନାଟକକୁ ଦର୍ଶକଙ୍କ ପାଖରେ ପହଞ୍ଚାଇବାର ଉଦ୍ୟମ କରିଛନ୍ତି । ଲୋକ ଉପାଦାନର ବ୍ୟବହାର ଭିତରେ ନାଟ୍ୟକାର ଓଡ଼ିଆ ନାଟକର ପ୍ରାଣଶକ୍ତିକୁ ସବଳ କରିବା ସହିତ ଐତିହ୍ୟ-ପରମ୍ପରା କିଂବଦନ୍ତୀ ଓ ମୂଲ୍ୟବୋଧ ପ୍ରତି ଦର୍ଶକମାନଙ୍କୁ ଉନ୍ମୁଖ କରିଛନ୍ତି । ୧୯୮୦ ପରବର୍ତ୍ତୀ କାଳରେ ଓଡ଼ିଆ ନାଟକ କ୍ଷେତ୍ରରେ ଲୋକ ଉପାଦାନ ସହ ଲୋକପ୍ରିୟ ଉପାଦାନକୁ ମିଶାଇ ନାଟକର କାହାଣୀ ସହ ସଂଯୁକ୍ତ କରି ପ୍ରକାଶ କରିବା ମଧ୍ୟରେ ବିଜୟ କୁମାର ଶତପଥୀ ହେଉଛନ୍ତି ପ୍ରକୃତରେ ଅଗ୍ରଗଣ୍ୟ ନାଟ୍ୟକାର ।



# ବିଜୟ କୁମାର ଶତପଥୀଙ୍କ ନାଟକରେ ମାର୍କସ୍‌ବାଦୀ ଚିନ୍ତାଧାରା

ଦର୍ଶନ-ଅର୍ଥନୀତି-ସମାଜ ବିଜ୍ଞାନର ପୃଷ୍ଠଭୂମିକୁ ଆଶ୍ରୟ କରି ଗଢ଼ି ଉଠିଥିବା ମାର୍କସ୍‌ବାଦ ସମଗ୍ର ବିଶ୍ୱର ରାଜନୀତିକ ଓ ସାମାଜିକ ବ୍ୟବସ୍ଥାରେ ନୂତନ ଆଲୋଡ଼ନ ସୃଷ୍ଟି କରିଥିଲା । "ମାର୍କସ୍‌ବାଦ ହେଉଛି ଦର୍ଶନ, ରାଜନୀତି ଏବଂ ଅର୍ଥନୀତି କ୍ଷେତ୍ରରେ ଆତ୍ମପ୍ରକାଶ କରିଥିବା ଯୁଗାନ୍ତକାରୀ ଚିନ୍ତାଧାରାମାନଙ୍କର ଏକ ସାର୍ଥକ ସମନ୍ୱୟ । ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ଦର୍ଶନ, ରାଜନୈତିକ ଅର୍ଥନୀତି ଓ ବୈଜ୍ଞାନିକ ସମାଜବାଦ ଏକ ଅଖଣ୍ଡ ବିଶ୍ୱଦୃଷ୍ଟି କୋଣ ନେଇ ମାର୍କସ୍‌ବାଦରେ ରୂପାୟିତ ହୋଇଛି । ମାର୍କସ୍‌ବାଦର ପ୍ରବକ୍ତାମାନଙ୍କ ମତରେ ପୃଥିବୀରେ ଚଳିତ ଶତକର ସବୁ ଦାର୍ଶନିକ ସିଦ୍ଧାନ୍ତଗୁଡ଼ିକର ସର୍ବଶ୍ରେଷ୍ଠ ବିକାଶ ମାର୍କସ୍‌ବାଦରେ ହିଁ ପରିଲକ୍ଷିତ ହୋଇଥାଏ ।" (ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା, ଡ. ବିଜୟ କୁମାର ଶତପଥୀ, ପୃ.୫)

ମାର୍କସ୍‌ଙ୍କ ବିଭିନ୍ନ ଚିନ୍ତାଧାର ଯଥା; ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ, ଇତିହାସର ବସ୍ତୁବାଦୀ ଧାରଣା ଓ ଶ୍ରେଣୀହୀନ ସମାଜର ପରିକଳ୍ପନା ବିଶ୍ୱର ଚିନ୍ତାଜଗତରେ ବିପୁଳ ପରିବର୍ତ୍ତନ ଆଣିଥିଲା । ମାର୍କସ୍‌ଙ୍କ ମତରେ ସମାଜ ଆଦିମ କାଳରେ ଶ୍ରେଣୀହୀନ ଥିଲା । ମାତ୍ର ସଭ୍ୟତାର ଅଗ୍ରଗତି ସହିତ ମଣିଷର ଲୋଭ, ତା'ର ଲାଳସା ତାକୁ ଗୋଷ୍ଠୀ ଜୀବନଠାରୁ ଅଲଗା କରିରଖିଲା । ସେ ଅନ୍ୟକୁ କାର୍ଯ୍ୟରେ ନିୟୋଜିତ କରି ତା'ର ଶ୍ରମର ଫାଇଦା ନେବାକୁ ଚେଷ୍ଟା କଲା । ଏହି ପ୍ରକ୍ରିୟାରୁ ଶୋଷଣର ଯେଉଁ ଲେଲିହାନ ଶିଖା ଜନ୍ମନେଲା, ତାହା କ୍ରମେ ସମାଜକୁ ଦୁଇଟି ଭାଗରେ ବିଭକ୍ତ କରିଥିଲା; ଗୋଟିଏ ଖଟିଖିଆ ମେହେନତି ସାଧାରଣ ବର୍ଗ ଆଉ ଗୋଟିଏ ସେମାନଙ୍କ ଶ୍ରମର ଫାଇଦା ନେଉଥିବା ଶୋଷକ ଗୋଷ୍ଠୀ । ଏହି ଦୁଇ ଶ୍ରେଣୀ ଭିତରେ ଶୋଷକ ଗୋଷ୍ଠୀ ସବଳ ହେବା ସହ ସାଧାରଣ ମଣିଷ ତଥା ଖଟିଖିଆ ଶ୍ରମିକ ଓ ମୂଲିଆମାନେ ସର୍ବହରା ହୋଇ ସେମାନଙ୍କ ଶୋଷଣର ଶିକାର ହେଲେ । ଥିଲାବାଲାଙ୍କ ହାତକୁ କ୍ଷମତା ଆସିଗଲା ପରେ ଏମାନେ ସାଧାରଣ ବର୍ଗର ମଣିଷଙ୍କୁ ଧର୍ମର ଅଫିମ ନିଶାଦେଇ ଅଧିକରୁ ଅଧିକ ଶୋଷଣ କରିବାକୁ ଲାଗିଲେ । କ୍ରମେ ସମାଜ ଶୋଷକ ଓ ସର୍ବହରା ଗୋଷ୍ଠୀରେ ବିଭକ୍ତ ହେବାକୁ ଲାଗିଲା । ମାର୍କସ୍‌ବାଦୀ ଦର୍ଶନ ଶୋଷିତ ଗୋଷ୍ଠୀକୁ ତାର ଦାବି ଓ ଅଧିକାର ସଂପର୍କରେ ସଚେତନ କରାଇ ଶ୍ରେଣୀବିହୀନ ସମାଜ ଗଠନ କର ସର୍ବହରାର ଏକନାୟକତ୍ୱକୁ ପ୍ରତିଷ୍ଠା କରିବା ପାଇଁ ପ୍ରୟାସ ଜାରିରଖେ ।

ସୋଭିଏତ୍ ଋଷ୍‌ରେ ୧୯୧୭ ମସିହାରେ ସଂଘଟିତ କୃଷକ, ଶ୍ରମିକ ବିପ୍ଳବ ଫଳରେ ରାଜନୀତିକ ସାମାଜିକ ପ୍ରେକ୍ଷାପଟ୍ଟରେ ପରିବର୍ତ୍ତନ ଆସିବା ସହ ସାହିତ୍ୟ ଓ ସଂସ୍କୃତ କ୍ଷେତ୍ରରେ ପରିବର୍ତ୍ତନର ସୂତ୍ରପାତ ଘଟିଲା । ଫଳରେ ଚିନ୍ତାଜଗତରେ ସୃଷ୍ଟ ନୂତନ କ୍ରାନ୍ତି, ପ୍ରଗତିଶୀଳ ଚିନ୍ତା ଓ ଚେତନା ସହ ଭାରତୀୟମାନେ ପରିଚିତ ହୋଇପାରିଲେ । କ୍ରମେ ପ୍ରତ୍ୟେକ ପ୍ରାଦେଶିକ ସାହିତ୍ୟରେ ଏହାର ପ୍ରତିଫଳନ ଘଟିବାକୁ ଲାଗିଲା । ଓଡ଼ିଆ ସାହିତ୍ୟର ରାଜନୀତିକ, ସାମାଜିକ ପ୍ରେକ୍ଷାପଟ୍ଟରେ ମାର୍କସ୍‌ବାଦୀ ଦର୍ଶନର ଆତ୍ମପ୍ରକାଶ ଘଟିଲା । ଶ୍ରେଣୀହୀନ ସର୍ବହରାର ସ୍ୱର କ୍ରମେ ବଳିଷ୍ଠ ହେବା ସହ ତାହା ସାମନ୍ତବାଦର ପ୍ରାଚୀରକୁ ଦୋହଲାଇ ଦେଲା । ଓଡ଼ିଆ ସାହିତ୍ୟର ପରିଧିରେ ସବୁଜ ସାହିତ୍ୟଧାରାକୁ ଅସ୍ୱୀକାର କରି ସାମ୍ୟବାଦ, ଶ୍ରେଣୀହୀନ ସମାଜଗଠନର ପରିକଳ୍ପନା ଦେଇ ମାର୍କସ୍‌ବାଦୀ ଚିନ୍ତାଧାରା ନୂତନତାର ଆବାହନ ଆଣିଲା । ଫଳରେ କବିତା, ଗଳ୍ପ, ଉପନ୍ୟାସ, ନାଟକରେ ଏହାର ପ୍ରତିଫଳନ ଘଟିବାକୁ ଲାଗିଲା । ବିଶେଷ କରି ସ୍ୱାଧୀନତା ପରବର୍ତ୍ତୀ କାଳରେ ଯୁଦ୍ଧୋତ୍ତର ପୃଥିବୀର ଦୁରବସ୍ଥା, ପୁଞ୍ଜିବାଦର ଉତ୍‌ଥାନ, ରାଜନୀତିକ କାର୍ପେଟଦାରମାନଙ୍କର ଶୋଷକ ମନୋବୃତ୍ତି ଗୋଟିଏ ମୁଷ୍ଟିମେୟ ଗୋଷ୍ଠୀ ସୃଷ୍ଟିକଲା । ଆଉ ଗୋଟେ ପଟେ ନିରକ୍ଷର ଖଟିଖିଆ, ସର୍ବହରାମାନଙ୍କର ଗୋଷ୍ଠୀ ସୃଷ୍ଟି ହେଲା । ଶ୍ରମିକମାନେ ନିଜର ଶ୍ରମ ଦେଇ ପୁଞ୍ଜିବାଦର ଥଳିକୁ ସମୃଦ୍ଧ କରନ୍ତି । କିନ୍ତୁ ନିଜର ହକ୍‌ଦାବି, ସାଧାରଣ ସୁବିଧା ପାଇଁ ଏଇ ସର୍ବହରା ଗୋଷ୍ଠୀ ପୁଞ୍ଜିପତିମାନଙ୍କ ପାଖରେ ଯେତେବେଳେ ଗୁହାରି କରେ, ସେତେବେଳେ ସହାୟତା ବଦଳରେ ସେ ଲାଞ୍ଛନା, ନିର୍ଯ୍ୟାତନା ହିଁ ପାଏ । ଆଉ କେବେ ସର୍ବହରାର ଆନ୍ଦୋଳନ, ବିକ୍ଷୋଭ ପୁଞ୍ଜିପତିର ଚକ୍ରାନ୍ତ ଭିତରେ ଧୂଳିସାତ୍ ହୋଇଛି । ଥିଲାବାଲା ଓ ନଥିଲାବାଲାର ଏହି ଶ୍ରେଣୀ ସଂଘର୍ଷକୁ ଓଡ଼ିଆ ନାଟ୍ୟକାରମାନେ ନାଟକରେ ଦର୍ଶାଇବା ସହ ମାର୍କସ୍‌ଙ୍କ ଦର୍ଶନକୁ ନିଜ ଶିଳ୍ପଚାତୁରୀରେ ଉପସ୍ଥାପନ କରିଛନ୍ତି । ଏହି ଦୃଷ୍ଟିରୁ କାଳୀଚରଣ, ଅନନ୍ତ ପଟ୍ଟନାୟକ, ମନୋରଂଜନ ଦାସ, ବିଜୟ ମିଶ୍ର, ରମେଶ ପ୍ରସାଦ ପାଣିଗ୍ରାହୀ, କାର୍ତ୍ତିକ ରଥ ପ୍ରଭୃତି ନାଟ୍ୟକାରଙ୍କ ପରେ ନାଟ୍ୟକାର ବିଜୟ କୁମାର ଶତପଥୀ ମାର୍କସ୍‌ବାଦୀ ଚିନ୍ତାଧାରକୁ ନେଇ ଓଡ଼ିଆ ନାଟକରେ ନୂତନ ପର୍ବର ଆରମ୍ଭ କରିଛନ୍ତି । ତାଙ୍କର ପ୍ରୟୋଗରୀତି ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର । ମାର୍କ୍ସବାଦୀ ଚେତନା ଆଧାରିତ ତାଙ୍କ ନାଟକର କାହାଣୀ ଲମ୍ବିଆସିଛି ଶ୍ରେଣୀ ସଂଘର୍ଷ, ଟ୍ରେଡ୍‌ୟୁନିଅନ୍ ଧର୍ମଘଟ, ବିସ୍ଥାପନ ଆଦି ଘଟଣାର ଘନଘଟା ମଧ୍ୟ ଦେଇ ।

ନାଟ୍ୟକାର ବିଜୟ କୁମାର ଶତପଥୀ ମାର୍କସ୍‌ବାଦ ସଂପର୍କରେ ଗବେଷଣା କରିଛନ୍ତି । ଏହି ଅନୁସନ୍ଧାନ ନିଶ୍ଚିତ ଭାବେ ତାଙ୍କୁ ଯେ ମାର୍କସ୍‌ବାଦୀ ବିଚାରଧାରାକୁ ନେଇ ନାଟକ ରଚନା କରିବାରେ ଅନୁପ୍ରାଣିତ କରିଥିବ ଏଥିରେ ସନ୍ଦେହ ନାହିଁ । ତାଙ୍କ ରଚିତ 'କଂସର ଆତ୍ମା', 'ଏଇ ଯେ ସୂର୍ଯ୍ୟ ଉଏଁ', 'କର୍ଣ୍ଣ' ଓ 'ଶୋଣିତ ସ୍ୱାକ୍ଷର' ନାଟକରେ ମାର୍କସ୍‌ବାଦୀ

ଚିନ୍ତାଧାରା ପ୍ରତିଫଳିତ ହୋଇଛି । ଏ ସବୁ ନାଟକ ଭିତରେ ସର୍ବହରା ମଣିଷ ସାମନ୍ତବାଦ/ପୁଞ୍ଜିବାଦ ବିରୋଧରେ ସ୍ୱର ଉତ୍ତୋଳନ କରି ତା'ର ସାମର୍ଥ୍ୟ ଓ ଦାବିକୁ ଉପସ୍ଥାପନ କରିବାରେ ସଫଳ ହୋଇଛି । ବର୍ତ୍ତମାନ ପର୍ଯ୍ୟାୟ କ୍ରମେ ଏଇ ଚାରୋଟି ନାଟକ ମଧ୍ୟରେ ଥିବା ମାର୍କସ୍‌ବାଦୀ ଚିନ୍ତାଧାରା ସମ୍ପର୍କରେ ଆଲୋଚନା କରାଯାଇପାରେ ।

ବିଜୟ କୁମାର ଶତପଥୀଙ୍କ 'କଂସର ଆତ୍ମା' ମୁକ୍ତଧାରାରେ ରଚିତ ଏକ ପରୀକ୍ଷାମୂଳକ ନାଟକ । ନାଟକର ଶୋଷଣ, ଅତ୍ୟାଚାରର ପ୍ରତୀକ ଭାବେ କଂସକୁ ଉପସ୍ଥାପନ କରାଯାଇଛି । ନାଟକଟିକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ଏକ ପୌରାଣିକ ପୃଷ୍ଠଭୂମି ରହିଥିବା ବେଳେ ଦ୍ୱିତୀୟଟିରେ ଆଧୁନିକ ଶିଳ୍ପାଞ୍ଚଳର ପୃଷ୍ଠଭୂମି ରହିଛି । ନାଟକର ପ୍ରଥମ ପର୍ଯ୍ୟାୟରେ ଅତ୍ୟାଚାରୀ ରାଜା ଅନ୍ଧକ ଭିତରେ କଂସର ଶୋଷକସତ୍ତାକୁ ଦର୍ଶାଇ ଦିଆଯାଇଛି । ଦ୍ୱିତୀୟ ପର୍ଯ୍ୟାୟରେ ରାଜା ଅନ୍ଧକ ରୂପାନ୍ତରିତ ହୋଇଛନ୍ତି ଶିଳ୍ପପତି ଅନ୍ଧଲୋଚନ ନାମରେ । ରାଜକୀୟ ପଟ୍ଟଭୂମିଟି ଆଧୁନିକ ଶିଳ୍ପାଞ୍ଚଳରେ ପରିବର୍ତ୍ତିତ ହୋଇଛି । ଏଥି ସହିତ ପ୍ରଥମ ପର୍ଯ୍ୟାୟର ଐତିହାସିକ, ରାଜକୀୟ ଚରିତ୍ରଗଣ ଦ୍ୱିତୀୟ ପର୍ଯ୍ୟାୟରେ ଆଧୁନିକ ସମାଜର ପରିଧିକୁ ଓହ୍ଲାଇ ଆସିଛନ୍ତି । ମଦାନ୍ଧ, ସ୍ୱଚ୍ଛଳ, କ୍ଷମତାପ୍ରାଣ ମୁଷ୍ଟିମେୟ ବ୍ୟକ୍ତି କିପରି ଅସହାୟ, ସର୍ବହରା ଗରିବଙ୍କ ଉପରେ ଅତ୍ୟାଚାର କରନ୍ତି ଓ ସର୍ବହରାର ପ୍ରତିବାଦ ଓ ପ୍ରତିକ୍ରିୟା କିପରି ସଂଗଠିତ ଆନ୍ଦୋଳନର ରୂପନିଏ ତାରି ଚିତ୍ରକୁ ଦ୍ୱିତୀୟ ପର୍ଯ୍ୟାୟରେ ନାଟ୍ୟକାର ପରିବେଷଣ କରିଛନ୍ତି । ଶିଳ୍ପପତି ଅନ୍ଧଲୋଚନଙ୍କ ସହ ପଦସ୍ଥ କର୍ମଚାରୀ ଏପରିକି ଉଚ୍ଚପଦସ୍ଥ ସରକାରୀ ଅଫିସର୍ ବି ସାମିଲ୍ ହୋଇ ଦୁର୍ନୀତି ଓ ଅନ୍ୟାୟରେ ତାଙ୍କୁ ସହଯୋଗ କରିଛନ୍ତି । ଅନ୍ୟ ପକ୍ଷରେ ଯେଉଁ ଶ୍ରମିକମାନେ ନିଜର ପରିଶ୍ରମ ଦ୍ୱାରା ତାଙ୍କର ଶିଳ୍ପପତିର ପୁଞ୍ଜିକୁ ବୃଦ୍ଧି କରିଛନ୍ତି, ସେମାନଙ୍କ ପ୍ରତି ଅନ୍ଧଲୋଚନ କଠୋର ବ୍ୟବହାର କରିଛନ୍ତି । ଶ୍ରମିକମାନେ ନିଜର ନ୍ୟାଯ୍ୟଦାବି ପାଇଁ ଶୋଷକ ପୁଞ୍ଜିପତି ବିରୋଧରେ ଏକଜୁଟ୍ ହେଲାବେଳେ ଅନ୍ଧଲୋଚନଙ୍କ ଷଡଯନ୍ତ୍ରରେ ତାହା ବିଫଳ ହୋଇଛି । ସତ୍ୟବ୍ରତ ଓ ଧର୍ମପାଳଙ୍କ ପରି ସର୍ବହରାର ପ୍ରତିନିଧି ବିନା ଦୋଷରେ ଜେଲ୍ ଯାଇଛନ୍ତି । ଫଳରେ ସର୍ବହରାର ଦାବି ହଜିଯାଇଛି । ଥମିଯାଇଛି ଶ୍ରେଣୀ ସଂଘର୍ଷର ସ୍ୱର । "ପୁରାଣ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ପ୍ରତି ସ୍ତରରେ ନୀତିହୀନ, ଭ୍ରଷ୍ଟାଚାରୀ ଉତ୍ପୀଡ଼କ ବ୍ୟକ୍ତିଗଣ କିଭଳି ଧନ ଓ କ୍ଷମତା ବଳରେ ସାଧାରଣ ଜନତାକୁ ଶୋଷଣ କରି ଆସିଛନ୍ତି ଏବଂ ଶୋଷଣ ଅତ୍ୟାଚାରର ଗୋଟିଏ ସାମ୍ରାଜ୍ୟକୁ ଧ୍ୱଂସ କରି ସାଧାରଣ ଜନତା ଦୀର୍ଘଶ୍ୱାସ ନେଲାବେଳେ ପୁଣି ଗୋଟିଏ ନୀତିହୀନ ସାମ୍ରାଜ୍ୟ କିଭଳି ଭିନ୍ନ ରୂପରେ ମୁଣ୍ଡ ଟେକୁଛି; ତା'ର ଏକ ନିଖୁଣ ଚିତ୍ର 'କଂସର ଆତ୍ମା' ବହନ କରିଛି ।" (ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା, ପୃ.୫୭୧)

ପୁରାଣ ଯୁଗର କଂସ, ଇତିହାସର ରାଜା ଅନ୍ଧକ କିମ୍ବା ଆଧୁନିକ ଗଣତନ୍ତ୍ର ଶାସନର ଶିଳ୍ପପତି ଅନ୍ଧଲୋଚନ ଏମାନେ ନାମରେ, ପରିପାଟୀରେ ଭିନ୍ନ ହୋଇପାରନ୍ତି; ମାତ୍ର ସମସ୍ତେ

ଶୋଷଣ, ଭ୍ରଷ୍ଟାଚାରର ଜ୍ୱଳନ୍ତ ଉଦାହରଣ । ପୁରାଣର କଂସ ମିଥ୍ ସହ ଆଧୁନିକ ସମାଜର ଶ୍ରେଣୀ ସଂଘର୍ଷକୁ ନାଟ୍ୟକାର ଏକତ୍ର ସଂଯୁକ୍ତ କରି ମାର୍କସ୍‌ବାଦୀ ଚିନ୍ତାଧାରାକୁ ବ୍ୟାପକ କରିପାରିଛନ୍ତି ।

ନାଟ୍ୟକାରଙ୍କ ଅନ୍ୟତମ ନାଟକ 'ଏଇ ଯେ ସୂର୍ଯ୍ୟ ଉଏଁ'ରେ ସୂର୍ଯ୍ୟର ଉଦୟ ଅନ୍ଧାର ବିପକ୍ଷରେ ଏକ ପ୍ରତିବାଦ ଭାବେ ବିବେଚିତ ହୋଇଛି । ନାଟକଟି ଦୁଇଟି ପର୍ଯ୍ୟାୟଭୁକ୍ତ ହୋଇ ଗଢ଼ିଉଠିଛି । ପ୍ରଥମ ପର୍ଯ୍ୟାୟରେ ରାଜା ରାଜୁଡ଼ା ସମୟର ପୃଷ୍ଠଭୂମି ଥିବାବେଳେ ଦ୍ୱିତୀୟଟିରେ ଶିଳ୍ପପତି ଶ୍ରମିକର ସଂଘର୍ଷ ଜନିତ ପୃଷ୍ଠଭୂମିର ଅବତାରଣା କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ରାଜା ବୀରାଦିତ୍ୟଙ୍କ କୁଶାସନ ବିରୋଧରେ ସ୍ୱର ଉତ୍ତୋଳନ କରିଥିବା କବି ଶ୍ରୀକଣ୍ଠ ନିଜର ପ୍ରାଣବଳି ଦେଇଛି ଏବଂ ବିଦ୍ରୋହୀ ନେତା ସାଧୁଚରଣ ବୀରାଦିତ୍ୟଙ୍କୁ ପ୍ରଜା ବିଦ୍ରୋହ ଦ୍ୱାରା ଗାଦିଚ୍ୟୁତ କରିବାରେ ସମର୍ଥ ହୋଇଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ଘଟଣା ଓ ଚରିତ୍ରର ରୂପାନ୍ତର ଘଟିଛି । ରାଜା ବୀରାଦିତ୍ୟ ଆଧୁନିକ ସମାଜର ଶିଳ୍ପପତି ଆଦିତ୍ୟ ପ୍ରତାପ ଭାବେ ପରିଚିତ ହୋଇଥିବାବେଳେ ଅନ୍ୟାନ୍ୟ ପାରିଷଦ ବୃନ୍ଦ ଯଥାକ୍ରମେ ଆଦିତ୍ୟ ପ୍ରତାପଙ୍କ ଏକାନ୍ତ ଅନୁଗତ ଭାବେ ଉପସ୍ଥାପିତ ହୋଇଛନ୍ତି । ଶ୍ରମିକମାନଙ୍କ ସ୍ୱାର୍ଥ ପାଇଁ ଲଢୁଥିବା ଶ୍ରମିକ ନେତା କଣ୍ଠଦାସ ଶିଳ୍ପପତି ଆଦିତ୍ୟଙ୍କ ରୋଷର ଶିକାର ହେବା ସହ ବିନା ଦୋଷରେ ଜେଲ୍‌କୁ ଯାଇଛି । ନାଟକର ପ୍ରଥମ ପର୍ଯ୍ୟାୟରେ ପାଲାର ଆଙ୍ଗିକରେ ରାଜା ବୀରାଦିତ୍ୟଙ୍କ କୁଶାସନର ସୂଚନା ଦିଆଯାଇଥିବା ବେଳେ ଦ୍ୱିତୀୟ ପର୍ଯ୍ୟାୟରେ ଷ୍ଟ୍ରିଟ୍ ସିଙ୍ଗରମାନଙ୍କ ମାଧ୍ୟମରେ କିରଣପୁରର ଶିଳ୍ପପତି ଆଦିତ୍ୟ ପ୍ରତାପଙ୍କ ଅତ୍ୟାଚାର ଶିକାର ହୋଇ ଜେଲ୍‌ଦଣ୍ଡ ଭୋଗୁଥିବା କଣ୍ଠଦାସ ଓ ଆଦିତ୍ୟଙ୍କ ପାଶବିକ ଲାଳସା ଯୋଗୁ କଣ୍ଠଦାସର ପତ୍ନୀ ମାଳତୀ ଆତ୍ମହତ୍ୟା କରିବା ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ନାଟକର ଉଭୟ ପର୍ଯ୍ୟାୟରେ ଅନ୍ୟାୟ ଓ ଅତ୍ୟାଚାରର ବିରୋଧରେ ସାଧାରଣ ମଣିଷର ପ୍ରତିବାଦରେ ସ୍ୱର ଶୁଣିବାକୁ ମିଳିଛି । ଆଦିତ୍ୟ ପ୍ରତାପର ରାଜ୍‌କୁ ସମାପ୍ତ କରିବାକୁ ଜେଲ୍ ଡେଇଁ ଆସିଥିବା କଣ୍ଠଦାସ ପୋଲିସ୍ ଗୁଳିରେ ମରିବା ସହ ସ୍ୱପ୍ନିତ ବିପ୍ଳବୀର ମୃତ୍ୟୁ ଘଟିଛି । "ଏଇ ନାଟକର ବିରୋଧାଭାସ ଭିତରୁ ଗୋଟିଏ ସତ୍ୟର ଅଙ୍କୁରୋଦ୍‌ଗମ ଘଟୁଛି । ଶୋଷଣ, ସଂଗ୍ରାମ ଏବଂ ନ୍ୟାୟ / ଅନ୍ୟାୟର ଡାୟାଲେକ୍‌ଟିକ୍‌ସ ଭିତରେ ତିଆରି ହେଉଛି ଆଉ ଏକ ସୂର୍ଯ୍ୟ ଉଦୟ ମୁହୂର୍ତ୍ତ । କିନ୍ତୁ ବୀରଦିତ୍ୟଙ୍କ ପତନ ଯେପରି ସ୍ୱଷ୍ଟ ଆଦିତ୍ୟ ପ୍ରତାପଙ୍କ ବିଜୟ ସେପରି ଅସ୍ୱଷ୍ଟ । ତାଙ୍କରି ବିଜୟ ଭିତରେ ଶୋଷଣର ଇତିହାସ ଲମ୍ବି ଆସୁଛି ବର୍ତ୍ତମାନ କାଳର ଚୌହଦୀ ଆର ପାରିକୁ ।" (ଝଙ୍କାର, ଡ଼ିସେମ୍ବର, ୧୯୯୦, ଡ. ରମେଶ ପ୍ରସାଦ ପାଣିଗ୍ରାହୀ)

ନାଟକର ପରିଣତିରେ କଣ୍ଠଦାସ ମୃତ୍ୟୁବରଣ କରିଥିଲେ ବି ତା'ର ବଳିଦାନ, ଆହ୍ୱାନ ଭିତରେ ସର୍ବହରାର ଶାଣିତ ସ୍ୱର ଶୁଣିବାକୁ ମିଳିଛି । ଏ ପରାଜୟ ନାୟକର ନୁହେଁ, ସର୍ବହରା ସମୂହର, ତଥାପି ଏଇ ସାମାଜିକ ଦୁଃଖ ଭିତରେ ନୂତନ ସୂର୍ଯ୍ୟ ଉଦୟର ସମ୍ଭାବନାକୁ ନାଟ୍ୟକାର ଦର୍ଶାଇଛନ୍ତି ।

ନାଟ୍ୟକାରଙ୍କ ଅନ୍ୟତମ ମିଥିକ୍ ନାଟକ 'କର୍ଣ୍ଣ'ରେ ପୁରାଣର କର୍ଣ୍ଣ ଚରିତ୍ରକୁ କେବଳ ନିର୍ଯ୍ୟାତିତ ସର୍ବହରା, ସାଧାରଣ ମଣିଷର ପ୍ରତୀକ ଭାବେ ଉପସ୍ଥାପନ କରାଯାଇନାହିଁ, ବରଂ ତା' ଭିତରେ ସର୍ବହରା ଶ୍ରମିକର ପ୍ରତିନିଧି ରୂପଟିକୁ ଦର୍ଶାଇ ଦିଆଯାଇଛି । ପୁରାଣର କର୍ଣ୍ଣ ପରି ଆଧୁନିକ ସମାଜର କର୍ଣ୍ଣ-ସୂର୍ଯ୍ୟ ପ୍ରକାଶ ବି ନିଜର ଆଭିଜାତ୍ୟ ନ ଥିବାରୁ ସର୍ବଦା ଶିଳ୍ପପତି ପାର୍ଥ ଓ ବିଧାୟକ କେଶବ ଦାସଙ୍କ ବିଦ୍ରୂପର ଶିକାର ହୋଇଛି । ନିଜର ସ୍ୱାଧୀନ ଚିନ୍ତା ଓ ପ୍ରଗତିଶୀଳ ମାନସିକତା ପାଇଁ ସୂର୍ଯ୍ୟ ପ୍ରକାଶ ଶିଳ୍ପପତି ପାର୍ଥଙ୍କ ପାଖରେ ଚାକିରୀ ଖଣ୍ଡେ ପାଇବାକୁ ସଫଳ ହୋଇପାରିନାହିଁ । ପିତୃ-ମାତୃ ପରିଚୟହୀନ ସୂର୍ଯ୍ୟପ୍ରକାଶ ନିଜର ପରିଚୟ ଖୋଜିବାକୁ ଯାଇ ବାରମ୍ବାର ଲାଞ୍ଛିତ ହୋଇଛି । ପାର୍ଥର ମାଆ କୁନ୍ତୀ ଯେତେବେଳେ ତାକୁ ନିଜର ପୁତ୍ର ବୋଲି ସ୍ୱୀକାର କରିଛନ୍ତି ସେତେବେଳେ ସୂର୍ଯ୍ୟପ୍ରକାଶ ଏହାକୁ ପ୍ରତ୍ୟାଖ୍ୟାନ କରିଛି । ଶିଳ୍ପପତି ପାର୍ଥଙ୍କ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରୁଥିବା ଶ୍ରମିକମାନଙ୍କୁ ସୂର୍ଯ୍ୟପ୍ରକାଶ ଓ ତା'ର ବନ୍ଧୁ ଦୁର୍ଯ୍ୟୋଧନ ସମର୍ଥନ କରି ସର୍ବହରାର ସୁଖ ଦୁଃଖରେ ନିଜକୁ ସାମିଲ୍ କରିବା ସହିତ ପୁଞ୍ଜିବାଦ ବିପକ୍ଷରେ ନିଜର ଦାବି ଉପସ୍ଥାପନ କରିଛନ୍ତି । କିନ୍ତୁ ପରିଶେଷରେ ପାର୍ଥଙ୍କ ଗୁଳିରେ ସୂର୍ଯ୍ୟପ୍ରକାଶ ମୃତ୍ୟୁବରଣ କରିଛି । କୁନ୍ତୀ ନିଜର ପୁତ୍ରକୁ ତା'ର ପରିଚୟ ଦେବା ପାଇଁ ପ୍ରୟାସ କଲାବେଳେ ସୂର୍ଯ୍ୟପ୍ରକାଶ ତାଙ୍କଠାରୁ ବହୁତ ଦୂରକୁ ଚାଲିଯାଇଛି । ଏଇ ନାଟକର ନିର୍ଯ୍ୟାତିତ-ଉପେକ୍ଷିତ ସାଧାରଣ ମଣିଷର ପ୍ରତିନିଧି ଭାବେ କର୍ଣ୍ଣ ଚରିତ୍ର ଆଧୁନିକ ସୂର୍ଯ୍ୟ ପ୍ରକାଶରେ ପରିବର୍ତ୍ତିତ ହୋଇଛି । ପୁଣି ଆଧୁନିକ କର୍ଣ୍ଣ ସୂର୍ଯ୍ୟପ୍ରକାଶ ଭିତରେ ମାର୍କସ୍‌ବାଦୀ ଚିନ୍ତାଧାରର ଉଦ୍ରେକ କରି ନାଟ୍ୟକାର ଶ୍ରେଣୀ ସଂଘର୍ଷର ସ୍ୱରକୁ ଆହୁରି ତୀବ୍ର ଓ ବାସ୍ତବଧର୍ମୀ କରି ଗଢ଼ିତୋଳିଛନ୍ତି ।

ସେହିପରି ନାଟକ 'ଶୋଣିତ ସ୍ୱାକ୍ଷର'ରେ ନାଟ୍ୟକାର ଖୁଲଣାସୁନ୍ଦରୀ / ନିଶା ମଙ୍ଗଳବାର ମିଥିକୁ ନେଇ ଦୁଇଟି ପର୍ଯ୍ୟାୟରେ ନାଟକକୁ ଉପସ୍ଥାପନ କରିଛନ୍ତି । ନାଟକର ପ୍ରଥମ ପର୍ଯ୍ୟାୟରେ ଶ୍ରୀଧର ରାଜା ସୁଦର୍ଶନଙ୍କ ଅରାଜକତାର ଅବସାନ ଘଟାଇ ମୁକ୍ତିର ବାର୍ତ୍ତା ଆଣିଛି । ଦ୍ୱିତୀୟ ପର୍ଯ୍ୟାୟଟି ଶ୍ରୀଧର ଆସିବାର ପ୍ରତୀକ୍ଷା ମଧ୍ୟଦେଇ ଗତିଶୀଳ ହୋଇଛି । ନାଟକର ପ୍ରଥମ ପର୍ଯ୍ୟାୟରେ ରହିଛି ରାଜା ସୁଦର୍ଶନ ଓ ଖୁଲଣା ସୁନ୍ଦରୀ କାହାଣୀର ଉପସ୍ଥାପନ । ଦ୍ୱିତୀୟ ପର୍ଯ୍ୟାୟରେ ଶିଳ୍ପପତି ପ୍ରିୟଦର୍ଶନରେ ପରିବର୍ତ୍ତିତ ହୋଇଛନ୍ତି । ଶିଳ୍ପପତି ପ୍ରିୟଦର୍ଶନ ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ କରିଥିବା ଧନଞ୍ଜୟ, ତା'ର ପୁଅ ଶ୍ରୀଧର, ଶ୍ରମିକ ସଂଗଠନର ନେତା ଚିତ୍ରାନନ୍ଦ ଓ ତା'ର ପତ୍ନୀ ଚନ୍ଦ୍ରିକା ପୁଞ୍ଜିପତିର ଷଡ଼ଯନ୍ତ୍ରରେ କବଳିତ ହୋଇ ବିଦ୍ରୋହ କରିବାରେ ବିଫଳ ହୋଇଛନ୍ତି । ଶ୍ରୀଧର ପ୍ରିୟଦର୍ଶନଙ୍କ ଚକ୍ରାନ୍ତର ଶିକାର ହୋଇ ମୃତ୍ୟୁବରଣ କରିଥିଲେବି ତା'ର ବାପା ଧନଞ୍ଜୟ ଓ ଅନ୍ୟ ଶ୍ରମିକମାନେ ତା'ର ଆସିବା ପଥକୁ ଚାହିଁରହିଛନ୍ତି । ଶ୍ରୀଧରର ବିପର୍ଯ୍ୟୟ ସହ ସମୂହ ସ୍ୱାର୍ଥର ପରାଜୟ ଘଟିଛି,

ଯାହା ନିମନ୍ତ୍ରଣ କରି ଆଣିଛି ସୋସିଆଲ ଟ୍ରାଜେଡ଼ିକୁ । ଶ୍ରୀଧରର ପ୍ରତୀକ୍ଷାରେ ନାଟକର ଯବନିକା ପଡ଼ିଛି । "ନାଟକର ପ୍ରଥମ ପର୍ଯ୍ୟାୟରେ ଶ୍ରୀଧର ଏକ ପରିବର୍ତ୍ତିତ ମୂଲ୍ୟବୋଧ ଆଣିଛି । କିନ୍ତୁ ସେଇ ପରିବର୍ତ୍ତିତ ମୂଲ୍ୟବୋଧ ପରେ ଯେଉଁ ପଚମାନ ଅପସଂସ୍କୃତି ଓ ଭ୍ରଷ୍ଟାଚାରର ଶିକାର ହୋଇଛି ସେଥିରେ ଶ୍ରୀଧର ବଡ଼ କରୁଣ ଭାବରେ ମୃତ୍ୟୁବରଣ କରିଛି । କିନ୍ତୁ ସମସ୍ତେ ଚାହିଁଛନ୍ତି କେବେ ଆସବ ଶ୍ରୀଧର ? ତା' ଆସିବାର ଇଙ୍ଗିତ ମଧ୍ୟରେ ସଂଗଠିତ ଅସହାୟ ଜନତାର ଶକ୍ତି ଯେପରି ଜାଗ୍ରତ ହୋଇଛି । ତେଣୁ ପ୍ରଥମ ପ୍ରର୍ଯ୍ୟାୟ ପରେ ଶ୍ରୀଧରକୁ ଆଉ ମଞ୍ଚକୁ ଆଣିବାର ଆବଶ୍ୟକତା ପଡ଼ିନାହିଁ ।" (ମୁଖଶାଳା - ଶୋଣିତ ସ୍ୱାକ୍ଷର) ଖୁଲଣା ସୁନ୍ଦରୀର ଶ୍ରୀଧର ଆଉ ପୁରାଣର ଚରିତ୍ର ହୋଇନାହିଁ, ବରଂ ତା' ଭିତରେ ଶ୍ରେଣୀହୀନ ସମାଜ ପରିକଳ୍ପନାର ଚିନ୍ତାଧାରା ଭରିରହିଛି । ଯାହାକୁ ନାଟ୍ୟକାର ଏ ନାଟକରେ ପ୍ରତିପାଦନ କରିଛନ୍ତି ।

ମାର୍କସ୍‌ବାଦୀ ଚିନ୍ତାଧାରାକୁ ନେଇ ବିଜୟ କୁମାର ଶତପଥୀ ନିଜ ନାଟକରେ ପରୀକ୍ଷା-ନିରୀକ୍ଷା କରି ଯଥେଷ୍ଟ ସଫଳତା ପାଇଛନ୍ତି । ଭାରତ ପରି ମଧ୍ୟମପନ୍ଥୀ ସୁବିଧାବାଦର ଦେଶରେ ମାର୍କସ୍‌ବାଦ ଭାଙ୍ଗି ଯାଇଥିବାବେଳେ ତାହାର ପ୍ରତିଫଳନ ଏହି ନାଟକମାନଙ୍କରେ କଳାଶକ୍ତି ମଣ୍ଡିତ ହୋଇ ରୂପପାଇଛି । ସ୍ୱାଧୀନତା ପରବର୍ତ୍ତୀ ଭାରତ ବର୍ଷର ସମାଜ ବ୍ୟବସ୍ଥା ବିଘଟିତ, ରାଜନୈତିକ ମତାଦର୍ଶ ଭୁଲୁଣ୍ଠିତ, ନୀତି ଓ ଆଦର୍ଶ ଏଠାରେ ରସାତଳଗାମୀ । ଏ ପରିସ୍ଥିତିରେ ଶ୍ରେଣୀ ବିହୀନ ସମାଜ ପରିକଳ୍ପନା ଅସଫଳ ହୋଇଛି । ପୁଞ୍ଜିବାଦର ରାହୁଛାୟା ବେଳକୁବେଳ ବଢ଼ି ଚାଲିଛି । ଏହାକୁ ଉପଲବ୍ଧି କରି ଅନେକ ମିଥିକ୍ ଚରିତ୍ରକୁ ନାଟ୍ୟକାର ନାଟକର ପରିଧିକୁ ଆଣି ମାର୍କସ୍‌ବାଦୀ ଚିନ୍ତାଧାରା ସହ ସେମାନଙ୍କୁ ସଂଯୁକ୍ତ କରି ଓଡ଼ିଆ ନାଟ୍ୟ ପରଂପରାରେ ଏକ ନୂତନଧାରା ସୃଷ୍ଟି କରିଛନ୍ତି । ଆହୁରି ମଧ୍ୟ 'ଏଇ ଯେ ସୂର୍ଯ୍ୟ ଉଏଁ' 'ଶୋଣିତ ସ୍ୱାକ୍ଷର'ରେ ନାୟକର ମୃତ୍ୟୁ - ଆଦର୍ଶ ଗତ ପରାଜୟ ଭିତରେ ସୋସିଆଲ ଟ୍ରାଜେଡ଼ିର ଝଙ୍କାର ଆଣିଛନ୍ତି ନାଟ୍ୟକାର ।



# ବିଜୟ କୁମାର ଶତପଥୀଙ୍କ ନାଟକରେ ସୋସିଆଲ୍ ଟ୍ରାଜେଡ଼ି

ନାଟକକୁ ମନୋରଂଜନର ମାଧ୍ୟମ ଆପେକ୍ଷା ସମାଜ ପରିବର୍ତ୍ତନର ମାଧ୍ୟମ ଭାବେ ପରିଣତ କରିବାରେ ଯାଦୁକରର ଭୂମିକା ନିର୍ବାହ କରିଛନ୍ତି ନାଟ୍ୟକାର ବିଜୟ କୁମାର ଶତପଥୀ ।

ସେ ହେଉଛନ୍ତି ଯଥାର୍ଥରେ ସାମାଜିକ ବିବେକ ନିର୍ମାତା ଓ ଏହି ନିର୍ମାଣକୁ ମନସ୍ତାତ୍ତ୍ୱିକ ଚିତ୍ର-ଧର୍ମରେ ମଞ୍ଚରୂପ ଦେବାରେ ତାଙ୍କର କୃତିତ୍ୱ ଅନସ୍ୱାଦିତ ପୂର୍ବ ଆଧୁନିକତାର ନିଦର୍ଶନ । ଅନ୍ୟପକ୍ଷରେ ଜୀବନର ନୈରାଶ୍ୟ, ହତାଶା, ବ୍ୟର୍ଥତା, ସମାଜର କଳୁଷିତ ବ୍ୟବସ୍ଥା, ସୁବିଧାବାଦୀ ଶାସନବ୍ୟବସ୍ଥା, ଶୋଷଣ ମନୋବୃତ୍ତି, ମୂଲ୍ୟବୋଧର ବିପର୍ଯ୍ୟୟ ଏସବୁ ଯେପରି ଭାବେ ତାଙ୍କ ନାଟକରେ ଦେଖିବାକୁ ମିଳେ, ତା'ଠାରୁ ଅଧିକ ଶକ୍ତିଶାଳୀ ରୀତିରେ ରୂପପାଏ ସୋସିଆଲ ଟ୍ରାଜେଡ଼ିର ଦୃଶ୍ୟପଟ୍ଟ । ନାଟ୍ୟକାର ଡ. ଶତପଥୀ ଓଡ଼ିଆ ନାଟକରେ ଏହାକୁ ପ୍ରୟୋଗ କରିବା ସହ ନାଟକକୁ ମୋଡ଼ବୁଲାଣି ଦେବାରେ ସଫଳ ହୋଇଛନ୍ତି । ଏହି ନାଟ୍ୟକାର ମହୋଦୟଙ୍କ 'ଏଇ ଯେ ସୂର୍ଯ୍ୟ ଉଏଁ' (ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ) 'ଶୋଣିତ ସ୍ୱାକ୍ଷର' (ବିଷୁବ ପୁରସ୍କାର ପ୍ରାପ୍ତ) ଓ 'ପ୍ରଳୟ ପରେ' ନାଟକକୁ ନେଇ ଅଗ୍ରଦୂତ ପ୍ରକାଶନର ସହଯୋଗରେ ପ୍ରକାଶ ପାଇଛି 'ସୋସିଆଲ୍ ଟ୍ରାଜେଡ଼ିର ତିନୋଟି ନାଟକ' ପୁସ୍ତକ ।

ଟ୍ରାଜେଡ଼ି ଏପରି ଏକ କ୍ରିୟାର ଅନୁକରଣ, ଯାହା ଗମ୍ଭୀର, ଗୁରୁତ୍ୱପୂର୍ଣ୍ଣ ଓ ସ୍ୱୟଂସଂପୂର୍ଣ୍ଣ । ଭୟ ଓ କରୁଣା ଏହାର ପ୍ରମୁଖ ପ୍ରସଂଗ । ଏକଦା ନାଟକରେ ନାୟକ ବା ନାୟିକାର ବ୍ୟକ୍ତିଗତ ଜୀବନର ଦୁଃଖ-ଦୁର୍ଦ୍ଦଶା କାରୁଣ୍ୟର ଚିତ୍ର ଆମେ ଦେଖିବାକୁ ପାଉଥିଲୁ, ଯାହାଥିଲା ପର୍ସନାଲ୍ ଟ୍ରାଜେଡ଼ି ମାତ୍ର ଧୀରେ ଧୀରେ ସେହି ବ୍ୟକ୍ତି ଜୀବନର ଦୁଃଖ ଅପେକ୍ଷା ଆମେ ବୃହତ୍ତର ସମାଜର ଦୁଃଖକୁ ତଥା ସାମୁଦାୟିକ ବିଷାଦ ବା ଦୁଃଖକୁ ଅନୁଭବ କଲୁ । ଉଚ୍ଚବର୍ଗ-ମଧ୍ୟବିତ୍ତ ଗୋଷ୍ଠୀର ଜୀବନ ବିପର୍ଯ୍ୟୟ ଅପେକ୍ଷା ସାଧାରଣ ମଣିଷର ବିପର୍ଯ୍ୟୟ ସାମୁଦାୟିକ ଦୁଃଖର ପ୍ରମୁଖ ବିଭବ । ଆଧୁନିକ କାଳରେ ଗ୍ଲସୱର୍ଦ୍ଦିଙ୍କ 'ଷ୍ଟ୍ରାଇଫ୍', 'ଜଷ୍ଟିସ' ପ୍ରଭୃତି ନାଟକରେ ଏହି ସ୍ୱର ଆମେ ଦେଖିବାକୁ ପାଇଛୁ । ପରବର୍ତ୍ତୀ କାଳରେ ଏହି ସ୍ୱର ଏକ ବ୍ୟାପକ ଚେତନାରେ ପରିଣତ ହେବାକୁ ଲାଗିଛି । ଗୋଟିଏ ଜାତିର ଭାଗ୍ୟ ବିପର୍ଯ୍ୟୟ, ସମୂହ ମଣିଷର ଦୁର୍ଦ୍ଦଶା, ନାୟକର ଆଦର୍ଶଗତ ପରାଜୟ କ୍ରମେ ପରିଗଣିତ ହେଲା ସୋସିଆଲ

ଟ୍ରାଜେଡ଼ି ଭାବରେ । ଏହି ଚିନ୍ତାଧାରା ସଂପର୍କରେ ନାଟ୍ୟକାର ଡ. ଶତପଥୀ 'ସୋସିଆଲ୍ ଟ୍ରାଜେଡ଼ିର ତିନୋଟି ନାଟକ' ପୁସ୍ତକର ମୁଖବନ୍ଧରେ ଲେଖିଛନ୍ତି - "ଏବେ ପର୍ସନାଲ୍ ଟ୍ରାଜେଡ଼ିର ଦିନ ସରିଯାଇଛି । ଏହାହିଁ ପରିବର୍ତ୍ତିତ ମୂଲ୍ୟବୋଧ । 'କିଙ୍ଗ ଲିୟର୍', 'ହାମଲେଟ୍' ବା 'ଅଥେଲୋ' ପ୍ରଭୃତିରେ ଦର୍ଶକଗଣ ଯେଉଁ ଟ୍ରାଜିକ୍ ବାତାବରଣ ଲକ୍ଷ୍ୟ କରିଥିଲେ ଓ ଟ୍ରାଜିକ୍ ନାୟକମାନଙ୍କୁ ଭେଟିଥିଲେ, ଏବେର ପରିସ୍ଥିତି ତା'ଠାରୁ ଭିନ୍ନ । ଦିନଥିଲା ନାୟକର ବ୍ୟକ୍ତିଗତ ଦୁଃଖ - ଶୋକର ଉଚ୍ଛ୍ୱାସରେ ଦର୍ଶକମାନେ ଭାସି ଯାଉଥିଲେ । ଦୁଃଖ ଓ ଶୋକର ବେଗଗାମୀ ସ୍ରୋତରେ ଏବଂ ନିୟତିର ଦୁର୍ବାର ଇଙ୍ଗିତରେ ଅସହାୟ ହୋଇ ଭାସି ଯାଉଥିବା ଟ୍ରାଜିକ୍ ହିରୋର ଅବସ୍ଥା ଦେଖି ଦର୍ଶକମାନଙ୍କ ମନରେ ଭୟ ଓ କରୁଣାର ଭାବ ଉଦ୍ରେକ ହୋଇଥିଲା । କିନ୍ତୁ ଆଜିର ମଣିଷ ଯେଉଁ ପରିସ୍ଥିତିରେ ବଞ୍ଚୁଛି ଓ ଜୀବନ ବିରୋଧୀ ନାନା ପରିସ୍ଥିତି ସହ ମୁକାବିଲା କରୁଛି, ସେପରି ଅବସ୍ଥା ପୂର୍ବରୁ ନଥିଲା । ମାନବିକତାର ଅପମୃତ୍ୟୁ ସୁସ୍ଥ ସମାଜ ଜୀବନକୁ ଧ୍ୱଂସ କରୁଥିବା ଶକ୍ତିମାନଙ୍କର କାରସାଦି, ବିଭୀଷିକାର ବାତାବରଣ ସୃଷ୍ଟି କରୁଥିବା, ପୁଣି ନିଜକୁ ସମାଜର ବଡ଼ପଣ୍ଡା ବୋଲାଉଥିବା ମନ୍‌ଷ୍ଟରମାନଙ୍କର ଷଡ଼ଯନ୍ତ୍ର ଆଜି ନିମନ୍ତ୍ରଣ କରି ଆଣିଛି ଏହି ସୋସିଆଲ୍ ଟ୍ରାଜେଡ଼ିକୁ । ଯେଉଁଠି ସମଗ୍ର ସମାଜ ବ୍ୟବସ୍ଥାଟି ବିପନ୍ନ ଓ ଯନ୍ତ୍ରଣା କାତର । ଉଚ୍ଚାଙ୍ଗ ମୂଲ୍ୟବୋଧମାନେ ସେ ଅବସ୍ଥାରେ ଧରାଶାୟୀ ।"

ସୋସିଆଲ ଟ୍ରାଜେଡ଼ି ସମଗ୍ର ଗୋଷ୍ଠୀ ଜୀବନର ସମାଜ ବ୍ୟବସ୍ଥାର ବିପର୍ଯ୍ୟୟ, ଏକ କରୁଣ ପରିବେଶକୁ ନିମନ୍ତ୍ରଣ କରିଆସିଛି । ଏଠାରେ ବ୍ୟକ୍ତି ଜୀବନର ଘନଘଟା, ବ୍ୟକ୍ତି ଜୀବନର କାରୁଣ୍ୟ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଗୁରୁତ୍ୱପୂର୍ଣ୍ଣ ହେଉଛି ବୃହତ୍ତର ସମାଜ ଜୀବନର ପରିଧି, ଯାହା କ୍ଷୟିଷ୍ଣୁ ମୂଲ୍ୟବୋଧ ଦ୍ୱାରା ଆକ୍ରାନ୍ତ । ଗତ ଦୁଇ ଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଧରି ଆମ ଚାରିପାଖେ ଯାହା ସବୁ ଘଟୁଛି, ସେଥିରୁ ସୋସିଆଲ ଟ୍ରାଜେଡ଼ିର ଯଥେଷ୍ଟ ନମୁନା ମିଳେ । ବ୍ୟକ୍ତିର ଯେମିତି ଗୋଟେ ମନ ଅଛି, ସମାଜର ସେମିତି ମନ ଅଛି । ଯେଉଁଠି ସମାଜର ମନ ନିରନ୍ତର ଆଶଙ୍କାଗ୍ରସ୍ତ, ଭୟ ଓ ସଂକଟ ମଧ୍ୟରେ ଗତିଶୀଳ, ସେଠି ବ୍ୟକ୍ତି ଜୀବନରେ ସୁସ୍ଥତା ଆସିବ କେଉଁଠାରୁ ? ଏଣୁ ଏପରି ସ୍ଥଳେ ବ୍ୟକ୍ତିଗତ ଜୀବନର ଟ୍ରାଜେଡ଼ିଠାରୁ ମହତ୍ତ୍ୱପୂର୍ଣ୍ଣ ହେଲା ଏହି ସୋସିଆଲ୍ ଟ୍ରାଜେଡ଼ି । ନାଟ୍ୟକାର ଏହାର ଚିତ୍ର ଦେବାର ଅର୍ଥ ହେଲା ଦର୍ଶକ, ପାଠକମାନଙ୍କୁ ପ୍ରଥମତଃ ସମାଜମନସ୍କ କରିବା, ଏହା ସାଧାରଣ କଥା । କିନ୍ତୁ ସମାଜମନସ୍କ ହେଲେ ତ ଚଳିବନି, ଆମୂଳଚୂଳ ଏକ ସମାଜ ପରିବର୍ତ୍ତନର ଇଙ୍ଗିତ ଦେଇ ଅଙ୍ଗୀକାରବଦ୍ଧ ଦୃଷ୍ଟିକୋଣକୁ ପ୍ରତିଷ୍ଠା କରାଇବା ଆବଶ୍ୟକ । ଉଲ୍ଲେଖଯୋଗ୍ୟ ଯେ ସାଂପ୍ରତିକ ଓଡ଼ିଆ ନାଟ୍ୟଚିନ୍ତାରେ ସୋସିଆଲ ଟ୍ରାଜେଡ଼ିର ଧାରାକୁ ପ୍ରଥମେ ପ୍ରତିଷ୍ଠିତ କରିଛନ୍ତି ନାଟ୍ୟକାର ଶତପଥୀ ।

ଏବେ ଆମେ ଡ. ଶତପଥୀଙ୍କ ନାଟକରେ ଥିବା ସୋସିଆଲ୍ ଟ୍ରାଜେଡ଼ିକୁ ଗୋଟିଏ ପରେ ଗୋଟିଏ ନାଟକ ଆଲୋଚନାର ପରିସରକୁ ନେଇ ଅନୁଧ୍ୟାନ କରିପାରିବା । ପ୍ରଥମେ

ଦେଖିବା 'ଏଇ ଯେ ସୂର୍ଯ୍ୟ ଉଏଁ' ନାଟକକୁ । ୧୯୮୩ ମସିହାରେ ରଚିତ ଏହି ନାଟକରେ ଲୋକନାଟ୍ୟଶୈଳୀ ଓ ଲୋକପ୍ରିୟ ସଂଗୀତ ପରିବେଷଣ ରୀତିକୁ ମଞ୍ଚରେ ନାଟ୍ୟକାର ପ୍ରଦର୍ଶନ କରିବାର ସାହସିକ ନିଷ୍ପତ୍ତି ନେଇଛନ୍ତି । ନାଟକର ପ୍ରଥମ ପର୍ବରେ ପାଲାର ଆଙ୍ଗିକ ମାଧ୍ୟମରେ କଥାବସ୍ତୁର ଉପସ୍ଥାପନ ଦେଖିବାକୁ ମିଳେ । ଶୋଷକର ସର୍ବହରା ଉପରେ ଅତ୍ୟାଚାର, ସ୍ୱେଚ୍ଛାଚାରୀ ଶାସକର ଶାସନ କାଳରେ ଲେଖକ ଓ କଳାକାରର ଦୁର୍ଦ୍ଦଶା ଏଥିରେ ରୂପାୟିତ ହୋଇଛି । ଏହି ପର୍ବରେ ରାଜା-ରାଜୁଡ଼ା ଅମଳର ବିଷୟବସ୍ତୁ, ସଂଳାପ, ବେଶଭୂଷା, ସଂଗୀତ ସଂଯୋଜନାରେ ଯାତ୍ରାର ଟେକ୍‌ନିକ୍ ଅନୁସରଣ, ବାସ୍ତବରେ ଡକ୍ଟର ଶତପଥୀଙ୍କ ଶିଳ୍ପୀ ପଣିଆର ମହତ୍ତ୍ୱ ପ୍ରତିପାଦନ କରିପାରିଛି ।

ନାଟକର ପ୍ରଥମ ପର୍ବରେ ରାଜତନ୍ତ୍ର ଦେଖିବାକୁ ମିଳିଥିବାବେଳେ ଦ୍ୱିତୀୟ ପର୍ବରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ଆମେ ଦେଖିବାକୁ ପାଉ । ପୂର୍ବ ପର୍ବର ଚରିତ୍ରମାନେ ମଞ୍ଚକୁ ଆସିଛନ୍ତି ବର୍ତ୍ତମାନ କାଳର ଚରିତ୍ର ଭାବରେ । ଏହି ପର୍ବର କାହାଣୀ ଆରମ୍ଭ ହୋଇଛି ହାଟବଜାରରେ କୌଣସି ଚାଞ୍ଚଲ୍ୟକର ଘଟଣାକୁ ଗୀତ ଗାଇ ପରିବେଷଣ କରୁଥିବା ଓ ସେ ସଂପର୍କରେ ଚଟିବହି ଛପାଇ ବିକ୍ରୀ କରୁଥିବା ଷ୍ଟ୍ରିଟ୍ ସିଙ୍ଗର୍‌ଙ୍କ ସଂଗୀତ ପରିବେଷଣରୁ । ଅନ୍ୟାୟ, ଅରାଜକତା, ଅନ୍ଧଶାସନ ବ୍ୟବସ୍ଥା ବିରୋଧରେ ବିଦ୍ରୋହର ସ୍ୱର ଏହି ନାଟକରେ ମୁଖ୍ୟ ବିଭବ ରୂପେ ଗୃହୀତ ହୋଇଛି ।

ନାଟକର ପ୍ରଥମ ପର୍ବରେ ରାଜା ବୀରାଦିତ୍ୟ ଓ ତାଙ୍କ ପାରିଷଦଗଣଙ୍କ ଅନ୍ଧ ଶାସନ ବ୍ୟବସ୍ଥା କବି ଶ୍ରୀକଣ୍ଠ ଓ ତା'ର ପତ୍ନୀ ମାଳବିକା ପ୍ରତି ରାଜା ବୀରାଦିତ୍ୟଙ୍କ ଅବିଚାର ମାଳବିକାକୁ ଭୋଗ କରିବାର ପାପ ଲାଳସା ଭିତରେ ରାଜା-ରାଜୁଡ଼ା ସମୟର ଦୁର୍ଦ୍ଦଶାଗ୍ରସ୍ତ ଶାସନ ବ୍ୟବସ୍ଥାକୁ ଆମେ ଲକ୍ଷ୍ୟ କରିପାରିବା । ନାଟ୍ୟକାର ମହୋଦୟଙ୍କ ଶ୍ରୀକଣ୍ଠ ଭିତରେ ଥିବା ଲେଖକର ସ୍ୱାଭିମାନକୁ ରୂପ ଦେଇଛନ୍ତି । ରାଜା ଆଜ୍ଞାକୁ ବିରୋଧ କରି ସେନାପତିଙ୍କ ଉଦ୍ଦେଶ୍ୟରେ ଶ୍ରୀକଣ୍ଠ କହିଥିବା ସଂଳାପ ଭିତରୁ ଆମେ ତା'ର ସ୍ୱାଭିମାନୀ ବ୍ୟକ୍ତି ସତ୍ତାକୁ ଲକ୍ଷ୍ୟ କରିପାରିବା ।

ଶ୍ରୀକଣ୍ଠ : (ଦୃଢ଼ କଣ୍ଠରେ) ନା, ସେନାପତି, ମୁଁ ଦୀନଦରିଦ୍ର କବି ହୋଇପାରେ, ମାତ୍ର ମୋର ଆତ୍ମସମ୍ମାନ ଅଛି । ଗୋଟିଏ ଅତ୍ୟାଚାରୀ କାମୁକ ରାଜାର ଲାଳସା ଚରିତାର୍ଥ କରିବା ପାଇଁ ମୋର ପତ୍ନୀକୁ ପ୍ରେରଣ କରିବି, ଅସଂଭବ । ସୂର୍ଯ୍ୟ ପଛେ ପଶ୍ଚିମ ଦିଗରେ ଉଦୟ ହୋଇପାରନ୍ତି, ମାତ ଏ ରାଜାଜ୍ଞା ପାଳନ ପାଇଁ ମୁଁ ଅସମର୍ଥ ।" (ସୋସିଆଲ ଟ୍ରାଜେଡ଼ିର ତିନୋଟି ନାଟକ, ପୃ. ୨୮)

କବି ଶ୍ରୀକଣ୍ଠଙ୍କ କବିତାରେ ଥିବା ବିପ୍ଳବର ଉଦ୍‌ବୋଧନୀ ଶକ୍ତିରେ ବଳୀୟାନ ହୋଇ ବିଦ୍ରୋହୀ ନେତା ସାଧୁଚରଣର ପ୍ରୋତ୍ସାହନ ଓ ପ୍ରେରଣାରେ ରାଜ୍ୟର ସାଧାରଣ

ଜନତା ଏକ ପରିବର୍ତ୍ତନର ଆଭିମୁଖ୍ୟ ନେଇ ରାଜାଙ୍କ ବିରୋଧରେ ବିଦ୍ରୋହ କରିଛନ୍ତି । ମାଳବିକା ଓ ଶ୍ରୀକଣ୍ଠର ମୃତ୍ୟୁସହ ରାଜା ବୀରାଦିତ୍ୟଙ୍କର ମଧ୍ୟ ପତନ ଘଟିଛି । ଶ୍ରୀକଣ୍ଠ ମୃତ୍ୟୁବରଣ କରି ମଧ୍ୟ ରହିଛନ୍ତି ସାଧାରଣ ଜନତାର ହୃଦୟରେ । ପୁରାତନର ଧ୍ୱଂସ ସ୍ତୁପ ମଧ୍ୟରୁ ଏକ ନୂତନ ମୂଲ୍ୟବୋଧର ଜନ୍ମକୁ ଆମେ ଦେଖିବା ସହ ଏକ ନୂତନ ସୂର୍ଯ୍ୟୋଦୟକୁ ସ୍ୱାଗତ କରିବାର ଅଭୀପ୍ସା ନାଟକଟିରେ ପ୍ରତିଫଳିତ ।

ନାଟକର ଦ୍ୱିତୀୟ ପର୍ବରେ ଚରିତ୍ରମାନେ ସମୟର ବିବର୍ତ୍ତନ ଧାରାରେ ବର୍ତ୍ତମାନର ଜୀବନଧାରା ସହ ଏକାତ୍ମ ହୋଇଯାଆନ୍ତି । ରାଜା ବୀରାଦିତ୍ୟ ଆଦିତ୍ୟପ୍ରତାପ ଭାବେ, ଶ୍ରୀକଣ୍ଠ ବିପ୍ଳବୀ କଣ୍ଠ ଦାସ ଭାବେ ଏବଂ ଅନ୍ୟାନ୍ୟ ଚରିତ୍ରମାନେ ନିଜ ନିଜ ସାମାଜିକ ପ୍ରତିଷ୍ଠା ଅନୁଯାୟୀ ନୂଆ ରୂପରେ ଆବିର୍ଭୂତ ହୁଅନ୍ତି ମଞ୍ଚରେ । ଶିଳ୍ପପତି ଆଦିତ୍ୟ ପ୍ରତାପଙ୍କର ଶ୍ରମିକମାନଙ୍କୁ ଶୋଷଣ, ବିପ୍ଳବୀ ଲେଖକ କଣ୍ଠଦାସ ଓ ତା'ର ପତ୍ନୀ ମାଳତୀ ଉପରେ ଅତ୍ୟାଚାର, କଣ୍ଠଦାସର ବିଦ୍ରୋହକୁ ଦମନ କରିବାର ପ୍ରୟାସ ଭିତରେ ଆମେ ସୁବିଧାବାଦୀ କ୍ଷମତାଲିପ୍ସୁ ଗଣତାନ୍ତ୍ରିକ ବ୍ୟବସ୍ଥାର ରୂପ ସହ ପରିଚିତ ହେଉ । ଏତଦ୍‌ବ୍ୟତୀତ ଏହି ଦ୍ୱିତୀୟ ପର୍ବରେ ଆମେ ଆଧ୍ୟାତ୍ମିକ ଛଳନାମଣ୍ଡିତ ଧର୍ମ ପରଂପରାର ସୁବିଧାବାଦୀ ବ୍ୟବସ୍ଥାକୁ ଦେଖୁ, ଯାହାକୁ ବ୍ୟଙ୍ଗାତ୍ମକ ଭାବେ ପ୍ରକାଶ କରିଛନ୍ତି ଡ. ଶତପଥୀ । କଣ୍ଠଦାସର ନେତୃତ୍ୱରେ ପୁଞ୍ଜିପତି ବିରୋଧରେ ସ୍ୱର ଉତ୍ତୋଳନ କରୁଥିବା ସର୍ବହରାର ସାମର୍ଥ୍ୟକୁ ପରାହତ କରିବାର ଚକ୍ରାନ୍ତ, କଣ୍ଠଦାସଙ୍କୁ ବିନା ଦୋଷରେ ହାଜତକୁ ପଠାଇବା, ତା'ର ପତ୍ନୀ ମାଳତୀର ଅସହାୟତାର ଫାଇଦା ନେବାର ଚିନ୍ତାଧାରା ଭିତରେ ଆମେ ଆଦିତ୍ୟ ପ୍ରତାପଙ୍କ ସଇତାନ ସତ୍ତାକୁ ଖୋଜିପାଉ । ଆଦିତ୍ୟର ପାପ ସାମ୍ରାଜ୍ୟକୁ ଧ୍ୱଂସ କରିବାକୁ ଜେଲ୍ ପାଚେରୀ ଡେଇଁ ଖସି ଆସିଥିବା କଣ୍ଠଦାସ ପୋଲିସ ଗୁଳିରେ ମୃତ୍ୟୁବରଣ କରିବା ସହ ଗୋଟିଏ ବିପ୍ଳବୀ ସର୍ବହରା କେବଳ ନୁହେଁ, ଏ ସମାଜର ସଂଖ୍ୟାଧିକ ମେହନତି ଅଭାବୀ ମଣିଷର ପରାଜୟ ଘଟିଛି । ସେମାନଙ୍କ ଚାରିପାଖରେ ଖେଳିଯାଇଛି ଶୋକାକୁଳ ଅବସ୍ଥା । କଣ୍ଠଦାସର ମୃତ୍ୟୁବେଳେ ଆଦିତ୍ୟକୁ କହିଥିବା ସଂଳାପ ଭିତରେ ଆମେ ଆଉ ଏକ ନୂତନ ସୂର୍ଯ୍ୟର ଉଦୟକୁ ଲକ୍ଷ୍ୟ କରିଥାଉ । "ନା, ପାରିଲିନି... ଭାବିଥିଲି ଆଦିତ୍ୟ ପ୍ରତାପର ଗର୍ବ ଅହମିକାକୁ ମାଟିରେ ମିଶେଇ ଦେବି । ମାଳତୀ ହତ୍ୟାର ପ୍ରତିଶୋଧ ନେବି । ପାରିଲିନି... ଓଃ, କିନ୍ତୁ ମନେରଖ ଆଦିତ୍ୟ ପ୍ରତାପ, କଣ୍ଠଦାସ ମରିଗଲେ ବି ତା'ରି କ୍ଷୁଧିତ ଆତ୍ମା ମଧ୍ୟରୁ ଅନେକ... ଅନେକ କଣ୍ଠଦାସ ଜନ୍ମନେବେ । ସେମାନେ କରିଚାଲିବେ ଅନ୍ୟାୟ ବିରୁଦ୍ଧରେ ଶପଥବଦ୍ଧ ସଂଗ୍ରାମ... ସେ ଦିନକୁ ଅପେକ୍ଷା କର ଆଦିତ୍ୟ ପ୍ରତାପ... ଅପେକ୍ଷା କର ।"

ଏଠାରେ କଣ୍ଠଦାସର ମୃତ୍ୟୁ ଜଣେ ବିପ୍ଳବୀର ସ୍ୱର୍ଦ୍ଧିତ ମୃତ୍ୟୁ । ଏହା କୋଟି କୋଟି ଜନତାର ପ୍ରାଣରେ ବିପ୍ଳବର ସଂଭାବନା ଭରିଦେବାରେ ସମର୍ଥ । ବାସ୍ତବରେ ଦେଖିଲେ

କଣ୍ଠ ଦାସର ମୃତ୍ୟୁପରେ ସମାଜ ବ୍ୟବସ୍ଥାରେ ବାସ କରୁଥିବା ସର୍ବହରା ମଣିଷର ପରାଜୟଜନିତ ଦୁଃଖ ଭିତରୁ ସାମାଜିକ ବିଷାଦ / ସାମୁଦାୟିକ ଦୁଃଖ ସମାଜରେ ବଞ୍ଚିଥିବା ଶହଶହ କଣ୍ଠଦାସଙ୍କ ଦୁର୍ଦ୍ଦଶା, ଦୁଃଖର ବିପର୍ଯ୍ୟୟ, ସ୍ୱପ୍ନଭଂଗ, ଦୁର୍ଦ୍ଦଶା ଭିତରେ ସୋସିଆଲ୍ ଟ୍ରାଜେଡ଼ିକୁ ଅନୁଭବ କରିହୁଏ ।

ଏବେ ଆମେ ଦେଖିବା ଦ୍ୱିତୀୟ ନାଟକ 'ଶୋଣିତ ସ୍ୱାକ୍ଷର'ରେ ଥିବା ସୋସିଆଲ ଟ୍ରାଜେଡ଼ିକୁ । ଆମ ମାଟି, ପରଂପରା, ଜୀବନବୋଧ ଓ ସର୍ବୋପରି ଆଧୁନିକତା ନାଆଁରେ ଗଢ଼ା ନିୟମ କାନୁନ ପ୍ରତି ଥିବା ଆସ୍ଥାକୁ ଭାଂଗିଦେଇ, ତଥାକଥିତ ଆଧୁନିକତା ବିରୋଧରେ, ସମୟର ସ୍ପନ୍ଦନକୁ ଯଥାବିଧି ରୂପ ପ୍ରଦାନ କରିବାର ପ୍ରୟାସ ଏହି ଉତ୍ତର ଆଧୁନିକ ନାଟକରେ ଆମେ ଦେଖିବାକୁ ପାଇଥାଉ । ଏହି ନାଟକର ଆଙ୍ଗିକରେ ଲୋକ ଉପାଦାନର ପ୍ରୟୋଗ ତଥା ନଟ-ନଟୀଙ୍କର କାହାଣୀ ଉପସ୍ଥାପନା କୌଶଳ, ଓଡ଼ିଆ ପରଂପରାର ଲୋକପ୍ରିୟ ଖୁଲଣା ସୁନ୍ଦରୀ କାହାଣୀର ପୁନର୍ଗଠନ ତଥା ନିଶା ମଙ୍ଗଳବାର ଓଷା କଥାବସ୍ତୁର ପ୍ରୟୋଗ ନାଟକଟିକୁ ଚମତ୍କାର ଭାବେ ଗଢ଼ି ତୋଳିଛି । ପୁଣି ଏଥିରେ ଥିବା ଆଲୌକିକତା ଓ magic realism ମଧ୍ୟ ପାଠକ ଦର୍ଶକକୁ ଅଭିଭୂତ କରିବାରେ ସମର୍ଥ ।

ଏହି ନାଟକରେ ଆମେ ଦୁଇଟି ପର୍ଯ୍ୟାୟର କଥାବସ୍ତୁକୁ ଲକ୍ଷ୍ୟ କରିପରିବା । ପ୍ରଥମ ପର୍ଯ୍ୟାୟରେ ରାଜା ରାଜୁଡ଼ା ଶାସନର ଅବ୍ୟବସ୍ଥା, ରାଜା ସୁଦର୍ଶନ ଅନ୍ଧତ୍ୱକୁ ଜାଣିଶୁଣି ବରଣ କରିବା, ଶିଳ୍ପୀ ଉପରେ ଅତ୍ୟାଚାର, ସତ୍ୟନିଷ୍ଠ ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଅସ୍ୱୀକାର କରି ତା'ର ସାମର୍ଥ୍ୟକୁ ଧ୍ୱଂସ କରିବାର ଚିତ୍ର ସହ ଲୋକପ୍ରିୟ 'ଖୁଲଣା ସୁନ୍ଦରୀ'ର ଶ୍ରୀଧର ପ୍ରସଙ୍ଗ, ଗଛ କଥା କହିବା, ସମୁଦ୍ର ମଧ୍ୟରେ ପଦ୍ମଫୁଲ ଉପରେ ନୃତ୍ୟରତା କନ୍ୟାର ଆଲୌକିକ ଉପାଖ୍ୟାନଗୁଡ଼ିକ ବର୍ଣ୍ଣିତ ହୋଇଛି । ଦ୍ୱିତୀୟ ପର୍ଯ୍ୟାୟରେ ଚରିତ୍ରମାନେ ଆଧୁନିକ ଜୀବନ ସହ ସମୟର ବିବର୍ତ୍ତନ ଧାରାରେ ନୂଆରୂପ ପାଇ ଆସିଛନ୍ତି । ପୁଞ୍ଜିପତି ସର୍ବହରାର ସଂଘର୍ଷ, ବିପ୍ଳବୀ ସଂଗଠକ ଶ୍ରୀଧରକୁ ହତ୍ୟା କରିବା, ଶିଳ୍ପପତି ପ୍ରିୟଦର୍ଶନର ଭଦ୍ରମୁଖା ପିନ୍ଧା ସଇତାନ ରୂପ ସହ ନିର୍ଯ୍ୟାତିତ ମଣିଷର ଦୁଃଖକୁ ଏହି ପର୍ଯ୍ୟାୟରେ ଅନୁଭବ କରିହୁଏ । ଏହି ନାଟକର ମୁଖଶାଳାରେ ନାଟ୍ୟକାର ଡ. ଶତପଥୀ ଲେଖିଛନ୍ତି - "ଯୁଗେ ଯୁଗେ ଶାସନ ବ୍ୟବସ୍ଥାକୁ ନିୟନ୍ତ୍ରଣ କରୁଥିବା ମହାମହିମମାନେ ଅନ୍ଧ ହୋଇଥାନ୍ତି । ସେମାନଙ୍କୁ ଅନ୍ଧ କରିଦିଆଯାଇଥାଏ କିମ୍ବା ଅନ୍ଧ ହେବାକୁ ବେଶ୍ ପ୍ରୀତିପଦ ବୋଲି ମଣୁଥାଆନ୍ତି ସେମାନେ, ନିରୀହ ଜନସାଧାରଣ ଯେଉଁମାନେ ଚାହୁଁଥାନ୍ତି ସତ୍ୟକୁ ସତବୋଲି କୁହାଯାଉ, ଡେଙ୍ଗୁରା ପିଟି ମିଛକୁ ସତ ବୋଲି ଘୋଷଣା କରାନଯାଉ, ସେମାନେ ତଥାକଥିତ ଅନ୍ଧମାନଙ୍କ ମେଳରେ ବଡ଼ ନିର୍ଯ୍ୟାତିତ ହୋଇ କାଳ କାଟୁଥାନ୍ତି । ସ୍ୱେଚ୍ଛାରେ ଅନ୍ଧତ୍ୱକୁ ବରି ନେଇଥିବା ଓ ଦର୍ପଣରେ ନିଜ ମୁହଁକୁ ଦେଖି ସ୍ତୁତିକାରମାନଙ୍କ ଦ୍ୱାରା ବାହାବା ପାଉଥିବା (ଯେହେତୁ ସେ ନିଜେ ନିଜକୁ ଦେଖି

ପାରିବେ ନାହିଁ) ଏହି ମଣିଷମାନଙ୍କୁ ଏକ ପ୍ରକାର ନାର୍‌ସିସିଷ୍ଟ ବୋଲି କୁହାଯାଉ । କାରଣ ଏମାନେ ଅବିକଳ ନାର୍‌ସିସିଷ୍ଟ ନୁହଁନ୍ତି, ସେହି ପ୍ରକାର ଆଉ କିଛି ।"

ଏମାନଙ୍କର ଏଇ ଅନ୍ଧ ପୁଟୁଳିକୁ ଖୋଲିବାର ପ୍ରୟାସ କରିଛନ୍ତି ନାଟ୍ୟକାର । ଖୁଲଣା ସୁନ୍ଦରୀର ମିଥ୍‌କୁ ଆଣି ଶ୍ରୀଧର ମାଧ୍ୟମରେ ମୁକ୍ତିର ବାର୍ତ୍ତା ନାଟକର ପ୍ରଥମ ପର୍ଯ୍ୟାୟରେ ନାଟ୍ୟକାର ଦେଇଛନ୍ତି । ପ୍ରଥମ ପର୍ଯ୍ୟାୟରେ ଏହି ପରିବର୍ତ୍ତିତ ମୂଲ୍ୟବୋଧ ଆଣିଥିବା ଶ୍ରୀଧର କିନ୍ତୁ ଦ୍ୱିତୀୟ ପର୍ଯ୍ୟାୟରେ ଭ୍ରଷ୍ଟାଚାର, ଦୁର୍ନୀତିର ତଥା ସୁବିଧାବାଦୀ ଶୋଷକ ଗୋଷ୍ଠୀର ଚକ୍ରାନ୍ତର ଶିକାର ହୋଇ ମୃତ୍ୟୁବରଣ କରିଛି ଅତି କରୁଣ ଭାବରେ । ସମସ୍ତେ ଅପେକ୍ଷା କରିଛନ୍ତି ଏହି ପର୍ଯ୍ୟାୟରେ ଶ୍ରୀଧରର ଫେରିବା ପଥକୁ । କିନ୍ତୁ ଶ୍ରୀଧର ଫେରିନି । ତା' ଆସିବାର ଇଙ୍ଗିତ ଭିତରେ ସଂଗଠିତ ଅସହାୟ ଜନତାର ଶକ୍ତି ଜାଗ୍ରତ ହୋଇଛି । ନାଟକ ସମାପ୍ତିର ଶେଷ ସଂଳାପ ମଧ୍ୟରୁ ଆମେ ଲକ୍ଷ୍ୟ କରିପାରିବା ଏହି ଅସହାୟ ଜନତାର ଜାଗ୍ରତ ଶକ୍ତିକୁ - "ମୁକୁନ୍ଦ : ଆଗେଇ ଚାଲ ବନ୍ଧୁ, ମୁଁ ତୁମ ସହିତ ଅଛି । ବସ୍ତିର ଶହଶହ ଭୋକିଲା ମଣିଷ ବି ରହିବେ ଆମ ସାଂଗରେ, କାରଣ ଶ୍ରୀଧର ଫେରିଆସିବ... ନୂଆ ଯୁଗର... ନୂଆ ଜୀବନର ବାର୍ତ୍ତା ନେଇ ସେ ପହଞ୍ଚିବ, ସବୁରି ଛାତିରେ ଦିନେ ଶୁଣାଯିବ ତା' ଆସିବାର ଶବ୍ଦ" ।

ଶ୍ରୀଧରର ମୃତ୍ୟୁଠାରୁ ଅଧିକ କରୁଣ ସର୍ବହରାର ନିଷ୍ପେଷିତ ଜୀବନ । ପୁଞ୍ଜିପତିର ନାଲିଆଖିକୁ ସେ ଡରେନି ସତ, ହେଲେ ତା'ସହ ବିପର୍ଯ୍ୟସ୍ତ ହୋଇଯାଏ ତାର ଜୀବନଚର୍ଯ୍ୟା । ତାହା ଏକ ସାମୁଦାୟିକ ଦୁଃଖର ପ୍ରସଙ୍ଗ ହୋଇଯାଏ । ଶ୍ରୀଧର ସାଧାରଣ ଜନତାର ପ୍ରତିନିଧି । ତା'ର ଜୀବନର ବିପର୍ଯ୍ୟୟଠାରୁ କିନ୍ତୁ ସମାଜର ବିପର୍ଯ୍ୟୟ ଅଧିକ । ସମାଜର ଏ ପରାଜୟ ଜନିତ ଦୁଃଖ ଭିତରେ ବି ସର୍ବହରାମାନେ ବିଦ୍ରୋହ କରିବାରୁ କ୍ଷାନ୍ତ ହୋଇନାହାନ୍ତି । ଏହି ନାଟକରେ ଏହି ସାଧାରଣ ନିଷ୍ପେଷିତ ବର୍ଗଙ୍କର ଦୁଃଖ ସୋସିଆଲ୍ ଟ୍ରାଜେଡ଼ିର ସ୍ୱରକୁ କରିପାରିଛି ଅଧିକ ଗମ୍ଭୀର ।

ଏବେ ଆମେ ଦେଖିବା ତୃତୀୟ ନାଟକ 'ପ୍ରଳୟ ପରେ'ରେ ଥିବା ସୋସିଆଲ୍ ଟ୍ରାଜେଡ଼ିକୁ । ୧୯୯୯ ମସିହାରେ ପ୍ରଳୟଙ୍କାରୀ ମହାବାତ୍ୟାର ପୃଷ୍ଠଭୂମିକୁ ନେଇ ଏହି ନାଟକ ରଚିତ । ମହାବାତ୍ୟାର ପ୍ରତୀକାତ୍ମକ ଉପସ୍ଥାପନ ଏହାର ପ୍ରମୁଖ ବିଶେଷତ୍ୱ । ପ୍ରକୃତି ରାଜ୍ୟରେ ସଂଘଟିତ ମହାପ୍ରଳୟ କିପରି ମଣିଷର ଚେତନାକୁ ବିକ୍ଷୁବ୍ଧ କରିଦେଇଛି ତାହା ଏହି ନାଟକରୁ ଲକ୍ଷ୍ୟ କରିହୁଏ । ସତେ ଯେମିତି ମହାବାତ୍ୟା ନିମନ୍ତ୍ରଣ କରି ଆଣିଛି ଚେତନା ଜଗତର ମହାବାତ୍ୟାମାନଙ୍କୁ ଓ ପ୍ରଳୟମାନଙ୍କୁ । ମହାବାତ୍ୟା ପରର ସାଧାରଣ ମଣିଷଙ୍କ ଦୁରବସ୍ଥା, ଦୁର୍ଦ୍ଦଶାକୁ ପ୍ରତ୍ୟକ୍ଷ ଉପଲବ୍ଧି କରିବା ସହ ସେମାନଙ୍କ ପାଖକୁ ଯାଇ ନାଟ୍ୟକାର ଅନୁଧ୍ୟାନ କରିଛନ୍ତି ସାମୁଦାୟିକ ଦୁଃଖକୁ ଓ ଯାହାକୁ ସେ ଜୀବନ୍ତ ଭାବେ ଦର୍ଶାଇଛନ୍ତି ଉକ୍ତ

ନାଟକରେ । ଏହି ନାଟକର ନିଜସ୍ୱ ସଂଳାପରେ ସେ ଲେଖିଛନ୍ତି "ସବୁଠି ପ୍ରଳୟର ଅସ୍ତିତ୍ୱ- ମଣିଷର ରକ୍ତ କୋଷରେ ଚିନ୍ତାଚେତନାରେ ଓ ହୃଦୟତନ୍ତ୍ରୀରେ । ତା'ରିଁ ଝଙ୍କାରରେ ଝଙ୍କୃତ ଚତୁର୍ଦ୍ଦିଗ । ମଣିଷର ଅନ୍ୟାୟ, ଅବିଚାର ଓ ଅସତ୍ୟ ବିରୁଦ୍ଧରେ ପ୍ରକୃତି ମହାପ୍ରଳୟର ଯେଉଁ ତୂର୍ଯ୍ୟନାଦ ଶୁଣାଇଥିଲା ତାହା ସଂକ୍ରମିତ ହେଉ ମଣିଷର ଚିନ୍ତାରାଜ୍ୟକୁ । ନ ହେଲେ ଯେ ନୂଆ କିଛି ଘଟିବନି, ସକାଳ ହେବନି, ପକ୍ଷୀମାନେ ଗୀତ ଗାଇବେନି, ତେଣୁ ପ୍ରଳୟର ଆବାହନ ପ୍ରତିଷ୍ଠା କରୁ ଆଗାମୀ କାଳର ଇସ୍ତାହାର ।"

ନାଟକଟିରେ ମହାବାତ୍ୟା ସମୟର ଦୁର୍ଦ୍ଦଶା, ମହାବାତ୍ୟା ପରର ଲୋକମାନଙ୍କର ଦୁରବସ୍ଥା, ଅସହାୟତା, ସେମାନଙ୍କ ପାଇଁ ଆସୁଥିବା ସୁଯୋଗ, ସୁବିଧା, ସାହାଯ୍ୟକୁ ଟାଉଟର ରାଜନୈତିକ ନେତାମାନେ ହଡ଼ପ କରିବା, ପୁଣି ଥିଲାବାଲା-ନଥିଲାବାଲାର ସଂଘର୍ଷ, ସର୍ବହରା ନିଜର ହକ୍ ପାଇବା ପାଇଁ ବିଦ୍ରୋହ କରିବାର ଚିନ୍ତାଧାରା ଭିତରେ ନକ୍ସଲ ଚେତନାକୁ ଉପଲବ୍ଧ କରିହୁଏ । ଏଥିରେ ସତିଆର ମୃତ୍ୟୁସହ ସତ୍ୟପ୍ରିୟ, ନ୍ୟାୟବନ୍ତ ଶ୍ରେଣୀର ମୃତ୍ୟୁ, ଦଇତାରୀ ମାଷ୍ଟ୍ରଙ୍କ ଭିତରେ ନକ୍ସଲ ଚିନ୍ତାଧାରା, ପୁଣି ନାଟ୍ୟକାରର ଚରିତ୍ର ଭିତରେ ସ୍ୱୟଂ ବିଜୟ ଶତପଥୀଙ୍କ ଚିନ୍ତାଧାରା ଦେଖିବାକୁ ମିଳେ । ମହାବାତ୍ୟା ପରର ଦୁର୍ଦ୍ଦଶା, ପ୍ରକୃତି ଅପେକ୍ଷା ମଣିଷର ଅନ୍ତଃର୍ଜଗତର ପ୍ରଳୟ ସାମୁଦାୟିକ ଦୁଃଖକୁ ବଢ଼େଇ ଦେଇଛି । କିନ୍ତୁ ସେହି ଦୁଃଖ ଭିତରେ ବି ଧ୍ୱଂସର ଆହ୍ୱାନ । ବିଦ୍ରୋହର ସ୍ୱରକୁ ସେଠାରେ ଅନୁଭବ କରିହୁଏ । ତେଣୁ ନାଟକର ଶେଷରେ ଦଇତାରୀ ମାଷ୍ଟ୍ରଙ୍କ ମୁଖରେ ଉଚ୍ଚାରିତ ସଂଳାପରୁ ଏହି ବିଦ୍ରୋହର ସ୍ୱର ଜଣାପଡ଼େ । ଯଥା - "ବେଶ୍ ସେଇଆ ଚାହେଁ ମୁଁ, ପ୍ରଳୟ, ଅନ୍ଧାର ଆସୁ, ଆସୁ ଗୋଟେ ପ୍ରଖର ଝଡ଼, ଧ୍ୱଂସ ହେଉ ଯଦୁବଂଶ । ତାହାହେଲେ ଲେଖାଯିବ କାଳାନ୍ତରର ଭାଷ୍ୟ, ଆଗାମୀ ଯୁଗର ଇତିହାସ । ମୁଁ ଏବେ ଯେଉଁ ପଥ ବାଛି ନେଇଛି ତାହା କଣ୍ଟକିତ । ତାହା ପ୍ରଚଳିତ ବ୍ୟବସ୍ଥାର ଆଇନ୍‌କାନୁନ୍‌ର ବିରୋଧୀ । କିନ୍ତୁ ମୋ ଅନୁଭବ ମତେ ଏଇଆ କରିଦେଇଛି... ହଁ ଗୋଟେ ଆତଙ୍କ ଆଉ ଅରାଜକତାର ରାସ୍ତା ମତେ ଦେଖେଇଛି । ମୃତ୍ୟୁ ପର୍ଯ୍ୟନ୍ତ ମୁଁ ତାକୁ ବରିନେବି ନାଟ୍ୟକାର, ନହେଲେ ଉପାୟ ନାହିଁ ... ଉପାୟ ନାହିଁ । ପ୍ରଳୟ ପରେ ... ଆହୁରି ପ୍ରଳୟ ।"

ପ୍ରଳୟ ପରବର୍ତ୍ତୀକାଳୀନ ସମାଜର ଅଭାବବୋଧ, ଦୁର୍ଦ୍ଦଶା, କଷ୍ଟର ସାମୁଦାୟିକ ଦୁଃଖ ଏକ ବୃହତ୍ତର ପରିଧିରେ ସୋସିଆଲ୍ ଟ୍ରାଜେଡ଼ି ସୃଷ୍ଟି କରିଛି । ଏଥିରେ ଭାଙ୍ଗି ଯାଇଛି ସମାଜର ମୂଲ୍ୟବୋଧ, ଭୁଷୁଡ଼ି ପଡ଼ିଛି ଶୃଙ୍ଖଳା, ବିପର୍ଯ୍ୟସ୍ତ ହୋଇଛି ଜୀବନ । ଏହାଠାରୁ ବଳି ଦୁଃଖ ଆଉ କ'ଣ ଥାଇପାରେ ?

୨୦୧୧ ମସିହା ପୂଜାସଂଖ୍ୟା 'ବର୍ତ୍ତିକା' ପତ୍ରିକାରେ ପ୍ରକାଶିତ ଓ 'ତ୍ରିନେତ୍ର' ଥିଏଟର ଗ୍ରୁପ ଦ୍ୱାରା ମଞ୍ଚସ୍ଥ ନାଟ୍ୟକାର ଶତପଥୀଙ୍କର ଏକ ବହୁ ଚର୍ଚ୍ଚିତ ନାଟକ ହେଉଛି 'କୋକୁଆ' ।

ବିସ୍ଥାପନ ଯେଉଁ ସମସ୍ୟା ଜନଜୀବନପାଇଁ ଆଣିଛି ତା'ରି ଉପରେ ଆଧାରିତ ଉକ୍ତ ନାଟକଟି । ଏହା ସହିତ ସଂଯୁକ୍ତ ହୋଇଛି ସମାଜ ଜୀବନରେ ଭୟ ଓ ବିଭୀଷିକା ଆଣିଥିବା ସାଂପ୍ରତିକ କାଳର ନକ୍ସଲ ସମସ୍ୟା ।

ମୋଟ ଉପରେ କହିବାକୁ ଗଲେ, ବିଜୟ କୁମାର ଶତପଥୀଙ୍କ ନାଟକରେ ସୂର୍ଯ୍ୟୋଦୟରୁ ପ୍ରଳୟ ପୁଣି ରକ୍ତର ସ୍ୱାକ୍ଷର ଭିତରେ ଆମେ ଅନୁଭବ କରୁ ମୂଲ୍ୟବୋଧର ମୃତ୍ୟୁ, ଆଦର୍ଶର ହତ୍ୟା, ସତ୍ୟର କଣ୍ଠରୋଧ । ସାଧାରଣ ଜନତାର ପ୍ରତିଷ୍ଠା ପାଇଁ ଉଠୁଥିବା ସ୍ୱରକୁ ଦମନ କରିବାର ଉଦ୍ଦେଶ୍ୟ ଭିତରେ ସମାଜର ବୃହତ୍ତର ଦୁଃଖକୁ ହୃଦୟଙ୍ଗମ କରିହୁଏ । ଡ. ଶତପଥୀଙ୍କ ନାଟକ ସମ୍ପର୍କରେ ଏତିକି କୁହାଯାଇପାରେ ଯେ, "ସତ୍ୟର ସାମନା କରି ପ୍ରତିବାଦର ସ୍ୱର ଉଚ୍ଚାରଣ କରି ପୁଣି ଦୃଢ଼ ଆତ୍ମପ୍ରତ୍ୟୟର ସହିତ ତାଙ୍କ ନାଟକର ଚରିତ୍ରମାନେ ପ୍ରତିପକ୍ଷ ସହିତ ଯେପରି ଲଢ଼ନ୍ତି, ସେଥିରୁ ସେମାନେ ମନେ ହୁଅନ୍ତି ଯେ, ସେମାନେ ଯେକୌଣସି ମୂଲ୍ୟ ଦେବାପାଇଁ ପ୍ରସ୍ତୁତ ହୋଇଛନ୍ତି - ଏପରିକି ସେମାନଙ୍କର ବହୁମୂଲ୍ୟ ଜୀବନ ମଧ୍ୟ । ସେମାନେ ମୃତ୍ୟୁବରଣ କଲେ ମଧ୍ୟ ଏହା ହୋଇଥାଏ ଜଣେ ବିପ୍ଳବୀର ସ୍ୱର୍ଦ୍ଧିତ ମୃତ୍ୟୁ ।"

ଗୋଟିଏ ସମାଜର ସମଗ୍ର ଦୁଃଖକୁ ରୂପ ଦେବାର ପ୍ରୟାସରେ ଜୀବନ କ୍ଷେତ୍ରରେ କେତେ ଯେ ଟ୍ରାଜିକ୍ ପରିବେଶ ସହ ନାଟ୍ୟକାର ଡ. ଶତପଥୀ ଆସିଛନ୍ତି, ସେକଥା କେବଳ ସେ ହିଁ ଜାଣନ୍ତି, ତାଙ୍କ ନାଟକ ସଂପର୍କରେ ଅନୁଶୀଳନ କଲାବେଳେ ମନେହୁଏ, ବ୍ୟକ୍ତିଗତ ଦୁଃଖଠାରୁ ସାମୁଦାୟିକ ଦୁଃଖ ହେଉଛି ବୃହତ୍ତର ଓ ପରିବ୍ୟାପ୍ତ ।

ଏହି ନାଟ୍ୟସ୍ରଷ୍ଟାଙ୍କ ସୃଷ୍ଟିକୁ ଆକଳନ କରିବା ବଡ଼ ଜଟିଳ । ଯେତେ ଚେଷ୍ଟା କଲେବି ତାଙ୍କ କୃତିର ଗୋଟିଏ ପୂର୍ଣ୍ଣାଙ୍ଗ ନିଷ୍କର୍ଷ ବାହାର କରିବା ହୁଏତ କଷ୍ଟକର ହୋଇପଡ଼ିବ । ତେବେ ତାଙ୍କ ନାଟକରୁ ସୋସିଆଲ ଟ୍ରାଜେଡ଼ିର ଏହି ଆକଳନ ଶେଷ ଆକଳନ ନୁହେଁ, ପୁଣି ଘଟିବ ପ୍ରଳୟ, ପୁଣି ଉଦୟ ହେବ ନୂତନ ସୂର୍ଯ୍ୟ... ।



# ମନଗହନର ଅଲିଭାଦାଗ :
# 'ଫସିଲ୍‌ର ନିଦ୍ରାଭଙ୍ଗ'

ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ପୃଥିବୀର ଜଟିଳ ଜୀବନଧାରା ବ୍ୟକ୍ତିବାଦୀ ଭାବପ୍ରବଣତା, ନେତିବାଦୀ ଦୃଷ୍ଟିଭଂଗୀ, ମାନବିକତାବୋଧର ସଙ୍କଟ ପୁଣି ସମାଜ ବ୍ୟବସ୍ଥାର ବିପର୍ଯ୍ୟୟ- ଏସବୁ ଜୀବନକୁ ଅର୍ଥହୀନ କରି ଦେଇଛି । ମଣିଷ ଓ ବିଶ୍ୱର ଅସଂଗତିବୋଧଜନିତ ଏକଲା ମଣିଷର ବ୍ୟକ୍ତି ସ୍ୱାତନ୍ତ୍ର୍ୟ, ଅଭିରୁଚି ଓ ଆବଶ୍ୟକତା ଏବଂ ସାମାଜିକ ବିଚ୍ଛିନ୍ନତାବୋଧର ଉଦ୍‌ଭଟ ଦର୍ଶନ ବିଶ୍ୱସାହିତ୍ୟରେ ନୂତନ ଆନ୍ଦୋଳନ ସୃଷ୍ଟି କରିଛି । ଭାରତୀୟ ସାହିତ୍ୟ ସହ ପ୍ରତ୍ୟେକ ପ୍ରାଦେଶିକ ସାହିତ୍ୟ ଏହି ଧାରାକୁ ଅସ୍ୱୀକାର କରିପାରିନାହାନ୍ତି । ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟ ପ୍ରଚଳିତ ମୂଲ୍ୟବୋଧ ଓ ପରଂପରାକୁ ଅଗ୍ରାହ୍ୟ କରିଦେଇ ପାଶ୍ଚାତ୍ୟ ସାହିତ୍ୟ ଆଡ଼କୁ ଢଳିଯାଇଛି । ଏହି ପରିପ୍ରେକ୍ଷୀରେ ଓଡ଼ିଆ ନାଟକ ପାରଂପାରିକ ବ୍ୟବସାୟିକ ରଙ୍ଗମଞ୍ଚକୁ ପରିହାର କରି ପରୀକ୍ଷା-ନିରୀକ୍ଷା ଭିତ୍ତିରେ ନବନାଟ୍ୟ ଆନ୍ଦୋଳନକୁ ସ୍ୱାଗତ କରିଛି । ପ୍ରାୟ ତିନିଦଶନ୍ଧି ଧରି ଏହି ଧାରା ଓଡ଼ିଆ ନାଟକରେ ପରିଲକ୍ଷିତ ହୋଇଛି । ସାମାଜିକ ସମସ୍ୟା ଓ ବ୍ୟକ୍ତିସତ୍ତାର ଦ୍ୱନ୍ଦ୍ୱାତ୍ମକ ସ୍ଥିତି ଭିତରେ ସର୍ବକାଳୀନ ଜୀବନବାଦୀ ସତ୍ୟକୁ ଆଶ୍ରୟ କରି ହତାଶା-ନିଃସଂଗତା, ଅଚରିତାର୍ଥ ବାସନା ଓ ଏକଲାପଣ ଆଧାରରେ ମଣିଷର ଅସଂଗତି ଓ ବିଶୃଙ୍ଖଳ ଜୀବନର ପରିପ୍ରକାଶ ଏହି ସମୟର ନାଟକରେ ଦୃଶ୍ୟମାନ ହୋଇଛି ।

ବିଂଶ ଶତକର ସପ୍ତମ ଦଶନ୍ଧିର ଆଦ୍ୟଭାଗ ଓଡ଼ିଆ ନାଟକ ମନୋରଂଜନ ଦାସଙ୍କ ନାଟ୍ୟଶୈଳୀ ଦ୍ୱାରା ସ୍ୱତନ୍ତ୍ର ପରିଚିତ ହାସଲ କରିସାରିଥିଲା । ମନୋରଂଜନଙ୍କ ସମକାଳୀନ ନାଟ୍ୟସ୍ରଷ୍ଟା ବିଜୟ ମିଶ୍ର, କାର୍ତ୍ତିକ ଚନ୍ଦ୍ର ରଥ, ରମେଶ ପ୍ରସାଦ ପାଣିଗ୍ରାହୀ, ବିଶ୍ୱଜିତ୍ ଦାସ, ରତ୍ନାକର ଚଇନି ପ୍ରମୁଖ ଏହି ସମୟ ବେଳକୁ ଜଣେ ଜଣେ ଦକ୍ଷ ନାଟ୍ୟକାର ଭାବେ ନିଜକୁ ପ୍ରମାଣିତ କରିସାରିଥିଲେ । ପୂର୍ବସୂରୀଙ୍କ ଏହି ଚଲାପଥରେ ସେଦିନ ତରୁଣ ନାଟ୍ୟକାର ବିଜୟ କୁମାର ଶତପଥୀ ପାଦରଖି ନାଟକ ରଚନାର ଅୟମାରମ୍ଭ କରିଛନ୍ତି । ତାଙ୍କ ରଚିତ ପ୍ରଥମ ନାଟକ 'ଫସିଲ୍‌ର ନିଦ୍ରାଭଙ୍ଗ' ରଚିତ ହୋଇଛି ୧୯୭୨ ମସିହାରେ । ଏହି ନାଟକ ରଚନା କରିବା ସମୟରେ ନାଟ୍ୟକାର ସ୍ନାତକୋତ୍ତର ଶ୍ରେଣୀର ଛାତ୍ର । ରେଭେନ୍‌ସା କଲେଜର

ଅଡ଼ିଟୋରିୟମରେ ୧୯୭୪ ମସିହାରେ ଏହି ନାଟକ ପରିବେଷିତ ହେବା ସହ ନାଟ୍ୟକାର ବିଜୟ କୁମାରଙ୍କ ପାଇଁ ନାଟକ ରଚନା କରିବାର ମାର୍ଗଟିଏ ତିଆରି ହୋଇସାରିଥିଲା । ଜଣେ ତରୁଣର ଦୃଷ୍ଟିରେ ସମାଜ-ଜୀବନ-ସଂସାରର ପରିଧି ବା କେତେ ? ତଥାପି ତାରୁଣ୍ୟର ଦୃଷ୍ଟିଭଂଗୀ ନେଇ ବିଜୟ କୁମାର ଶତପଥୀ 'ଫସିଲ୍‌ର ନିଦ୍ରାଭଙ୍ଗ' ଭଳି ଯେଉଁ ନାଟକ ରଚନା କରିଥିଲେ ସେଥିରେ ଜଟିଳ ମନସ୍ତତ୍ତ୍ୱର ଚିତ୍ର ପ୍ରତିଫଳିତ ହୋଇଥିଲା । ତରୁଣ ନାଟ୍ୟକାରଙ୍କ ଏହି ନାଟକ ସଂପର୍କରେ ପ୍ରଖ୍ୟାତ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥ ମତ ରଖିଥିଲେ, "ଆଧୁନିକ ନାଟକ ହେଉଛି ନିଜର ପରିପୂର୍ଣ୍ଣତା ମଧ୍ୟରେ ମଣିଷର ପରିସ୍ଥିତିର ଉଦ୍‌ଘାଟନ । ଆଧୁନିକ ମଣିଷର ନିଜସ୍ୱ ସମସ୍ୟାର ଉପସ୍ଥାପନ, ତା'ର ସ୍ୱପ୍ନ ଓ ସଂଗ୍ରାମର ନିଜସ୍ୱ ଚିତ୍ରାଙ୍କନ । × × × ଆଧୁନିକ ନାଟକର ଚରମ ଉତ୍କର୍ଷତା ଯେତେବେଳେ ଦର୍ଶକ ନିଜର ଆନନ୍ଦ-ଯନ୍ତ୍ରଣା, ସ୍ୱପ୍ନ-ସଂଘର୍ଷ ତଥା ବ୍ୟକ୍ତିତ୍ୱସତ୍ତାକୁ ଚରିତ୍ର ମଧ୍ୟରେ ଉପଲବ୍ଧି କରିବସେ, ତା' ସହିତ ଏକୀଭୂତ ହୋଇପଡ଼େ । ପୁନଶ୍ଚ ରଙ୍ଗମଞ୍ଚ ଓ ପ୍ରେକ୍ଷାଳୟ ମଧ୍ୟରେ ରହିଥିବା ବ୍ୟବଧାନର ଦୂରତ୍ୱ ସଂକୁଚିତ ହୋଇଆସେ । ଏହି ପରିପ୍ରେକ୍ଷୀରେ ଉଦ୍ଦୀପ୍ତ ନାଟ୍ୟକାର ଅଧ୍ୟାପକ ବିଜୟ କୁମାର ଶତପଥୀଙ୍କ ଛୋଟ ନାଟକ ଦୁଇଟି 'ଫସିଲ୍‌ର ନିଦ୍ରାଭଙ୍ଗ' ଓ 'ବିବର୍ଣ୍ଣ ସହର' ଅଭିନନ୍ଦନୀୟ କୃତିତ୍ୱ । ତାଙ୍କ ନାଟକରେ ଜୀବନ ଅଛି, ଜିଜ୍ଞାସା ରହିଛି, ଅନୁଭୂତି ରହିଛି, ଚିନ୍ତା ଅଛି, ଚେତନା ରହିଛି ଏବଂ ରହିଛି ପ୍ରଚୁର ସାର୍ଥକତା ଓ ପ୍ରଚଣ୍ଡ ସମ୍ଭାବନା ।" ('ପୂର୍ବରଙ୍ଗ', ଫସିଲ୍‌ର ନିଦ୍ରାଭଙ୍ଗ)

'ଫସିଲ୍‌ର ନିଦ୍ରାଭଙ୍ଗ' ନାଟକରେ ମଣିଷର ଅସୁସ୍ଥ ଅବଚେତନର ସ୍ୱରୂପ ଉଦ୍‌ଘାଟିତ ହୋଇଛି । ପାଶ୍ଚାତ୍ୟ ଚିନ୍ତାନାୟକ ଫ୍ରୟେଡ୍, ୟଙ୍ଗ୍ ପ୍ରମୁଖ ମଣିଷ ମନର ଅବଚେତନକୁ ଗୁରୁତ୍ୱ ଦେଇ ଯେଉଁ ମନସ୍ତାତ୍ତ୍ୱିକ ଦିଗର ଉନ୍ମୋଚନ କରିଛନ୍ତି, ତାହା ପ୍ରତ୍ୟେକ ଜାତୀୟ, ପ୍ରାଦେଶିକ ସାହିତ୍ୟରେ ପ୍ରତିଫଳିତ ହୋଇଛି । ଅନୁରୂପ ଭାବେ ଏହି ନାଟକରେ ମନଗହନର ଅଦେଖା ଅସ୍ପଷ୍ଟ ଦିଗଟି ପ୍ରତୀକାତ୍ମକ ଭାବେ ଦୃଶ୍ୟମାନ ହୋଇଛି । ପ୍ରତାରଣା ଓ ପ୍ରେମର ବିଫଳତା ଜଣେ ବ୍ୟକ୍ତିର ମନରେ କିଭଳି ଅଲିଭା ଦାଗ ହୋଇ ରହିଯାଇଛି, ତାହା ଏହି ନାଟକରୁ ଦର୍ଶକ ଲକ୍ଷ୍ୟ କରିପାରେ । ମାତ୍ର ପାଞ୍ଚଜଣ ପୁରୁଷ ଚରିତ୍ରଙ୍କୁ ନେଇ ନାଟକର ପରିକଳ୍ପନା ହୋଇଛି । ଆରମ୍ଭରେ ଦୃଶ୍ୟମାନ ହୋଇଛି ନୀଳ ଓ ସାମାନ୍ୟ ନିଷ୍ପ୍ରଭ ଆଲୋକ ମଧ୍ୟରେ ଡ୍ରଇଂ ରୁମ୍‌ର ଦୃଶ୍ୟ । ଆସବାବପତ୍ର ଭିତରେ ଦୁଇଟି ପାଖାପାଖି ସୋଫାସେଟ୍, ପୁଣି ସୋଫାସେଟ୍ ଉପରେ ଶୟନରତ ଜଣେ ମୁମୂର୍ଷୁ ବ୍ୟକ୍ତିଙ୍କୁ ଦେଖିବାକୁ ମିଳେ । ରୁମ୍‌ର ଗୋଟିଏ କଡ଼େ ଟେବୁଲ୍, ଟେବୁଲ୍‌ଟି ଜଣେ ଅଧ୍ୟୟନରତ ବ୍ୟକ୍ତିଙ୍କର ପିପଠିସାର ପ୍ରମାଣ ଦିଏ । ନୀରବତା ଭିତରେ ଅତୀତର ସ୍ମୃତି ଭିତରେ ହଜିଯାଇଥିବା ବୟସ୍କ ଦର୍ଶନ ଅଧ୍ୟାପକ ରାଜେନ୍ ବାବୁଙ୍କ ନୀରବତା ଭଙ୍ଗକରି ସୂତ୍ରଧର କବିତା ଆବୃତ୍ତି କରିଛି । ସୂତ୍ରଧରର ଡାକରେ ପ୍ରକୃତିସ୍ଥ ହୋଇ ରାଜେନ୍ ବାବୁ ଯେତେବେଳେ ତା'ସହିତ ବାର୍ତ୍ତାଳାପ କରିଛନ୍ତି,

ସେତେବେଳେ ତାଙ୍କର ଅସଫଳ ଇଚ୍ଛାଗୁଡ଼ିକ ମୂର୍ତ୍ତିମନ୍ତ ହୋଇଉଠିଛି । ନିଃସଙ୍ଗତା-ନିର୍ଜନତା ଓ ଏକଲାପଣ ଭିତରେ ସନ୍ତୁଳି ହେଉଥିବା ରାଜେନ୍ ବାବୁଙ୍କର ଅତୀତ ପ୍ରତି ଦୁର୍ବଳତା ପୁଣି ଅତୀତ ପାଖରେ ନିଜର ଅସାରତାକୁ ସ୍ୱୀକାର କରିବା ଭିତରେ ତାଙ୍କ ମନସ୍ତାତ୍ତ୍ୱିକ ଦିଗଟି ଦର୍ଶକଙ୍କ ସାମ୍ନାରେ ବେଳକୁବେଳ ଖୋଲିଯାଇଛି ।

"ମୁଁ ... (ଛେପଢୋକି) ମୋର ମଧ୍ୟ ମୃତ୍ୟୁ ହୋଇଛି । ମୁଁ ଏହି ମୁହୂର୍ତ୍ତରେ ବଞ୍ଚିଛି । ଆଗାମୀ ମୁହୂର୍ତ୍ତ ପାଇଁ ମୁଁ ବଞ୍ଚିବି କି ନାହିଁ ଜାଣେନା । ଆଉ ଅତୀତର ସେ ମୁହୂର୍ତ୍ତ ମୋ ପାଇଁ ମୃତ । ମୁଁ ମଧ୍ୟ ଅତୀତ ପାଇଁ ମୃତ ।" (ଫସିଲ୍‌ର ନିଦ୍ରାଭଙ୍ଗ, ପୃ.୩)

ନାଟକର ପ୍ରଥମଦୃଶ୍ୟରେ ସୂତ୍ରଧର ରାଜେନ୍‌କୁ ଅତୀତର କୁହୁଡ଼ି ଭିତରୁ ବାହାରକୁ ଆଣିବାର ପ୍ରୟାସ କରିଛନ୍ତି । ସେଥିପାଇଁ ତାଙ୍କ ଅସୁସ୍ଥ ମନର ପ୍ରତୀକ ଭାବେ ସେଠାରେ ଜଣେ ମୁମୂର୍ଷୁ ବ୍ୟକ୍ତିକୁ ଉପସ୍ଥାପନ କରାଯାଇଛି । ଏହି ବ୍ୟକ୍ତି ଯନ୍ତ୍ରଣା କାତର ପୁଣି ଯେ କୌଣସି ମୁହୂର୍ତ୍ତରେ ମୃତ୍ୟୁବରଣ କରିପାରେ । ଏହି ପର୍ଯ୍ୟାୟରେ ନିଃସଙ୍ଗ - ଅସହାୟ ରାଜେନ୍‌ଙ୍କ ମନ ଗହୀରରେ ଥିବା ଫସିଲ୍‌ମାନଙ୍କର ନିଦ୍ରାଭଙ୍ଗର ପର୍ବ ଆରମ୍ଭ ହୋଇଛି ।

ନାଟକର ଦ୍ୱିତୀୟ ଦୃଶ୍ୟ ରାଜେନ୍‌ଙ୍କ ଅତୀତ ସ୍ମୃତିଚାରଣର ଗୁରୁତ୍ୱପୂର୍ଣ୍ଣ ଦିଗ ଭାବେ ବିବେଚିତ ହୋଇଛି । ରାଜେନ୍‌ଙ୍କ ଅତୀତର ସେଇ ମର୍ମଦାହୀ ସ୍ମୃତିକୁ ଏହି ପର୍ଯ୍ୟାୟରେ ଅବତାରଣା କରାଯାଇଛି । ଏକଦା ଯେଉଁ ସ୍ୱପ୍ନା ମହାନ୍ତିକୁ ଯୁବକ ରାଜେନ୍ ଭଲ ପାଉଥିଲେ, ଯେଉଁ ସ୍ୱପ୍ନା ରାଜେନ୍‌ଙ୍କ ପ୍ରେରଣାଦାତ୍ରୀ ଥିଲା, ସେଇ ସ୍ୱପ୍ନାକୁ ତାଙ୍କର ବନ୍ଧୁ ପ୍ରଦୀପ ବାହାହେବା ଶୁଣି ସେ ଘୋର ମାନସିକ ଆଘାତ ପାଇଛନ୍ତି । ତାଙ୍କର ଅସଫଳତାକୁ ସେ ସ୍ୱୀକାର କରିଛନ୍ତି ।

ପ୍ରଦୀପ : ମୋ ପାଇଁ ମନ ମୂଲ୍ୟହୀନ, ମୁଁ ମାନସିକ ସ୍ତରରେ ପ୍ରେମକୁ ଘୃଣା କରେ । ଆଗେ ଦେହ ତା'ପରେ ମନ ।

ରାଜେନ୍ : ଦେହ ଓ ମନଦେଇ ମଧ୍ୟ ଜଣେ ଜଣକୁ ଭଲପାଇପାରେ ।

ପ୍ରଦୀପ : ତୁ ହାରି ଯିବୁ ।

ରାଜେନ୍ : ଦୁଃଖ ନାହିଁ । ହାରିଯିବାର ଗ୍ଳାନିରେ ଜୀବନର ଚରମ ସୁଖ । ଜୀବନରେ ମୁଁ ବହୁତ ଥର ହାରିଛି ପ୍ରଦୀପ । ପରାଜୟର ଦୁଃଖରେ ମୁଁ ଦୁଃଖିତ ନୁହେଁ । ବିଜୟର ସୁଖରେ ମଧ୍ୟ ଆତ୍ମହରା ନୁହେଁ ।" (ପୃ.୯)

ସ୍ୱପ୍ନା ମହାନ୍ତିର ବସ୍ତୁବାଦୀ - ଜଡ଼ବାଦୀ ଚିନ୍ତାଧାରା, କବିପ୍ରାଣ - ଦର୍ଶନ ଅଧ୍ୟାପକ ରାଜେନ୍‌ଙ୍କ ମନକୁ ହୃଦୟକୁ ଭାଙ୍ଗି ଚୂନାଚୂନା କରିଦେଇଛି । ସ୍ୱପ୍ନାର ପ୍ରତାରଣା ରାଜେନ୍‌କୁ ବ୍ୟଥିତ କରିଛି ଯାହା ଦ୍ୱିତୀୟ ଦୃଶ୍ୟରେ ପରିଲକ୍ଷିତ ହୋଇଛି ।

ତୃତୀୟ ଓ ଚତୁର୍ଥ ଦୃଶ୍ୟରେ ରାଜେନଙ୍କ ମନର ଅତଳ ଗହ୍ୱର ପରସ୍ତ ପରସ୍ତ ହୋଇ ଖୋଲିଛି । ବିଶେଷ କରି ତୃତୀୟ ଦୃଶ୍ୟର ମୁମୂର୍ଷୁ ବ୍ୟକ୍ତିଟି ସୋଫାର ଗୋଟିଏ କଣକୁ ଢଳି ପଡଥବାବେଳେ ଓ ତା'ର ନିଃଶ୍ୱାସ-ପ୍ରଶ୍ୱାସ ବି ପ୍ରଖର ଥିବାବେଳେ ପରଦା ପଛରୁ ସ୍ୱପ୍ନାର

ତାକ ରାଜେନ୍‌ଙ୍କ ମନକୁ ବାରମ୍ବାର ବିଚଳିତ କରିଛି । ସେ ସ୍ୱପ୍ନାର ସ୍ମୃତିଠାରୁ ଆଦୌ ନିଜକୁ ମୁକ୍ତ କରିପାରିନାହାନ୍ତି । ନାଟକର ପଞ୍ଚମ ତଥା ଶେଷ ଦୃଶ୍ୟକୁ ନାଟ୍ୟକାର ଟ୍ରାଜିକ୍‌ଧର୍ମୀ କରିଛନ୍ତି । ରାଜେନ୍‌ଙ୍କ ମନ ଭିତରେ ସ୍ୱପ୍ନ ସହିତ ବାସ୍ତବତାର ଲୁଚକାଳି ଖେଳ ଭିତରେ ଅତୀତଟା ହୃଦୟ ମନ୍ଥି ଚାଲିଛି ଓ ଏହା ତାଙ୍କୁ ମ୍ରିୟମାଣ କରି ଦେଇଛି । ବିଶ୍ୱଜିତ ଯାହାକୁ ଭଲପାଉଥିଲା, ସେ ତାଙ୍କ ପ୍ରେମିକା ସ୍ୱପ୍ନାର ଝିଅ କଳ୍ପନା, ସ୍ୱପ୍ନାର ରକ୍ତ କଳ୍ପନା ଦେହରେ ଥିବାରୁ ସେବି ତା'ର ମାଆ ପରି ପ୍ରତାରଣା କରିବ ବୋଲି ରାଜେନ୍ ଯେଉଁ ଆଶଙ୍କା କରିଛି ତାହା ସତ୍ୟରେ ପରିଣତ ହୋଇଛି ।

ବନ୍ଧୁ ପ୍ରଦୀପ ରାଜେନ୍‌ଙ୍କ ପାଖକୁ ଆସି ପୁଣି ବିଶ୍ୱଜିତ ସମ୍ମୁଖରେ କଳ୍ପନାର ବିବାହ କଥା ଘୋଷଣା କରିବା ପରେ ରାଜେନ୍‌ଙ୍କର ହୃଦ୍‌ବୋଧ ହୋଇଛି – "ଏ ସୃଷ୍ଟିରେ କେହି ଯଦି ଅବୋଧ ଜୀବ ଥାଆନ୍ତି ତା'ହେଲେ ଏ ନାରୀଗୁଡ଼ିକ । ସରଳତାର ଓ ନିର୍ବୋଧତାର ମୁଖା ଭିତରେ ଯେଉଁ ଭୟଙ୍କର ଓ କଦର୍ଯ୍ୟ ସ୍ୱରୂପ ରହିଛି ତାହା ସହଜରେ ଜଣା ପଡ଼ିନଥାଏ ।" କଳ୍ପନା ନିଜ ଇଚ୍ଛାରେ କ୍ୟାପ୍‌ଟେନ୍ ସହଜରେ ବିବାହ କରିବା ପ୍ରସଙ୍ଗକୁ ସହଜରେ ବିଶ୍ୱଜିତ୍ ସ୍ୱୀକାର କରିପାରୁନଥିଲା । ରାଜେନଙ୍କର ଆଶଙ୍କା ସତ୍ୟରେ ପରିଣତ ହେବା ପୁଣି ଛାତ୍ର ବିଶ୍ୱଜିତ ଜୀବନରେ ତାଙ୍କ ଜୀବନ ଭଳି ଦୁର୍ଘଟଣା ଘଟିବା ରାଜେନ୍‌ଙ୍କୁ ଅଧିକ ବ୍ୟଥିତ କରିଛି । ଏସବୁ ଭିତରେ ସ୍ୱପ୍ନାର ମୃତ୍ୟୁ ସମ୍ପର୍କରେ ପ୍ରଦୀପଠାରୁ ସୂଚନା ପାଇବା ପରେ ରାଜେନ୍ ଯେମିତି ଭାଙ୍ଗି ପଡ଼ିଛନ୍ତି । ପ୍ରଦୀପଙ୍କ ଭଳି ବସ୍ତୁବାଦୀ ମଣିଷକୁ ବାହାହେବା ସତ୍ତ୍ୱେ ବି ସ୍ୱପ୍ନା ସୁଖ ବୋଲି ଯାହାକୁ ଭାବିଛନ୍ତି, ତାହା ମରୀଚିକା ପାଲଟିଯାଇଛି । ସାରା ଜୀବନ ରାଜେନ୍‌ଙ୍କ ଭଲପାଇବାକୁ ଗୋଡ଼ରେ ଆଡେଇ ଦେଇ ପ୍ରତାରଣା କରିବାଟା ସ୍ୱପ୍ନାକୁ ଭିତରେ ଭିତରେ ଜାଳିଦେଇଛି । ସ୍ୱପ୍ନା ଦେଇଥିବା ଚିଠିଟିକୁ ରାଜେନଙ୍କୁ ଦେଇ ପ୍ରଦୀପ ଚାଲିଯିବା ପରେ ବିଶ୍ୱଜିତ୍ ମଧ୍ୟ ପ୍ରଦୀପ ପଛେ ପଛେ ଚାଲିଯାଇଛି । ବିଶ୍ୱଜିତ ଚାଲିଯିବାପରେ ମଞ୍ଚରେ ମୃତ୍ୟୁପରି ନିସ୍ତବ୍ଧତା ଖେଳିଯାଇଛି । ତାରି ଭିତରେ ରାଜେନ୍ ପଢ଼ିଛନ୍ତି ସ୍ୱପ୍ନାଙ୍କ ଚିଠି । ସେ ଚିଠି ଭିତରେ ରହିଛି ସ୍ୱପ୍ନାଙ୍କର ଅନୁତାପ ଓ ଅଭିମାନ । ଚିଠିଟି ଥିଲା ଏହିପରି –

ରାଜେନ୍,

ତୁମେ ଏ ଚିଠିଟା ପାଇବା ପୂର୍ବରୁ ମୁଁ ଏ ପୃଥିବୀରୁ ବିଦାୟ ନେଇଥିବି । ମୋ ଚିଠି ପଢ଼ି ମୋତେ ଘୃଣା କରିବାର । ଭାବିପାର ମୁଁ କେତେ ନିର୍ଲ୍ଲଜ । ରାଜେନ୍, ତୁମର ପ୍ରତିଭାକୁ ମୁଁ କେବେ ଅସମ୍ମାନ କରିନାହିଁ । ତୁମ ପ୍ରତିଭା ଭିତରେ ଲୁଚିରହିଥିବା ମଣିଷକୁ ମୁଁ ପୂଜା କରି ଆସିଛି । ରକ୍ତମାଂସର ରାଜେନ୍‌ଠାରୁ ସେ କେତେ ଉଚ୍ଚରେ । ପ୍ରଦୀପକୁ ବିବାହ ଦେବା ପାଇଁ ମୁଁ ମୋର ସମ୍ମତି ଦେଇଥିଲି । କାରଣ ନାରୀ ବାସ୍ତବବାଦୀ, ତା ନିକଟରେ ବଡ଼ ଅର୍ଥ, ପ୍ରତିପତ୍ତି । ପ୍ରଦୀପ ଏ ସବୁରେ ଊଣା ନଥିଲା । ମାତ୍ର ବିବାହ ପରେ ମୁଁ କାହିଁକି ସୁଖୀ

ହୋଇପାରିଲି ନାହିଁ । ମନେ ହେଲା ସତେ ଯେମିତି ଗୋଟିଏ ପ୍ରତିଭାଧର ବ୍ୟକ୍ତିର ଜୀବନ ଧ୍ୱଂସ କରିଦେଇଛି, ଆଉ ସେହି ଧ୍ୱଂସର ନିଆଁରେ ମୁଁ ଛଟପଟ ହେଉଛି । ବିଭା ହେବାପରେ ବୁଝିଲି କେବଳ ଅର୍ଥ ପ୍ରାଚୁର୍ଯ୍ୟ ଜୀବନର ବଡ଼କଥା ନୁହେଁ । ମୁଁ ଖୋଜୁଥିଲି ହୃଦୟ । ସେ କ'ଣ ମିଳିଲା ରାଜେନ୍ । ମଣିଷ ଯାହା ଋହେଁ ତା ଯଦି ପାଉଥାନ୍ତା, ତେବେ ଓଲଟ ପାଲଟ କାହିଁକି ହୁଅନ୍ତା । ଶେଷରେ ତୁମକୁ ମୋର ଅନୁରୋଧ, ବିବାହକର । କେବଳ ଗୋଟିଏ ଖିଆଲରେ ଭାସି ଜୀବନକୁ ନଷ୍ଟ କରିଦିଅନା ।" (ପୃ.୨୭-୨୮) ଚିଠି ପଢ଼ିସାରି ରାଜେନ୍ ଅସହାୟ ହୋଇପଡୁଥିବାବେଳେ ମଞ୍ଚ ଅନ୍ଧକାର ହୋଇଛି ।

ଗୋଟିଏ ସଫଳ ମନସ୍ତାତ୍ତ୍ୱିକ ଛୋଟ ନାଟକ ଭାବରେ 'ଫସିଲ୍‌ର ନିଦ୍ରାଭଙ୍ଗ' ନାଟକକୁ ସ୍ୱୀକାର କରାଯାଇପାରେ । ପ୍ରେମର ବିଫଳତା କରୁଣ ଭାବାବେଗ ସୃଷ୍ଟି କରିବା ସହ ସୂତ୍ରଧାର ଓ ମୁମୂର୍ଷୁ ବ୍ୟକ୍ତି ସ୍ଥିତିବାଦୀ ଦର୍ଶନର ପ୍ରଲେପ ନେଇ ଦର୍ଶକଙ୍କ ପାଖରେ ଉପସ୍ଥିତ ହୋଇଛନ୍ତି । ମନର ଅତଳ ଗହ୍ୱରରେ ଅତୀତ କେମିତି ପ୍ରାଣବନ୍ତ ହୁଏ ତାହା ରାଜେନ୍‌ଙ୍କ ପାଖରେ ଲକ୍ଷ୍ୟ କରାଯାଇପାରେ । ତାଙ୍କ ମନଜଗତର ଭିତରେ ଥିବା ଫସିଲ୍‌ମାନଙ୍କର ନିଦ୍ରାଭଙ୍ଗକୁ ନାଟ୍ୟକାର ବେଶ୍ ପ୍ରତୀକାତ୍ମକ ଭାବେ ଦର୍ଶାଇଛନ୍ତି । ନାଟକଟି ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ ତରୁଣ ସମୟର ଲେଖା ପୁଣି ସପ୍ତମ ଦଶନ୍ଧିର ଆଦ୍ୟଭାଗରେ ରଚନା ହୋଇଥିବାରୁ ତାହା ସ୍ଥିତିବାଦୀ ଦର୍ଶନ ଆଧାରିତ ହୋଇଛି ।

ନାଟକରେ ଅସ୍ପଷ୍ଟ ନୀଳ ଆଲୋକର ବ୍ୟବହାର ପୁଣି ଗୋଟିଏ ସେଟ୍‌ରେ ଏହାର ମଞ୍ଚାୟନ ସହ ଗୋଟିଏ ପରିବେଶ ଭିତରେ ଏହି ନାଟକର ଗତିଶୀଳତାକୁ ଲକ୍ଷ୍ୟ କରାଯାଇପାରେ । ନାଟକର ସଂଳାପଗୁଡ଼ିକ ପ୍ରାୟତଃ ଟେଲିଗ୍ରାଫିକ୍ ହେବା ସହ ସ୍ୱଳ୍ପ ପରିଧି ଭିତରେ ଉପସ୍ଥାପିତ ହୋଇଛି । କୌଣସି ନାରୀ ଚରିତ୍ରକୁ ମଞ୍ଚରେ ପ୍ରତ୍ୟକ୍ଷ ଭାବେ ଅବତାରଣା କରିବାର ଆବଶ୍ୟକତା ପଡ଼ି ନାହିଁ । କେବଳ ତୃତୀୟ ଦୃଶ୍ୟରେ ପରଦା ପଛରୁ ସ୍ୱପ୍ନାର କଣ୍ଠସ୍ୱର ଭାସିଆସିଛି । ସ୍ୱପ୍ନା କାହାଣୀର କେନ୍ଦ୍ରୀୟ ଚରିତ୍ର ହେଲେ ବି ମଞ୍ଚରେ ତା'ର ଆବିର୍ଭାବ ଘଟିନାହିଁ ।

ଏ ରୂପେ କହିବାକୁ ଗଲେ, ସ୍ୱଳ୍ପ ସମୟ, କ୍ଷୁଦ୍ର ପରିସର, ସ୍ୱଳ୍ପ ଚରିତ୍ର, ସଂକ୍ଷିପ୍ତ-ସୂଚନାତ୍ମକ ସଂଳାପ, ବ୍ୟକ୍ତିମୁଖୀ ଦୃଷ୍ଟିକୋଣକୁ ଅବଲମ୍ବନ କରି 'ଫସିଲ୍‌ର ନିଦ୍ରାଭଙ୍ଗ' ବ୍ୟକ୍ତି ମନର ଗହନ ଦିଗକୁ ଉଦ୍‌ଘାଟନ କରି ତା'ର ଅବଚେତନ ମନକୁ ଦର୍ଶକଙ୍କ ସମ୍ମୁଖକୁ ଆଣିବାର ଯେଉଁ ସାଫଲ୍ୟ ପାଇଛି, ତାହା ଏହି ନାଟକକୁ ସାର୍ଥକ ମନସ୍ତାତ୍ତ୍ୱିକ ନାଟକର ପରିଚୟ ଦେଇଛି । ପୁଣି ସୂତ୍ରଧର ମୁହଁରେ ଆଧୁନିକ କବିତାର ଆବୃତ୍ତି ଉକ୍ତ ନାଟକରେ ଏକ ବଳିଷ୍ଠ ଓ ନୂତନ ପ୍ରୟୋଗ ।



# ଚେତନାର ଉତ୍ତରଣ ପଥରେ : 'ବିବର୍ଣ୍ଣ ସହର'

ମଣିଷର ମୂଲ୍ୟହୀନ ସ୍ଥିତି, ଅସଂଗତିପୂର୍ଣ୍ଣ ମାନସିକ ଅବସ୍ଥା, ନିରର୍ଥକ ଚେତନା, ନୀତିହୀନ ଆଦର୍ଶ, ଅସହାୟତା ଜନିତ ନାସ୍ତିବୋଧକୁ ନେଇ ବିଂଶ ଶତକର ପଞ୍ଚମରୁ ସପ୍ତମ ଦଶନ୍ଧି ଯାଏଁ ଅନେକ ସାଙ୍କେତିକ ନାଟକ ରଚିତ ହୋଇଛି । ଏହି କ୍ରମରେ ବିଜୟ କୁମାର ଶତପଥୀଙ୍କ ରଚିତ ଦ୍ୱିତୀୟ ନାଟକ 'ବିବର୍ଣ୍ଣ ସହର' (ରଚନାକାଳ - ୧୯୭୬) ସୀମାବଦ୍ଧ ସମାଜ, ମଣିଷର ବାସ୍ତବ ଜୀବନର ପ୍ରଚ୍ଛଦରେ ଥିବା ଅଦୃଶ୍ୟମୋହ, ମାୟା, ନୈରାଶ୍ୟ, ଆସକ୍ତି ଓ ବସ୍ତୁତାନ୍ତ୍ରିକ ଅଭିଳାଷର ପ୍ରକ୍ରିୟାକୁ ମଞ୍ଚରେ ଉପସ୍ଥାପନ କରିଛି । ନାଟ୍ୟକାର ବିଜୟ କୁମାରଙ୍କ ଏହି ଦ୍ୱିତୀୟ ନାଟକ ପ୍ରଥମେ ଗୋଦାବରୀଶ ମହାବିଦ୍ୟାଳୟ ବାଣପୁରରେ ଅଭିନୀତ ହୋଇ ଦର୍ଶକୀୟ ସମର୍ଥନଲାଭ କରିଛି । ମଣିଷର ପରିସ୍ଥିତି ଉଦ୍‌ଘାଟନ ସହିତ ତା'ର ସମସ୍ୟାର ଉପସ୍ଥାପନ ଭିତରେ ସଭ୍ୟତା, ସମାଜର ଧୂଳିସାତ୍ ସ୍ୱପ୍ନ, ବ୍ୟୁହ ମଧ୍ୟରୁ ମୁକୁଳିବାର ପ୍ରୟାସ ନୂତନ ଆଲୋକ ସନ୍ଧାନର ବାର୍ତ୍ତା ଦିଏ । 'ଫସିଲ୍‌ର ନିଦ୍ରାଭଙ୍ଗ' ଓ 'ବିବର୍ଣ୍ଣ ସହର' ଏକତ୍ର ଭାବେ ୧୯୭୮ରେ ପ୍ରକାଶିତ ହୋଇ ଛୋଟ ନାଟକର ଧାରାରେ ସଫଳତାର ନୂତନ ଫର୍ଦ୍ଦ ଯୋଡ଼ିଛି । ନାଟକର ମୁଖବନ୍ଧରେ ଆଲୋଚକ ଡକ୍ଟର କୃଷ୍ଣଚରଣ ବେହେରା ଲେଖିଛନ୍ତି, - "ନାଟକ ଦୁଇଟି ମୋର ମନ ବେଶ୍ ମନଃପୂତ ହୋଇଛି – ବିଶେଷତଃ 'ବିବର୍ଣ୍ଣ ସହର' ଖୁବ୍ ମର୍ମଭେଦୀ ଓ ଚିତ୍ତ ଆଲୋଡ଼ନକାରୀ ହୋଇଉଠିଛି । ଏହି ପ୍ରତୀକଧର୍ମୀ ନାଟକଟିରେ କିଞ୍ଚିତ ପରିମାଣରେ ଉଦ୍ଭଟତା ପ୍ରକାଶ ପାଇଥିଲେ ହେଁ ଏଥିରେ ନାଟ୍ୟକାର ଏକ ନିର୍ଦ୍ଦିଷ୍ଟ ତତ୍ତ୍ୱ ବା ବକ୍ତବ୍ୟ ଚମତ୍କାର ଭାବରେ ଉପସ୍ଥାପିତ କରିପାରିଛନ୍ତି । ଆମ ସାହିତ୍ୟରେ 'ତତ୍ତ୍ୱନାଟକ' ବିଶେଷ ନାହିଁ। ଉଦ୍ଭଟ ନାଟକ ବୋଲି ଯାହା ପ୍ରଚଳିତ ଅଛି, ତହିଁରେ ଗନ୍ଧମାର୍ଦ୍ଦନ ପର୍ବତରେ ବିଶଲ୍ୟକରଣୀ ପରି ତତ୍ତ୍ୱର ଅବସ୍ଥାନ । ତାହାର ସନ୍ଧାନ ପାଇବା ସାଧାରଣଙ୍କ ପକ୍ଷରେ ଏକ ଦୁରୂହବ୍ୟାପାର । କିନ୍ତୁ 'ବିବର୍ଣ୍ଣ ସହର' ନାଟକରେ ଉପସ୍ଥାପିତ ତତ୍ତ୍ୱ ସହଜବୋଧ୍ୟ ଓ ହୃଦୟଗ୍ରାହୀ ।" (ମୁଖବନ୍ଧ - ବିବର୍ଣ୍ଣ ସହର)

ବ୍ୟର୍ଥତା, ନୈରାଶ୍ୟ ଭିତରେ 'ବିବର୍ଣ୍ଣ ସହର' ନାଟକଟି ସମଗ୍ର ମଣିଷର ଚେତନା ଜଗତର ରୁଦ୍ଧ ଦ୍ୱାରକୁ ଉନ୍ମୁକ୍ତ କରିଦେଇଛି । ମଣିଷ ଭିତରୁ ଚେତନାର ଉତ୍ତରଣ କରିବାର ପ୍ରୟାସ କରିଛି । ମାତ୍ର ପାଞ୍ଚଜଣ ପୁରୁଷ ଚରିତ୍ରକୁ ଆଧାର କରି ନାଟକଟି ଉପସ୍ଥାପିତ । ସ୍ୱଚ୍ଛ

ଚରିତ୍ର, ସ୍ୱଳ୍ପ ଅବଧି, ସଂକ୍ଷିପ୍ତ ବିଷୟବସ୍ତୁ ଭିତରେ ଜଟିଳ ସମସ୍ୟା ନାଟକ ଭିତରେ ଆତ୍ମପ୍ରକାଶ କରିଛି, ଯାହା ପୁଣି ଅତ୍ୟନ୍ତ ରହସ୍ୟମୟ ଆଉ ଆଶ୍ଚର୍ଯ୍ୟଜନକ । ବ୍ୟକ୍ତିଜୀବନର ନୈରାଶ୍ୟ ପରିବର୍ତ୍ତେ ଯନ୍ତ୍ରଣା ଗ୍ରସ୍ତ, ପୀଡ଼ିତ ସଭ୍ୟତା ସମାଜ ଓ ମଣିଷର ଚିତ୍ରଦେଇ ତା' ମଧ୍ୟରୁ ଏକ ଉତ୍ତରଣ ଆଣିବାର ପ୍ରଚେଷ୍ଟା ଏହି ନାଟକ ଭିତରେ ରହିଛି ।

ନାଟକର ପ୍ରଥମଦୃଶ୍ୟ ତଥା ପ୍ରାରମ୍ଭରେ ଦୃଶ୍ୟମାନ ହୋଇଛି ସହର ମଧ୍ୟରେ ଅବସ୍ଥିତ ଭଗ୍ନଗୃହର ଦୃଶ୍ୟ, ଯାହା ପରିତ୍ୟକ୍ତ ପୁଣି ତାର ପରିବେଶ ଅପରିଷ୍କୃତ ଓ ଆବର୍ଜନାମୟ । ଦର୍ଶକ ଗ୍ୟାଲେରୀ ମଝିରୁ ଦି'ଭାଗ କରି ମଞ୍ଚ ପର୍ଯ୍ୟନ୍ତ ରାସ୍ତାଟିଏ ଲମ୍ବିଯାଇଛି । ପୁନଶ୍ଚ ଭଗ୍ନଗୃହରେ ଅର୍ଥାତ୍ ମଞ୍ଚର ମଧ୍ୟଭାଗରେ ଝୁଲୁଥିବା ଖଣ୍ଡା ବେଶ୍ ଉତ୍କଣ୍ଠା ସୃଷ୍ଟି କରିଛି । ଦୃଶ୍ୟ ଆରମ୍ଭରେ ସହରର ବୃଦ୍ଧ ବ୍ୟକ୍ତି ବ୍ୟର୍ଥତା ଭିତରେ ଅବସନ୍ନ ଟୁରିଷ୍ଟ୍‌କୁ ଭେଟିଛନ୍ତି । ଏଇ ସହର ଭିତରେ ରହି ନିର୍ଯ୍ୟାତନା, ଅକଥନୀୟ ଅତ୍ୟାଚାରର ଶିକାର ହୋଇ ବଞ୍ଚିଥିବା ବୃଦ୍ଧ ଟୁରିଷ୍ଟ୍‌କୁ ସହରରୁ ଫେରିଯିବାର ତାଗିଦ୍ କରିବା ଭିତରେ ଅନେକ ରହସ୍ୟର ଅବତାରଣା ଘଟିଛି । ବୃଦ୍ଧ ଓ ଟୁରିଷ୍ଟ୍‌ର କଥୋପକଥନକୁ ଲକ୍ଷ୍ୟ କରାଯାଉ –

ବୃଦ୍ଧ : ତୁମେ ସ୍ୱପ୍ନ ଦେଖୁଛ ଟୁରିଷ୍ଟ୍ । ଏ ପରିତ୍ୟକ୍ତ ସହରରେ ଆଶ୍ରୟ ଜମା ମିଳେନା । ଏଠି କେବଳ ବିକ୍ଷୁବ୍ଧ ସମୁଦ୍ର ଢେଉପରି ଯନ୍ତ୍ରଣା ମଥା ପିଟେ, ଦେଖୁଛ ! ଏତେ ବିରାଟ ସହର, ମାତ୍ର କେହିନାହାନ୍ତି । ମରୁପ୍ରାନ୍ତରପରି ଶୂନ୍ୟତା ଯେପରି ସବୁଆଡ଼େ ଘେରି ରହିଛି । ଆଉ ମଧ୍ୟ ଦେଖୁଛ (ସେ ଟୁରିଷ୍ଟ୍‌କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଖଡ୍‌ଗରୁ ଦେଖାଇଲେ) ଏକ ଉତ୍ତୋଳିତ ଖଡ୍‌ଗ ।

ଟୁରିଷ୍ଟ୍ : (ଚିତ୍କାର କରି) ଖଡ୍‌ଗ... ଓଃ... ଖଡ୍‌ଗ ।

ବୃଦ୍ଧ : (ଖୁବ୍ ଜୋର୍‌ରେ ହସି ଉଠିଛନ୍ତି) ଜାଣେ ତୁମେ ଭୟ କରୁଛ । ଖୁବ୍ ଭୟ କରୁଛ । ଏ ଉତ୍ତୋଳିତ ଖଡ୍‌ଗ କବଳରୁ ତୁମର ଆଦୌ ପରିତ୍ରାଣ ନାହିଁ । ଏ ସହରରେ ଯିଏ ଥରେ ପ୍ରବେଶ କରେ ଏ ଖଡ୍‌ଗ ତାକୁ ଶାସ୍ତିଦିଏ... ନିଷ୍ଠୁର... ନିର୍ମମ.. ଡିମୋକ୍ଲିସ ଖଡ୍‌ଗ । (ପୃ.୩୨)

ରୁଗ୍ଣ ସମାଜ ବ୍ୟବସ୍ଥା, ପଚମାନ ମୂଲ୍ୟବୋଧ ଓ ସାଂସ୍କୃତିକ ସଂକଟ ଭିତରେ ଅବକ୍ଷୟମାଣ ଏଇ ସହରରେ ଯିଏ ବି ପାଦ ରଖିଛନ୍ତି, ସେ ଯନ୍ତ୍ରଣାଗ୍ରସ୍ତ ହୋଇ ମୃତ୍ୟୁବରଣ କରିଛନ୍ତି । ଏଭଳି ଅନ୍ଧକାରମୟ ସହରରେ ଆଲୋକର ସ୍ୱପ୍ନ ଦେଖୁଥିବା ଟୁରିଷ୍ଟ୍‌କୁ ଫେରାଇବାର ପ୍ରୟାସ କରିବି ବୃଦ୍ଧ ସଫଳ ହୋଇନାହନ୍ତି । ଏକଦା ଏହି ସହରର ଅଧୀଶ୍ୱର ଥିବା ବୃଦ୍ଧ ପରିସ୍ଥିତିର ତାଡ଼ନାରେ ନିଜ ଭୃତ୍ୟ ଦ୍ୱାରା ନିର୍ଯ୍ୟାତିତ ହେବା ବିସ୍ମୟକର ମନେ ହୁଏ । ପୁଣି ତୃଷାର ମଧୁର ସଂଗୀତ ମରୀଚିକା ପରି ଟୁରିଷ୍ଟ୍‌ଙ୍କ ମନରେ ସହର ଭିତରେ ରହିବାର ମୋହ ସୃଷ୍ଟି କରିବା ଆହୁରି ବିସ୍ମୟକର ମନେ ହୋଇଛି ।

ନାଟକର ଦ୍ୱିତୀୟ ଦୃଶ୍ୟ ବିସ୍ମୟର ସମସ୍ତ ସୀମାକୁ ଅତିକ୍ରମ କରିଯାଇଛି । ଏଠାରେ ଲକ୍ଷ୍ୟ କରାଯାଏ ବୃଦ୍ଧଙ୍କ ଉପରେ ତାଙ୍କ ଭୃତ୍ୟର ନିର୍ମମ ଅତ୍ୟାଚାର । ନିଜ ନିଜର ଇଚ୍ଛାକୁ ଜଳାଞ୍ଜଳିଦେଇ ବୃଦ୍ଧଙ୍କ ବନ୍ଧୁ ଅନ୍ଧ ବ୍ୟକ୍ତି ଓ ବୃଦ୍ଧ ଉଭୟ ଭୃତ୍ୟ ପ୍ରବଞ୍ଚକର ଇସାରାରେ କାମ କରିଛନ୍ତି । ତା'ର ନିର୍ଦ୍ଦେଶ ପାଳନ କରିଛନ୍ତି । ତୃତୀୟ ଦୃଶ୍ୟରେ ବୃଦ୍ଧ ଓ ତାଙ୍କର ଅନ୍ଧ ବନ୍ଧୁଙ୍କ ଉପରେ ତାଙ୍କ ଭୃତ୍ୟର ଅତ୍ୟାଚାର ଟୁରିଷ୍ଟ୍‌ଙ୍କ ମନରେ ଅସଂଖ୍ୟ ପ୍ରଶ୍ନବାଚୀ ସୃଷ୍ଟି କରିଛି ।

ଟୁରିଷ୍ଟ୍ : ମିଛକଥା, ଆପଣଙ୍କର ସେଇ ଅନୁଗତ ଭୃତ୍ୟ ପ୍ରବଞ୍ଚକ ଆପଣଙ୍କୁ ନିର୍ମମ ଭାବରେ ପ୍ରହାର କରୁଥିଲା ଓ ଆପଣ କରୁଣ ଭାବରେ ଚିତ୍କାର କରୁଥିଲେ । ଏଇତ ଆପଣଙ୍କ ଦେହସାରା ଅନେକ କ୍ଷତଚିହ୍ନ ।

ବୃଦ୍ଧ (ପ୍ରହାର ଜନିତ କ୍ଷତଚିହ୍ନଗୁଡ଼ିକ ଘୋଡ଼ାଇ ପକାଇ) ଏ କ୍ଷତ ଖାଲି ମୋର ନୁହେଁ । ମୋ ଦେହରୁ ଅସଂଖ୍ୟ କ୍ଷତ ମଧ୍ୟରେ ସବୁ ମଣିଷର ଯନ୍ତ୍ରଣା, ନିର୍ଯ୍ୟାତନା ରୂପାୟିତ । ପ୍ରବଞ୍ଚକ କବଳରୁ କାହାରି ମୁକ୍ତି ନାହିଁ । ତୁମେ, ମୁଁ ପ୍ରତ୍ୟେକ ମଣିଷ ତା'ରି କବଳରେ କବଳିତ । ଯନ୍ତ୍ରଣା, ହାହାକାରର ଅନ୍ଧାର ଗହ୍ୱର ମଧ୍ୟକୁ ସେ ଆମକୁ ଟାଣି ନେଇଛି । ଇତିହାସ ତା'ର ହିସାବ ରଖିନି । ପୁରାଣରେ ସେ ସବୁ ଲିପିବଦ୍ଧ ହୋଇଛି । ଯୁଗଯୁଗ ଧରି ମଣିଷ ତା'ର ଅତ୍ୟାଚାରରେ ଖାଲି ଲୁହ ଝରେଇଛି । ମୁକ୍ତିର ସ୍ୱପ୍ନ ଦେଖୁଛି ଠିକ୍ ମୋରି ପରି । (ପୃ.୪୪)

ଏହି ତୃତୀୟ ଦୃଶ୍ୟରେ ଉଭୟ ଅନ୍ଧ ଓ ବୃଦ୍ଧ ଟୁରିଷ୍ଟ୍‌ଙ୍କୁ ସହରର ବାହ୍ୟ ମୋହରୁ ଦୂରେଇବାର ପ୍ରୟାସ କରିଥିଲେ ବି ପ୍ରବଞ୍ଚକର ଚାତୁରୀ ଟୁରିଷ୍ଟ୍‌କୁ ସହର ଭିତରେ ରହିବାକୁ ବ୍ୟାକୁଳ କରିଦେଇଛି । ନାଟକର ଚତୁର୍ଥ ଦୃଶ୍ୟରେ ଅନ୍ଧକାର ମଧ୍ୟରେ ଅନ୍ଧ ବ୍ୟକ୍ତିର ଯନ୍ତ୍ରଣାଜନିତ ଚିତ୍କାର ଶୁଣାଯାଇଛି । ମଞ୍ଚରେ ଆଲୋକ ଆସିଲା ବେଳକୁ ଦେଖାଦେଇଛି ଉପରେ ଝୁଲୁଥିବା ଖଣ୍ଡାଟି ତଳକୁ ଖସି ଆସିଛି, ତା'ରି ତଳେ ଅନ୍ଧ ଶୋଇଯାଇଛନ୍ତି । ଅନ୍ଧର ଏଭଳି ଅବସ୍ଥା ସଂପର୍କରେ ଟୁରିଷ୍ଟ୍‌ଙ୍କୁ ସଚେତନ କରାଯିବାର ଶେଷ ପ୍ରୟାସ କରି ବି ବୃଦ୍ଧ ବିଫଳ ହୋଇଛନ୍ତି । ପ୍ରବଞ୍ଚକର ପ୍ରରୋଚନାରେ ଟୁରିଷ୍ଟ୍ ରହସ୍ୟମୟୀ ତୃଷ୍ଣାଙ୍କୁ ଖୋଜିବା ପାଇଁ ବାହାରି ଯାଇଛନ୍ତି । ଟୁରିଷ୍ଟ୍ ବାହାରିଯିବା ପରେ ବୃଦ୍ଧ ନିଜର ପରିତ୍ରାଣ ଆଶାକରିବା ସହ ନୂତନ ଆଲୋକର ଉତ୍ସକୁ ସ୍ୱାଗତ କରିବାର ଆକାଙ୍‌କ୍ଷା ପୋଷଣ କରିଛନ୍ତି ।

ନାଟକର ପଞ୍ଚମ ତଥା ଅନ୍ତିମ ଦୃଶ୍ୟରେ ନାଟକର ପରିଣତି ମଧ୍ୟ ବିସ୍ମୟଜନକ ହୋଇଉଠିଛି । ଚତୁର୍ଥ ଦୃଶ୍ୟରେ ଯେପରି ଅନ୍ଧ ବ୍ୟକ୍ତି ଖଡ୍‌ଗ ତଳେ ନିଜ ଜୀବନ ଦେଇଥିଲେ, ପଞ୍ଚମ ଦୃଶ୍ୟରେ ବି ସେହିଭଳି ଟୁରିଷ୍ଟ୍ ଖଡ୍‌ଗ ତଳେ ପଡ଼ି ମୃତ୍ୟୁବରଣ କରିଛନ୍ତି । ଯନ୍ତ୍ରଣାଗ୍ରସ୍ତ ସମାଜର ପ୍ରତୀକ ବୃଦ୍ଧ ଟୁରିଷ୍ଟ୍‌ଙ୍କ ମୃତ୍ୟୁପରେ ପ୍ରବଞ୍ଚକ ପାଖରୁ ନିଜର ମୃତ୍ୟୁ ଭିକ୍ଷା କରିବା

ସତ୍ତ୍ୱେ ବି ପ୍ରବଞ୍ଚକ ତାଙ୍କୁ ଗୋଡ଼ରେ ଠେଲି ଚାଲିଯାଇଛି । ପ୍ରବଞ୍ଚକର ପ୍ରସ୍ଥାନ ପରେ ଦର୍ଶକ ଗ୍ୟାଲେରୀରୁ ମଞ୍ଚକୁ ଯେଉଁ ରାସ୍ତାଟି ଲମ୍ବି ଆସିଛି, ସେଇ ରାସ୍ତାରେ ଶ୍ୱେତବସ୍ତ୍ର ପରିହିତ ଜଣେ ବ୍ୟକ୍ତି ଆସିବାକ୍ଷଣି ମଞ୍ଚ ଉଜ୍ଜ୍ୱଳ ହୋଇଉଠିଛି । ସେହି ବ୍ୟକ୍ତିଙ୍କ ପରିଚୟ ଜିଜ୍ଞାସା ଭିତରେ ପୁରାତନକୁ ଧ୍ୱଂସ କରି ନୂତନର ଆବାହନ କରିବାର ମନ୍ତ୍ରକୁ ବୃଦ୍ଧ ଶୁଣିପାରିଛନ୍ତି । ଈଶ୍ୱରଙ୍କ ବାର୍ତ୍ତା ଆଣି ଆସିଥିବା ମୁକ୍ତିଦାତା ଜଣକ ବିବର୍ଣ୍ଣ ସହର ଭିତରୁ ବୃଦ୍ଧଙ୍କୁ ଉଦ୍ଧାର କରି ନୂତନ ଜଗତକୁ ନେଇଯାଉଛନ୍ତି । ଏହି ଖୁସିରେ ବୃଦ୍ଧ ବିହ୍ୱଳ ହୋଇ ପଡ଼ିଛନ୍ତି ।

ବୃଦ୍ଧ : (ଚିତ୍କାର କରି) ଦେଖନ୍ତୁ ଏ ଖଡ୍‌ଗ କେମିତି ନଇଁଆସୁଛି । ପରିତ୍ୟକ୍ତ ସହରଟିରେ ଯାହାକିଛି ଅବଶିଷ୍ଟ ଥିଲା, ଭାଙ୍ଗି ଛାରଖାର ହୋଇ ଯାଉଛି । ପ୍ରଳୟ, ଧ୍ୱଂସ, ପୁଣି ନୂଆ ସୃଷ୍ଟି... ଓଃ କେଡେ ଚମତ୍କାର । (ପୃ.୫୯)

ମୁକ୍ତିର ନୂତନ ସୂର୍ଯ୍ୟୋଦୟର ଆବାହନ ଭିତରେ ଶୃଙ୍ଖଳମୁକ୍ତ ବୃଦ୍ଧ ମୁକ୍ତିଦାତା ସହ ଯାତ୍ରା କଲାବେଳେ ଭୃତ୍ୟ ପ୍ରବଞ୍ଚକ ବି ତାଙ୍କ ସହ ଯିବାର ଇଚ୍ଛାପୋଷଣ କରିଛି । ମାତ୍ର ଭୃତ୍ୟକୁ ତା'ର କର୍ମର ଫଳ ଭୋଗିବା ସହ ଭାଙ୍ଗି ପଡୁଥିବା ବିବର୍ଣ୍ଣ ସହର ଭିତରେ ଛାଡିଦେଇ ବୃଦ୍ଧ ଚାଲିଯିବା ପରେ ମଞ୍ଚ ଅନ୍ଧକାର ହୋଇଛି ।

ସମଗ୍ର ନାଟକର ପରିବେଶ-କଥାବସ୍ତୁ - ଚରିତ୍ର ଆଲିଗୋରିକାଲ । ନାଟକରେ ସ୍ଥିତିବାଦୀ ଜୀବନ ଦୃଷ୍ଟିକୋଣ ସହିତ ଧ୍ୱଂସ ମଧ୍ୟରୁ ନୂତନ ଚେତନାର ଉତ୍ତରଣ ଘଟିଛି । ଭଗ୍ନ ସହର ଭିତରେ ଭୃତ୍ୟ ଦ୍ୱାରା ନିର୍ଯ୍ୟାତିତ ହେଉଥିବା ବ୍ୟକ୍ତି ଯନ୍ତ୍ରଣାଗ୍ରସ୍ତ ସମାଜର ପ୍ରତିନିଧି ସାଜିଛନ୍ତି । ଏଠାରେ ବିବର୍ଣ୍ଣ ସହରଟି ଉତ୍ତର ଉପନିବେଶବାଦୀ ବାଣିଜ୍ୟିକ ସଂସ୍କୃତିରେ କବଳିତ ସମାଜର ପ୍ରତୀକ ପାଲଟିଛି । ସେଠାରେ ତୃଷ୍ଣା (ମଣିଷର କାମନା ବାସନା) ତା'ର ମଧୁର ସଂଗୀତ ଦ୍ୱାରା ଅନ୍ୟମାନଙ୍କୁ ଆକୃଷ୍ଟ କରେ ଓ ପ୍ରବଞ୍ଚକ ସେଠାରେ ମରଣାନ୍ତକ ପୀଡ଼ା ମଧ୍ୟ ଦିଏ । ବୃହତ୍ତର ସମାଜରେ ଅବସ୍ଥାନ କରୁଥିବା ମଣିଷର ଉଦାସୀନତା, ହତାଶା ପୁଣି ବିଚ୍ଛିନ୍ନତା ଭିତରେ ଜର୍ଜରିତ ବ୍ୟକ୍ତିସତ୍ତା ନାଟକରେ ପ୍ରତିଫଳିତ ହୋଇଛି । ଏହି ନାଟକ କଥାବସ୍ତୁରେ ପ୍ରତୀକାତ୍ମକ ଛଳରେ ଗୋଟିଏ ସାମାଜିକ, ସାଂସ୍କୃତିକ ଅବକ୍ଷୟର ପରିଚୟ ଦେଇଛି । ମୂଲ୍ୟବୋଧ, ନୀତିବାଦ ଓ ମାନବିତାବୋଧର ସଂକଟ ଭଗ୍ନ ସହରଟିରେ ଦୃଶ୍ୟମାନ । ଏହି ପତମାନ ସାଂସ୍କୃତିକ ସଂକଟ କବଳରୁ କୌଣସି ବ୍ୟକ୍ତି ମୁକୁଳି ପାରୁନାହାନ୍ତି । ମଣିଷର ବ୍ୟକ୍ତି ସ୍ୱାତନ୍ତ୍ର୍ୟ, ଅଭିରୁଚି ଓ ସାମାଜିକ ବିଚ୍ଛନ୍ନତାବୋଧର ବିପୁଳ ପରିଚୟ ଏହି ନାଟକ ଭିତରୁ ଉଙ୍କି ମାରିଥାଏ । ମୁକ୍ତିଦାତା ବ୍ୟକ୍ତିଙ୍କର ଉପସ୍ଥିତି ପ୍ରମାଣ କରିଦିଏ ଏହି ବାଣିଜ୍ୟିକ ସଂସ୍କୃତି, ସଭ୍ୟତା ଦିନେ ନା ଦିନେ ଲୋପ ପାଇ ନୂତନ ମୂଲ୍ୟବୋଧ ଜନ୍ମ ନେବ । ଜୀବନଧାରଣର ଯାବତୀୟ ନିରର୍ଥକତାର ଅବସାନ ଘଟି ନୂତନ ଚେତନାର ଉଦ୍‌ଗୀରଣ ହେବ । ପ୍ରଳୟ ଭିତରେ ନିହିତ ସୃଜନର ଶକ୍ତି ଦେଖାଇବା ଲାଗି ନାଟକରେ

ଏହି ସହରର ଧ୍ୱଂସ ଅନିବାର୍ଯ୍ୟ ହୋଇଉଠିଛି । ଜୀବନର ନୂତନ ମୂଲ୍ୟବୋଧରେ ଅନୁପ୍ରାଣିତ ହୋଇଛନ୍ତି ବୃଦ୍ଧ । ନୂତନ ଚେତନାର ଅଭ୍ୟୁଦୟ ଘଟିଛି ପ୍ରାଣରେ ତାଙ୍କର । ଜୀବନ ସତ୍ୟ ଅନୁସନ୍ଧାନରେ ନାଟକର ଯବନିକା ପଡ଼ିଛି ।

ନାଟକଟି ନାରୀ ଚରିତ୍ର ବିବର୍ଜିତ ହେବା ସହ ପାଞ୍ଚଜଣ ପୁରୁଷ ଚରିତ୍ରଙ୍କୁ କେନ୍ଦ୍ର କରି ଗଢ଼ିଉଠିଛି । ଏକଦା ସହରର ଅଧୀଶ୍ୱର ଥିବା ବୃଦ୍ଧ ନିଜ ଭୃତ୍ୟ ଦ୍ୱାରା ନିର୍ଯ୍ୟାତିତ ହେବା, ବୃଦ୍ଧଙ୍କ ବନ୍ଧୁ ବିବର୍ଣ୍ଣ ସହରର ଭିତରେ ଅନ୍ଧ ହୋଇଯିବା ପୁଣି ସହରର ସଭ୍ୟତାରେ ମୋହଗ୍ରସ୍ତ ହୋଇ ମୃତ୍ୟୁବରଣ କରିଥିବା ଟୁରିଷ୍ଟ୍ ଚରିତ୍ର ନାଟକର ଆବେଦନ ଅନୁଯାୟୀ ପରିକଳ୍ପିତ ହୋଇଛନ୍ତି । ନାଟକର ଅନ୍ୟତମ ଚରିତ୍ର ମୁକ୍ତିଦାତା ମାଧ୍ୟମରେ ଧୂସର ବିବର୍ଣ୍ଣ ସହର ଭିତରେ ନୂତନ ସଭ୍ୟତା ସୃଷ୍ଟିର ମନ୍ତ୍ର ପାଇଛି । ଏହି ନାଟକଟି ନାଟ୍ୟକାର ବିଜୟ କୁମାରଙ୍କ ଦ୍ୱିତୀୟ ନାଟକ ହୋଇଥିବାରୁ ପୂର୍ବ ନାଟକର ସଂଳାପ ଓ ନାଟ୍ୟଶୈଳୀ ତୁଳନାରେ ଏହା ଅଧିକ କାରୁକାର୍ଯ୍ୟ ମଣ୍ଡିତ । ମଞ୍ଚାୟନ ଦୃଷ୍ଟିରୁ ନାଟକଟିରେ ସେପରି କୌଣସି ଜଟିଳ ପରିବେଶ କିମ୍ବା ସେଟ୍‌ର ଆବଶ୍ୟକତା ପଡ଼ିନାହିଁ । ଆଲୋକକୁ ନେଇ ସେହିଭଳି କୌଣସି ପରୀକ୍ଷା-ନିରୀକ୍ଷାର ବି ଆବଶ୍ୟକତା ଏଥିରେ ପଡ଼ିନାହିଁ ।

ଏହି ନାଟକଟି ନାଟ୍ୟକାରଙ୍କ ତରୁଣ ବିଷୟରେ ଲେଖା ହୋଇଥିଲେ ମଧ୍ୟ ପରିପକ୍ୱତା ଦୃଷ୍ଟିରୁ ନାଟକଟିରୁ ଲକ୍ଷ୍ୟ କରାଯାଇପାରେ । ମୂଲ୍ୟବୋଧର ନୂତନ ଆବାହନ ଭିତରେ ପଚମାନ ସଭ୍ୟତା- ସଂସ୍କୃତିକୁ ଧ୍ୱଂସକରି ମଣିଷ ଭିତରେ ସୃଜନର ସମ୍ଭାବନାମୟ ଆଲୋକର ବିଚ୍ଛୁରଣ ଘଟାଇ ତାକୁ ଉତ୍ତରଣ କରିବା ଦିଗରେ ନାଟକଟି ବହୁ ମାତ୍ରାରେ ସଫଳ ହୋଇପାରିଛି । ପ୍ରଥମକରି ଓଡ଼ିଆ ନାଟ୍ୟଧାରାରେ ଉତ୍ତର ଆଧୁନିକ ନାଟ୍ୟ ରୀତିର ଯଥାର୍ଥ ଲକ୍ଷଣ ଏହି ନାଟକଟିରେ ବିଦ୍ୟମାନ । ଏକ ଅବକ୍ଷୟୀ, ପଣ୍ୟବାହୀ, ସଭ୍ୟତା ଓ ସଂସ୍କୃତିର ଧ୍ୱଂସ ସାଧନ ଘଟାଇ ନୂତନ ଆଲୋକର ସଂଧାନ ଯେପରି ଆଲିଗୋରୀ ମାଧ୍ୟମରେ ଏଥିରେ ଦିଆଯାଇଛି ତାହା ହେଉଛି ଏ ନାଟକର ବୈଶିଷ୍ଟ୍ୟ । ପୁଣି ସମକାଳୀନ ନାଟ୍ୟଧାରାଠାରୁ ବିଚ୍ୟୁତ ହୋଇ ମଧ୍ୟେ ମଧ୍ୟେ ଏକ ନିର୍ଦ୍ଦିଷ୍ଟ ସଂଗୀତର ପରିବେଷଣ ନାଟ୍ୟ କାହାଣୀର ଚମତ୍କାରିତା ସଂପାଦନରେ ସହାୟକ ହୋଇଛି । କେତେଗୁଡ଼ିଏ ବିରୋଧାଭାସ ମଧ୍ୟଦେଇ ବୃହତ୍ତର ସମାଜ ବ୍ୟବସ୍ଥା ତଥା ସମଗ୍ର ମାନବଜାତି ପାଇଁ ସତ୍ୟର ଉପଲବ୍ଧି ନାଟ୍ୟକାର ଏହି ନାଟକରେ ଆଣିଛନ୍ତି ।



# ଜୀବନରେ ପ୍ରାପ୍ତି – ଅପ୍ରାପ୍ତିର ମଝିରାସ୍ତା : 'ବିଷାଦ ବୃତ୍ତର କାହାଣୀ'

ବସ୍ତୁତାନ୍ତ୍ରିକ ସମାଜବ୍ୟବସ୍ଥା ଭିତରେ ଜୀବନଶୈଳୀର ପରିବର୍ତ୍ତନ କେବଳ ସ୍ୱପ୍ନଭଂଗର ନିରର୍ଥକତାକୁ ସାବ୍ୟସ୍ତ କରିଛି । ମଣିଷ ଯାହା ଚାହେଁ, ତାହା ପାଏ ନାହିଁ । ଯାହା ପାଏ ସେଥିରେ ସନ୍ତୁଷ୍ଟ ହୋଇପାରେନି । ଜୀବନର ଏଇ ପ୍ରାପ୍ତି ଓ ଅପ୍ରାପ୍ତି ଭିତରେ ସୃଷ୍ଟି ହୁଏ ଅସଫଳତାର ବିଷାଦ ବଳୟ । ଜୀବନକୁ ବୁଝି ନ ବୁଝିବାର ବିଚିତ୍ର କାନ୍‌ଭାସ । କୌଣସି ବ୍ୟକ୍ତି କେବେ ବି ବିଷାଦର ବଳୟ ଭିତରୁ ମୁକୁଳି ପାରିନାହିଁ । ଏହିଭଳି ସୂକ୍ଷ୍ମ ଅବବୋଧର ବାର୍ତ୍ତା ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ ନାଟକ 'ବିଷାଦ ବୃତ୍ତର କାହାଣୀ'ରେ ରହିଛି । ପ୍ରତ୍ୟେକ ବିଷାଦଗ୍ରସ୍ତ ମଣିଷ ପାଇଁ ଏ ନାଟକ ଏକ ଉପଲବ୍ଧି ଆଣିଦେଇଛି । 'ବିଷାଦ ବୃତ୍ତର କାହାଣୀ' ହେଉଛି – ''ଶୈଶବ, କୈଶୋର, ଯୌବନ ପୁଣି ବାର୍ଦ୍ଧକ୍ୟର ସୀମାରେଖା ଡେଇଁ ଆସୁଥିବା ପ୍ରତ୍ୟେକ ମଣିଷର ବିଷାଦଗ୍ରସ୍ତ ଜୀବନର କାହାଣୀ । ମଣିଷ ଜନ୍ମ ହେଲା ମାତ୍ରେ ଯେଉଁ ବିଷାଦର ବୃତ୍ତ ମଧ୍ୟରେ ନିକ୍ଷିପ୍ତ ହୁଏ ସେଠାରୁ ସେ ମୁକ୍ତି ପାଏନାହିଁ ; ଯଦିଓ ମୁକ୍ତିର ପ୍ରବଳ ଆକାଙ୍‌କ୍ଷା ତା ମନରେ ବଳବତ୍ତର ଥାଏ, ତା'ର ଇଚ୍ଛା ପୁଣି ତା'ର ଭାଗ୍ୟ ଦୁଇ ବିପରୀତ ସରଳ ରେଖାରେ ଗତି କରନ୍ତି । ଜନ୍ମଠାରୁ ମୃତ୍ୟୁ ଯାଏ ବିଷାଦ ଓ ହରେଇବାର ଚକ୍ର ମଧ୍ୟରେ ସେ ଖାଲି ଘୁରିବୁଲେ ।" (ନାଟକ ସମ୍ପର୍କରେ- 'ବିଷାଦ ବୃତ୍ତର କାହାଣୀ')

ଅତୀତ ସ୍ମୃତି ଚାରଣ ଭିତରେ 'ବିଷାଦ ବୃତ୍ତର କାହାଣୀ' ନାଟକଟି ଗଢ଼ିଉଠିଛି । ଏହାର ପ୍ରତ୍ୟେକ ଚରିତ୍ର ଅପ୍ରାପ୍ତି ଭିତରେ ଜୀବନ ବଞ୍ଚିଛନ୍ତି । ଜୀବନରେ ନ ପାଇବାର ଦୁଃଖଦ ବଳୟ ହିଁ ସେମାନଙ୍କୁ କବଳିତ କରିଚାଲିଛି । ପରସ୍ପର, ପରସ୍ପର ପାଖରେ ସୁଖୀ ହେବାର ଛଳନା କରିଛନ୍ତି । ସତେ ଯେମିତି ସମସ୍ତେ ଗୋଟେ ଗୋଟେ ମୁଖାପିନ୍ଧି ରଙ୍ଗମଞ୍ଚରେ ନାଚିଚାଲିଛନ୍ତି । ନାଟକର ଆରମ୍ଭ ହୋଇଛି ଅତୀତକୁ ଖୋଜି ଚାଲିଥିବା ଅନ୍ତହୀନ ଅନ୍ୱେଷଣର ପ୍ରକ୍ରିୟାରୁ ।

ନାଟକଟିରେ ମଞ୍ଚକୁ ସଂପୂର୍ଣ୍ଣ ସରଳ କରାଯାଇଛି । ମଞ୍ଚର ପଛରେ ଗୋଟିଏ ମାତ୍ର କଳାପରଦା ରହିଛି । ସମୁଦାୟ ମଞ୍ଚଟି ଦୁଇଟି ଜୋନ୍‌ରେ ବିଭକ୍ତ ହୋଇଛି । ନାଟକର ଦୃଶ୍ୟ ଆରମ୍ଭରେ ପ୍ରଥମ ଜୋନ୍‌ଟି ଆଲୋକିତ ହୋଇଛି । ଯେଉଁଠି ସାଧାରଣ ପରିଧାନରେ ଛିଡ଼ା

ହୋଇଛି ମୁକ୍ତିପାଦ । ଏହି ସମୟରେ ମଞ୍ଚର ଦ୍ୱିତୀୟ ଜୋନ୍‌ଟି ଅନ୍ଧକାରମୟ ହୋଇଛି । ନିଜେ ନିଜର ପରିଚୟ ଖୋଜୁଥିବା ମୁକ୍ତିପାଦର ସଂଳାପ ପରେ ମଞ୍ଚରେ କେତେଜଣ ଶିଶୁ-ଯୁବକ-ବୃଦ୍ଧ କିଛି ଖୋଜି ଚାଲିଛନ୍ତି । ମଞ୍ଚରେ ସଂପୂର୍ଣ୍ଣ ଆଲୋକ ଆସିଲାବେଳକୁ ଦୃଶ୍ୟମାନ ହୋଇଛନ୍ତି ଜଣେ ବୃଦ୍ଧ । ଅନ୍ୟମାନଙ୍କ ପରି ଖୋଜି ନ ପାଇଲା ପରେ ବୃଦ୍ଧ ଅସ୍ପଷ୍ଟ ଚିତ୍କାର କରିଛନ୍ତି । ପରବର୍ତ୍ତୀ ସମୟରେ ସମୁଦ୍ରର ଐକତାନିକ ସ୍ୱରଲହର ସହ ଗୋଟିଏ ଶିଶୁର କୁଆଁ କୁଆଁ ଶବ୍ଦ ଶୁଣିବାକୁ ମିଳିଛି । ଆଉ କିଛି ସମୟ ପରେ ଦୁଇଟିଯାକ ସ୍ୱର ନିସ୍ତବ୍ଧ ହୋଇଛି ·ଏବଂ ମଞ୍ଚର ଦ୍ୱିତୀୟ ଜୋନ୍‌କୁ ପ୍ରବେଶ କରିଛି ପେଁକାଳି ବଜାଉଥିବା ସାତ ଆଠବର୍ଷର ବାଳକ । ଖୁସିରେ ପେଁକାଳି ବଜାଉଥିବା ବାଳକଟି କିଛି ସମୟ ପରେ ଆଖି ମଳିମଳି କାନ୍ଦିଛି । ପୁଣି ଥରେ ପେଁକାଳି ବଜାଇବାର ପ୍ରୟାସ କରିଛି ମାତ୍ର ପେଁକାଳି ବାଜି ନାହିଁ । ବିଫଳ ହେବା ପରେ ପେଁକାଳିକୁ ସେ ଭାଙ୍ଗିଦେଇ ଫୋପାଡ଼ି ଚାଲିଯାଇଛି । ଏଥିସହ ପ୍ରସ୍ତାବନା ଦୃଶ୍ୟର ସମାପ୍ତି ଘଟିଛି ।

ଏହା ପରେ ନାଟକର ପ୍ରଥମ ଦୃଶ୍ୟ ଅଭିନୀତ ହୋଇଛି । ମଞ୍ଚର ଦ୍ୱିତୀୟ ଜୋନ୍‌ଟି ନୀଳାଭ ଆଲୋକ ଦ୍ୱାରା ଆଲୋକିତ ହେବା ସହ ଏକ ସାଙ୍ଗୀତିକ ପରିବେଶ ସୃଷ୍ଟି ହୋଇଛି । ପରେ ମଞ୍ଚରେ ଆବିର୍ଭାବ ଘଟିଛି ଜଣେ ତରୁଣ ଆଉ ତରୁଣୀର । ପିଲାଦିନର ଧୂଳିଖେଳ ସାଥୀ ଏ ଦୁଇ ତରୁଣତରୁଣୀ ନିଜର ଅପହୃତ ଶୈଶବକୁ ଖୋଜିଛନ୍ତି ।

ତରୁଣ ॥ ସେ ନିର୍ଦ୍ଦୋଷ ନିରାପରାଧର ବୟସ ଆମ ପାଇଁ ଆସିବନି । ଆମେ ଆଉ ପୁଣି ଥରେ ଦୀର୍ଘଶ୍ୱାସ ପକେଇ ଧୂଳିଘର ଖେଳି ପାରିବାନି । ବର୍ଷା ପାଣିରେ ଭିଜିଭିଜି କାଗଜ ଡଙ୍ଗା ଭସାଇ ପାରିବାନି ।

ତରୁଣୀ ॥ ନାଁ କିଛି କରିପାରିବାନି, ସ୍ମୃତି ଚାରଣ ବ୍ୟତୀତ ଆମେ କିଛି କରିପାରିବାନି । (ବିଷାଦ ବୃତ୍ତର କାହାଣୀ, ପୃଷ୍ଠା-୬)

ତରୁଣଟି ଆପଣାର ହଜିଯାଇଥିବା ଶୈଶବକୁ ପୁଣିଥରେ ଫେରିପାଇବାର ପ୍ରୟାସ କରୁଥିଲା ବେଳେ ତରୁଣୀଟି ବି ଫେରିପାଇବାର ଆଶାରେ ଉତଫୁଲ୍ଲିତ ହୋଇଉଠିଛି । ପିଲାଦିନର ସେଇ ଭଙ୍ଗା ପେଁକାଳି କାଢି ତରୁଣଟି ଯେତେବେଳେ ତରୁଣୀକୁ ଦେଖାଇଛି, ସେତେବେଳେ ତରୁଣୀଟି ଖୁସିରେ ପେଁକାଳିଟିକୁ ବଜାଇବାର ପ୍ରୟାସ କରିଛି । ମାତ୍ର ସେ ବିଫଳ ହେବା ପରେ ପେଁକାଳିଟିକୁ ଫିଙ୍ଗି ଦେଇଛି । ତରୁଣଟିର ଉପଲବ୍ଧି ହୋଇଛି ଯେ, ଘଟିଯାଇଥିବା ଘଟଣା, ହଜିଯାଇଥିବା ସମୟର ସୁଅ ଆଉ କେବେ ନ ଫେରିଲାପରି ସେମାନଙ୍କ ହଜିଯାଇଥିବା ପିଲାଦିନ ବି ଫେରି ଆସିବନି । ଅତୀତକୁ ମନେପକାଇ ବର୍ତ୍ତମାନ ସମ୍ପର୍କରେ ଉଦାସୀନ ହୋଇପଡ଼ିବା, ଜୀବନକୁ ଭାରାକ୍ରାନ୍ତ କରିବା ଠିକ୍ ନୁହେଁ ବୋଲି ତରୁଣଟି ଅନୁଭବ କରିଛି । ତରୁଣୀ ବି ଉପଲବ୍ଧି କରିଛି ଯେ, ସେମାନେ ଅତୀତର ସ୍ମୃତିକୁ

ନ ଝୁରି ବର୍ତ୍ତମାନରେ ଜୀବନକୁ ସୁନ୍ଦର ବୋଲି ଭାବି ବଞ୍ଚିବେ । ଦୁହେଁ ମିଳିତ ହୋଇ ଜୀବନର ନୂଆ ରାସ୍ତାକୁ ଖୋଜିବାପାଇଁ ବାହାରିଛନ୍ତି । ସେମାନେ ପ୍ରସ୍ଥାନ କଲାବେଳେ କବି ଅନ୍ନଦାଶଙ୍କର ରାୟଙ୍କ 'ସୃଜନ ସ୍ୱପ୍ନ' କବିତାର "ଯୌବନର ଝରଣା କୂଳେ/ମଳୟ ଯହିଁ ନିୟତ ବୁଲେ / କୁସୁମ କେତୁ ଉଡାଇ" – ପଙ୍‌କ୍ତି ଆବୃତ୍ତି କରି କରି ମଞ୍ଚରୁ ବାହାରି ଯାଇଛନ୍ତି । ନଷ୍ଟାଲଜିକ୍ ଭାବନାର ସଂପୂର୍ଣ୍ଣ ପରିଚୟ ପ୍ରଥମ ଦୃଶ୍ୟରୁ ହିଁ ଦେଖିବାକୁ ମିଳେ ।

ନାଟକର ଦ୍ୱିତୀୟ ଦୃଶ୍ୟରେ ରହିଛି ବିସଦୃଶ ବିବାହର ଚିତ୍ର । ପତିପତ୍ନୀଙ୍କ ମଧ୍ୟରେ ଜୀବନର ଅପ୍ରାପ୍ତିକୁ ନେଇ କେତେ ଅବସୋସର କାହାଣୀ । ସେମାନଙ୍କ ପିଲାମାନେ ସ୍କୁଲରେ ପଢ଼ିଲେଣି, ବିବାହର ଅନେକ ବର୍ଷ ବିତିଗଲାଣି, ତଥାପି ସେମାନେ ପରସ୍ପର ସହିତ ମାନସିକ ସ୍ତରରେ ମିଶି ପାରିନାହାନ୍ତି । ସ୍ୱାମୀ ଜଣକ ରୋମାଣ୍ଟିକ୍, କଳ୍ପନାବିଳାସୀ କବି ହୋଇଥିବାବେଳେ ସ୍ତ୍ରୀଜଣକ ବସ୍ତୁବାଦୀ । ଉଭୟଙ୍କ ଚିନ୍ତାଧାରାରେ ଆକାଶ-ପାତାଳର ପ୍ରଭେଦ । ସ୍ୱାମୀଜଣକ ତାଙ୍କ କଲେଜ ଜୀବନର ପ୍ରେମିକାକୁ ଭୁଲି ପାରିନଥିଲା ବେଳେ ସ୍ତ୍ରୀଜଣକ ପିଲାଦିନର ଧୂଳିଖେଳ ସାଥୀ ତାଙ୍କ ପ୍ରେମିକକୁ ଭୁଲିପାରିନାହାନ୍ତି । ସ୍ୱାମୀ-ସ୍ତ୍ରୀ ଉଭୟ ପରସ୍ପର ନିକଟରେ ଖୁସିହେବାର ଛଳନାପୂର୍ଣ୍ଣ ଅଭିନୟ କରିଛନ୍ତି ।

ସ୍ତ୍ରୀ ।। ଅଭିନୟ କରିବା ଛଡ଼ା ବାଟ କିଛି ନଥିଲା । ମୁଖା ନ ପିନ୍ଧିଲେ ବଞ୍ଚି ହବନି । ତୁମେ... ମୁଁ... ସମସ୍ତେ । ଯିଏ ଯାହା ନୁହେଁ ତାକୁ ସେଇଆ ବୋଲି ପ୍ରମାଣ କରିବାକୁ ପଡ଼ିବ । ସବୁ ଦୁଃଖକୁ ଚାପିରଖି ସବୁ ଅଭାବକୁ ଲୁଚେଇରଖି ହସି ହସି ଜଣେଇଦବାକୁ ପଡ଼ିବ, ଯେମିତି କିଛି ହେଇନି । ଯେପରି କିଛି ଘଟିନି । (ପୃ.୨୨)

ସ୍ୱାମୀ ସ୍ତ୍ରୀ ଦୁହେଁ ପରସ୍ପର ନିକଟରେ ମୁଖାପିନ୍ଧି ଯେଉଁ ଛଳନାର ଅଭିନୟ କରିଛନ୍ତି ତାହାର ଯବନିକା ପଡ଼ିଛି । ଉଭୟଙ୍କ ମୁହଁରୁ ମୁଖା ଖସି ପଡ଼ିଛି । ସ୍ତ୍ରୀ ଜଣକ ନିଜର ସ୍ୱାମୀ, ପିଲାଛୁଆଙ୍କୁ ପଛ କରିଦେଇ ଛଳନାର ଅଭିନୟକୁ ଶେଷକରି ଅତୀତକୁ ଖୋଜିବା ଭିତରେ ଦ୍ୱିତୀୟ ଦୃଶ୍ୟର ପରିସମାପ୍ତି ଘଟିଛି ।

ନାଟକର ତୃତୀୟ ଦୃଶ୍ୟରେ ଦେଖାଯାଇଛି ମଞ୍ଚର ପ୍ରଥମ ଜୋନ୍‌ରେ ମୁକ୍ତିକାମୀ ମୁକ୍ତିପାଦ ସହ ଜଣେ ବାଳକ । ବାଳକର ଶୈଶବ ଭିତରେ ମୁକ୍ତିପାଦ ନିଜର ଶୈଶବକୁ ଖୋଜିଛି । ଶୈଶବର ଚପଳତାରେ ହଜିଯାଇଛି ମୁକ୍ତିପାଦ । ମୁକ୍ତିପାଦର ଏପରି ବିହ୍ୱଳପଣ ବାଳକକୁ ଆଚମ୍ବିତ କରିଛି ।

ମୁକ୍ତିପାଦ ।। ଭୀଷଣ ବର୍ଷା ହେଉଥିବାବେଳେ ତମେ ସବୁ ଏକାଠି ହୋଇ କାଗଜ ଡଙ୍ଗା ଭସାଉଥିବ । ଜାମାପ୍ୟାଣ୍ଟ୍ ଓଦାକରି ଘରକୁ ଫେରିଲାବେଳେ ଘରେ ମାଡ଼ ବି ଖାଉଥିବ ।

ବାଳକ ।। (ଆନନ୍ଦରେ) ତମେ ଏସବୁ କଥା କେମିତି ଜାଣିଲ ? ତମେ କ'ଣ ମତେ ଆଗରୁ ଚିହ୍ନିଥିଲ ? ଆମଘର ସହ କ'ଣ ତୁମର ପରିଚୟ ଅଛି ?

ମୁକ୍ତିପାଦ ।। ମୁଁ କାହାକୁ ଚିହ୍ନିନି ବାଳକ, ମତେ ମଧ୍ୟ କେହି ଚିହ୍ନି ନାହାନ୍ତି ଏଇ ଦୁନିଆରେ । ହେଲେ ମୁଁ ତୋ ବୟସର ସବୁ ପିଲାଙ୍କୁ ଜାଣେ ।(ପୃ.୨୮-୨୯)

ବାଳକଟିର ଚପଳତା ସହ ମୁକ୍ତିପାଦ ନିଜର ଶୈଶବକୁ ଖୋଜିବାକୁ ଯାଇ ସତେଯେମିତି ଆକୁଳ ହୋଇପଡ଼ିଛି । ବାଳକ ପରି ସେ ବି ଦିନେ ସ୍କୁଲ ଯାଉଥିଲା । ଦୋଳି ମାଙ୍କୁଡ଼ି ଖେଳ ଖେଳୁଥିଲା । ବର୍ଷାରେ କାଗଜ ଡଙ୍ଗା ଭସାଉଥିଲା, ପଡ଼ିଶାଘର ଝିଅସହ ବୋହୂବୋହୂକା ଖେଳ ଖେଳୁଥିଲା । ନିଜର ଅପହୃତ ଶୈଶବକୁ ଖୋଜିବାରେ ବିଫଳ ମୁକ୍ତିପାଦ ଦୁଃଖରେ ମ୍ରିୟମାଣ ହୋଇଛି ।

ନାଟକର ଚତୁର୍ଥ ଦୃଶ୍ୟରେ ମଞ୍ଚର ପ୍ରଥମ ଜୋନ୍‌ଟି ଧୂସର ରଙ୍ଗର ଆଲୋକରେ ଆଲୋକିତ ହୋଇଛି । ଏହି ଦୃଶ୍ୟରେ ମୁକ୍ତିପାଦ ସହ ସାକ୍ଷାତ ହୋଇଛି ପୂର୍ବୋକ୍ତ ତରୁଣଟିର । ତରୁଣଟି ନିଜର ପ୍ରେମିକାକୁ ତା'ର ଅତୀତ ପ୍ରେମକୁ ଖୋଜିବାକୁ ଯାଇ ନିରାଶ ହୋଇଛି । ସେଥିପାଇଁ ମୁକ୍ତିପାଦ କହିଛି –

ମୁକ୍ତିପାଦ ।। ଜୀବନରେ... ହଁ ସମସ୍ତଙ୍କ ଜୀବନରେ କେବଳ ହରେଇବାର ଅସହ୍ୟ ଦୁଃଖ, ପାଇବାର କିଛି ନାହିଁ, ଜୀବନର ଅନୁଭୂତି ତିକ୍ତ ବିସ୍ୱାଦମୟ । (ପୃ.୪୦)

ତରୁଣଟି ବିଫଳ ହୋଇ ମଞ୍ଚରୁ ଚାଲିଯିବାପରେ ମୁକ୍ତିପାଦ ଅନୁଭବ କରିଛି ଯେ ଜୀବନର ପାଇବା ଆଉ ହରେଇବା ପୁଣି ଖୋଜିବାର ଆକୁଳତା ଭିତରେ ମୁକ୍ତି ନାହିଁ । ମୁକ୍ତିପାଦ ପ୍ରଥମ ଜୋନ୍‌ରୁ ଦ୍ୱିତୀୟ ଜୋନ୍‌କୁ ଆସିବା ପରେ ଦ୍ୱିତୀୟ ଜୋନ୍‌ଟି ଆଲୋକିତ ହୋଇଛି ।

ନାଟକର ପଞ୍ଚମ ଦୃଶ୍ୟରେ ପୂର୍ବପରି ପ୍ରଥମ ଜୋନ୍‌ଟି ଧୂସର ରଙ୍ଗର ଆଲୋକର ପ୍ଲାବନରେ ପ୍ଲାବିତ ହୋଇଛି । ଏଠାରେ ତରୁଣ ବଦଳରେ ତୃତୀୟ ଦୃଶ୍ୟର ମହିଳା ଜଣକ ଛିଡ଼ା ହୋଇଛନ୍ତି । ପରିବାର ରୂପକ ରଙ୍ଗମଞ୍ଚରେ ସ୍ୱାମୀର-ସ୍ତ୍ରୀ, ପିଲାମାନଙ୍କ ମାଆ ଭୂମିକାରେ ଅଭିନୟ କରି ଥକିଯାଇଥିବା ମହିଳାଜଣକ ବି ଅସହାୟ କପୋତୀ ପାଲଟି ଯାଇଛନ୍ତି । ସ୍ୱାମୀ, ପିଲାଛୁଆଙ୍କୁ ପଛ କରିଦେଇ ଉନ୍ମାଦନା ନେଇ ସେ ନିଜର ଅତୀତର ପ୍ରେମକୁ ଖୋଜିବାକୁ ଯାଇ ବିଫଳ ହୋଇଛନ୍ତି । ଅନ୍ୟ ଉପାୟ ନ ପାଇ ସେ ପୁଣି ଫେରିଯାଇଛନ୍ତି ପରିବାରର ରଙ୍ଗମଞ୍ଚକୁ । ପୁଣି ତାଙ୍କୁ ମୁଖାପିନ୍ଧି ଅଭିନୟ କରିବାକୁ ପଡ଼ିବ ।

ମହିଳା ।। ନହେଲେ ରାସ୍ତା କାହିଁ ? ବଞ୍ଚିବାକୁ ତ ପଡ଼ିବ, ଜଣେଇବାକୁ ପଡ଼ିବ ମୁଁ ସୁଖୀ, ମୋର କିଛି ହୋଇନାହିଁ । (ପୃ.୪୭)

ନାଟକର ଶେଷ ଦୃଶ୍ୟରେ ପ୍ରଥମ ଜୋନ୍‌ରେ ମୁକ୍ତିପାଦଙ୍କ ସହ ପ୍ରସ୍ତାବନା ଦୃଶ୍ୟପରି ପୂର୍ବଦୃଶ୍ୟମାନଙ୍କର ବାଳକ, ବୃଦ୍ଧ, ତରୁଣ, ସ୍ୱାମୀ, ସ୍ତ୍ରୀଙ୍କର ଉପସ୍ଥିତି ରହିଛି । ସେମାନେ ବୃତ୍ତାକାରରେ ମୁକ୍ତିପାଦକୁ ଘେରିରହିଛନ୍ତି । ବ୍ୟଥା-ବେଦନା ଓ ଦୀର୍ଘଶ୍ୱାସ ମଣ୍ଡିତ ସ୍ୱର

ପରଦା ଅନ୍ତରାଳରୁ ଭାସି ଆସିଛି । ପୂର୍ଣ୍ଣ ଆଲୋକରେ ସମସ୍ତେ ନିଶ୍ଚଳ ହୋଇପଡ଼ିଲାବେଳେ ବୃଦ୍ଧ କେଇପାଦ ଆଗକୁ ଆସି ମୁଣ୍ଡରେ ହାତଦେଇ ଅବସନ୍ନ ଭାବେ ବସି ରହିଛନ୍ତି ଓ ଅନ୍ୟମାନଙ୍କ ପରି ଖୋଜିବାକୁ ଯାଇ ବିଫଳ ହୋଇଛନ୍ତି । ଏହି ସମୟରେ କୌଣସି ଶବାଧାରକୁ ନେଇ ଯିବାର ସାଉଣ୍ଡ୍ ଇଫେକ୍ଟ ଆସିଛି । ପରେ ମଞ୍ଚ ଅନ୍ଧକାର ହେବା ସହ ସମୁଦ୍ରଗର୍ଜନ ଓ ଐକିତାନିକ ସ୍ୱର ଲହର ଭାସିଆସିଛି । କିଛି ସମୟ ପରେ ମଞ୍ଚର ପ୍ରଥମ ଜୋନ୍‌ରେ ଆଲୋକ ଆସିଲା ବେଳକୁ ନିଶ୍ଚଳ ମୁକ୍ତିପାଦଙ୍କୁ ଦେଖିବାକୁ ମିଳିଛି । ସାଇକ୍ଲୋମାରେ ଆଲୋକର ବିଭିନ୍ନ ରଙ୍ଗ ତାଙ୍କ ଉପରେ ବିଛୁରିତ ହୋଇପଡ଼ିଛି । ଜୀବନର ଅନ୍ତଃହୀନ ଅନ୍ୱେଷଣ ଭିତରେ ବିଷାଦ ବଳୟ ଭିତରୁ ମୁକୁଳି ପାରୁନଥିବା ମଣିଷର କଥା କହିବା ଭିତରେ ମଞ୍ଚ ଅନ୍ଧକାର ହୋଇଛି ।

ଚରିତ୍ର ଓ ଆଲୋକକୁ ନେଇ ନାଟକଟିରେ ବେଶ ପରୀକ୍ଷା ନିରୀକ୍ଷା ସଂପାଦିତ ହୋଇଛି । ବାଳକ-ତରୁଣ-ଯୁବକ-ଯୁବତୀ-ବୃଦ୍ଧଙ୍କ ଭିତରେ ପ୍ରତ୍ୟେକ ମଣିଷର ବିଷାଦଗ୍ରସ୍ତ ଜୀବନର, ଅପ୍ରାପ୍ତିର କ୍ଷୋଭକୁ ଦର୍ଶାଇ ଦିଆଯାଇଛି । ପ୍ରତ୍ୟେକ ମଣିଷ ଆଜି ମୁକ୍ତିପାଦ ପରି ଜୀବନକୁ ଖୋଜିବାକୁ ଯାଇ ବିଫଳ ହୋଇଛନ୍ତି । ମୁକ୍ତିପାଦ ସମଗ୍ର ମାନବ ସମାଜର ପ୍ରତିନିଧି । ତା'ର ମୁକ୍ତି ଆକାଙ୍‌କ୍ଷା ମଣିଷର ମୁକ୍ତି ଆକାଙ୍‌କ୍ଷା । ନାଟକର ଆଲୋକ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଥିବାରୁ ଏବେ ଏହାର ବର୍ଣ୍ଣନା କରିବା ଆବଶ୍ୟକତା ନାହିଁ । ନାଟକର ସଂଳାପଗୁଡ଼ିକ ଗୀତି କବିତାର ମାଧୁର୍ଯ୍ୟରେ ମଣ୍ଡିତ ହୋଇଛି ।

ଜୀବନଦର୍ଶନର ଗଭୀର ଉପଲବ୍ଧି ଭିତରେ ଜୀବନକୁ ନବୁଝିବାର, ଖୋଜି ନପାଇବାର ଅବସୋସ ମଧ୍ୟରେ ପ୍ରତ୍ୟେକ ମଣିଷ ପାଇବା ହରେଇବାର ବିଷାଦ ବଳୟ ଭିତରେ ଯେ ଆବଦ୍ଧ ଏହା ହିଁ ନାଟକଟି ସୂଚାଇଦେଇଛି । ତେଣୁ ମୁକ୍ତିପାଦର ମୁକ୍ତି ଆକାଙ୍‌କ୍ଷା ପ୍ରତ୍ୟେକ ମଣିଷର ବିଷାଦ ବଳୟରୁ ମୁକ୍ତ ହେବାର ପ୍ରଚେଷ୍ଟା ।



# ଶୋଷଣ ଓ ଅତ୍ୟାଚାରର ପ୍ରତୀକିତ ସତ୍ତା : 'କଂସର ଆତ୍ମା'

ଗତାନୁଗତିକ ନାଟ୍ୟ ପରମ୍ପରାକୁ ଅସ୍ୱୀକାର କରି ଅଥଚ ଗତାନୁଗତିକ ପରିବେଶ ଭିତରେ ନୂତନ ଚିନ୍ତାଧାରାକୁ ଦର୍ଶାଇବାରେ ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ ନାଟକଗୁଡ଼ିକର ଦକ୍ଷତା ଘେନି କୌଣସି ପ୍ରଶ୍ନବାଚୀ ସୃଷ୍ଟି ହୋଇନଥାଏ । ଏହି ଦୃଷ୍ଟିରୁ ବିଚାରକଲେ ପୁରାଣର ଚିତ୍ର-ଚରିତ୍ର-ଉପାଖ୍ୟାନକୁ ଆଧୁନିକତାର ମାନଦଣ୍ଡରେ ମୂଲ୍ୟାୟନ କରି ବିବର୍ତ୍ତିତ ମୂଲ୍ୟବୋଧ ସହ ସମନ୍ୱିତ କରିବାରେ ଡ. ଶତପଥୀଙ୍କ ନାଟକମାନ ସଫଳ ହୋଇପାରିଛି । ଏ ଅବକାଶରେ ତାଙ୍କ 'କଂସର ଆତ୍ମା' ନାଟକକୁ ଗ୍ରହଣ କରାଯାଇପାରେ । ଏ ନାଟକଟି ନାଟ୍ୟକାରଙ୍କ ନାଟ୍ୟଜୀବନର ମୋଡ଼ ବୁଲାଣି କହିଲେ ଉଚିତ୍ ହେବ । କାରଣ ତାଙ୍କ ସମକାଳୀନ ନାଟ୍ୟଧାରାରେ ପରିଲକ୍ଷିତ ରୋମାଣ୍ଟିକ ବିଷାଦବୋଧ, ବ୍ୟକ୍ତି ଜୀବନର ଅସହାୟତା-ନିଃସଙ୍ଗତା ପୁଣି ବୌଦ୍ଧିକତାର ସୂକ୍ଷ୍ମ ଆବରଣକୁ ପରିହାର କରି ଏ ନାଟକ ଓଡ଼ିଆ ନାଟ୍ୟଧାରାରେ ବିଦ୍ରୋହ ଓ ଅଙ୍ଗୀକାରର ନୂଆ ଖସଡ଼ା ପ୍ରସ୍ତୁତ କରିଛି । ୧୯୭୬ ମସିହାରେ ରଚିତ ଓ ୧୯୮୦ରେ ମଞ୍ଚସ୍ଥ ହୋଇଥିବା ନାଟକ 'କଂସର ଆତ୍ମା' ନାଟ୍ୟକାର ଶତପଥୀଙ୍କର ନାତିଦୀର୍ଘ ପରୀକ୍ଷାମୂଳକ ନାଟକ । ଦୁଇଟି ଭିନ୍ନ ପରିବେଶ - କାଳ୍ପନିକ ରାଜକୀୟ ପଟ୍ଟଭୂମି ଓ ଆଧୁନିକ ଶିଳ୍ପସଭ୍ୟତାର ପଟ୍ଟଭୂମିରେ ରଚିତ ଏ ନାଟକ ପୁରାଣର 'କଂସ' ଚରିତ୍ରକୁ ନୂତନ ନାଟ୍ୟଶୈଳୀ ମଣ୍ଡିତ କରି ଉପସ୍ଥାପନ କରିଛି । କଂସର ମିଥ୍ ଅବତାରଣା କରି ନାଟ୍ୟକାର ନାଟକରେ ଯାହା ଦେଖାଇବାକୁ ଚାହିଁଛନ୍ତି ତାହା ତାଙ୍କର ସ୍ୱୀକାରୋକ୍ତିରୁ ସ୍ପଷ୍ଟ ହୋଇଯାଏ । "ଏଥିରେ କଂସର ଆତ୍ମା ବୋଲି ମୁଁ ଯାହାକୁ ମନେ କରିଛି ସେ ହେଉଛି କଂସର ଭାବମୂର୍ତ୍ତି । ସେ ହେଉଛି ଅନ୍ୟାୟ, ଶୋଷଣ ଓ ଅତ୍ୟାଚାରର ପ୍ରତୀକ , ମଣିଷ ମନ ମଧ୍ୟରେ ତା'ର ସ୍ଥାନ, ବହୁ ବିପ୍ଳବ, ସମାଜର ବିବର୍ତ୍ତନ ଧାରା ତାକୁ ବିନାଶ କରିପାରିନି କିମ୍ୱା ପାରିବ ନାହିଁ ମଧ୍ୟ । ଏ କଥା ହୁଏତ ଇତିହାସରେ ଦେଖାଦେଇଛି କେତେବେଳେ ଶାସିତ ବିପ୍ଳବର ଡାକରା ଦେଇ ଅତ୍ୟାଚାରୀ ଶାସକକୁ ଗାଦିଚ୍ୟୁତ କରିଛି କିମ୍ୱା ପରାଜିତ ହୋଇଛି ନିର୍ମମ ଭାବରେ । ନୂତନ ଶାସନର ଧାରା ଆସିଛି ସମାଜକୁ; ମାତ୍ର ସବୁଠି କଂସ । ବଡ଼ ବ୍ୟାପକ ତା'ର ଗତି । ସେ ବିଶ୍ୱର ପ୍ରତି ଅଣୁ ପରମାଣୁରେ ମିଶିଯାଇଛି । କୃଷ୍ଣ କିମ୍ୱା

ଯେତେ ମହାପୁରୁଷ ଆସିଛନ୍ତି ଏ ପୃଥିବୀକୁ ତା'ର କେହି କିଛି କରିପାରିନାହାନ୍ତି । ନାଟକରେ ଦୁଇଗୋଟି ଅଙ୍କ ମାଧ୍ୟମରେ ଦୁଇଗୋଟି ଭିନ୍ନ ଭିନ୍ନ ଶାସନତନ୍ତ୍ର, ସମାଜ ବ୍ୟବସ୍ଥାର ଚିତ୍ର ଦିଆଯାଇ ଏହାକୁ ପରିସ୍ଫୁଟ କରାଯାଇଛି ।" (ନିଜସ୍ୱ ସଂଳାପ = 'କଂସର ଆତ୍ମା')

ପୁରାଣର ଆଖ୍ୟାନକୁ ପ୍ରତ୍ୟକ୍ଷ ଭାବେ ଉପସ୍ଥାପନ କରିବା ଅପେକ୍ଷା ଆଭାସଧର୍ମୀ ଗୁଣରେ ତଥା ତାକୁ ନୂତନ କୌଶଳ ଭିତରେ ଉପସ୍ଥାପନ କରିବାର ଚତୁରୀଟି ନାଟକ 'କଂସର ଆତ୍ମା'ରେ ଲକ୍ଷ୍ୟ କରାଯାଇପାରେ । ଶ୍ରେଣୀ ସଂଘର୍ଷର ଅବତାରଣା କରିବା ଅବକାଶରେ ନାଟ୍ୟକାର ଯେପରି ଦୁଇଟି ଭାଗରେ ତଥା ଦୁଇ ଭିନ୍ନ ପ୍ରସଙ୍ଗ, ପରିବେଶ ଆଧାରରେ ନାଟକଟିର ପରିକଳ୍ପନା କରିଛନ୍ତି, ତାହା ଏବେ ବିଚାର କରାଯାଇପାରେ । ମଦାନ୍ଧ ସ୍ୱଚ୍ଛଳ କ୍ଷମତାସଂପନ୍ନ ବ୍ୟକ୍ତିମାନଙ୍କର ନିଃସହାୟ ଦୁର୍ବଳ ଶ୍ରେଣୀର ଲୋକଙ୍କ ଉପରେ ଅତ୍ୟାଚାର ଓ ଏହି ଅତ୍ୟାଚାରର ବିରୋଧରେ ସାଧାରଣ ଜନତାର ପ୍ରତିବାଦ ନାଟକର ମୁଖ୍ୟ ଉପଜୀବ୍ୟ । ମିଥ୍‌ର ନିର୍ଯ୍ୟାସ ବା ମୋଟିଫ୍‌କୁ ଏଥିରେ ଖୋଜାଯାଇପାରେ ।

ନାଟକର ପ୍ରଥମ ଭାଗଟି କାଳ୍ପନିକ ପୃଷ୍ଠଭୂମିକୁ ଆଧାର କରିଛି । ପୁରାଣର ଅତ୍ୟାଚାରୀ କଂସ ଆଉ ଚରିତ୍ର ହୋଇ ରହିନାହିଁ । ବରଂ ଅତ୍ୟାଚାର-ଅନ୍ୟାୟର ଦୁର୍ବଳ ମାନସିକତା ହୋଇ ପ୍ରତ୍ୟେକ ଖଳ ପ୍ରବୃତ୍ତିର ବ୍ୟକ୍ତି ଭିତରେ ସେ ଦେଖା ଦେଇଛି । ନାଟକର ପ୍ରଥମ ପର୍ବରେ ସେଥିପାଇଁ କଂସ ଘୋଷଣା କରିଛି –

କଂସ : ହାଃ..ହାଃ..ହାଃ । ମୁଁ କଂସ, ମୋର ମୃତ୍ୟୁ ନାହିଁ କୃଷ୍ଣ ! ଦ୍ୱାପର ଯୁଗରେ ମୋର ନଶ୍ୱର ଦେହଟାକୁ ଧ୍ୱଂସ କରି ଆଉ ତ୍ରେତୟାରେ ରାମ ରୂପରେ ରାବଣ ବୋଲାଉଥିବା ମୋର ଶରୀରକୁ ହତ୍ୟାକରି ତମେ ଭାବିଛ ସୃଷ୍ଟିରେ ପୁଣ୍ୟ ପ୍ରତିଷ୍ଠା କରିବ ? ନାଁ ଅସମ୍ଭବ ଅସମ୍ଭବ । ତମ ସହ ମୋ ସଂଘର୍ଷର ଇତି ନାହିଁ । ମୋର ଆତ୍ମା ଅଜେୟ ଅମର । ତମକୁ ଏଇମିତି ବାରମ୍ବାର ପୃଥିବୀକୁ ଆସିବାକୁ ପଡୁଥିବ ବିଭିନ୍ନ ରୂପରେ । ମୁଁ ମଧ୍ୟ ବଞ୍ଚିଥିବି ଯୁଗଯୁଗ ଧରି, ପୃଥିବୀର ପ୍ରତିଟି ଅଣୁ-ପରମାଣୁରେ ଆଉ ମଣିଷର ରକ୍ତ କଣିକାରେ । ମୁଁ ସ୍ରଷ୍ଟାଙ୍କଠାରୁ ଆହୁରି ଶକ୍ତିଶାଳୀ, ପ୍ରଳୟଙ୍କର । ମୁଁ କୃଷ୍ଣ, ପର୍ଶୁରାମ, ବୁଦ୍ଧ କାହାରିକୁ ଖାତିର କରେନା । ମୁଁ ଉଦ୍ଧତ, ମୁଁ ପ୍ରଚଣ୍ଡ, ମୁଁ ଚାହେଁ ବିଶ୍ୱକୁ କବଳିତ କରିବାକୁ । ସମସ୍ତେ ମୋର ପ୍ରଜା । ଏପରିକି ଈଶ୍ୱର ବି । ହାଃ... ହାଃ... ହାଃ... ।(କଂସର ଆତ୍ମା, ପୃ.୪)

କଂସ ମଞ୍ଚର ଦୃଶ୍ୟପଟ୍ଟରୁ ଅପସରି ଯିବାପରେ ମଞ୍ଚକୁ ପ୍ରବେଶ କରିଛନ୍ତି ମହାରାଜା ଅନ୍ଧକଙ୍କ ପାରିଷଦ ବୃନ୍ଦ । ନାଟକଟିରେ କଂସର ଆବିର୍ଭାବ ତା'ର ଅମରତ୍ୱକୁ ପ୍ରତିପାଦନ କରେ । ଏଠାରେ କଂସର ସଂଳାପ ଯେପରି ବଳିଷ୍ଠ, ତା'ର ଭାବଭଙ୍ଗୀ ବି ଭୀତିମିଶ୍ରିତ, ରୋମାଞ୍ଚକର ହୋଇପଡ଼ିଛି । ନାଟକର ପ୍ରଥମ ପର୍ବରେ ରାଜତନ୍ତ୍ରର ଅତ୍ୟାଚାର ଓ ଶୋଷଣର

ଚିତ୍ର ଦେଖିବାକୁ ମିଳେ । କଂସର ମୃତ୍ୟୁପରେ ଏ ଅରାଜକତା ଲୋପପାଇ ନାହିଁ ବରଂ ଶୋଷଣର ନିର୍ମମତା ବଢ଼ିଚାଲିଛି । ରାଜା ଓ ରାଜପାରିଷଦ କ୍ଷମତା ମୋହରେ ଅନ୍ଧ ହୋଇଛନ୍ତି । ବଚସ୍କରମାନଙ୍କ ବଳୟ ଭିତରେ ସେମାନେ ନିଜ ପ୍ରଂଶସା ଶୁଣିବାକୁ ବ୍ୟାକୁଳ ହୋଇଛନ୍ତି । ଅତ୍ୟାଚାରୀ ରାଜା ଅନ୍ଧକ ଭିତରେ ନାଟ୍ୟକାର କଂସର ଆତ୍ମାକୁ ଅନୁସନ୍ଧାନ କରିଛନ୍ତି । ପୁରାଣର କଂସ ପରି ରାଜା ଅନ୍ଧକ ନିଷ୍କଣ୍ଟକ ହେବା ପାଇଁ ତା ବିରୋଧରେ ଉଠୁଥିବା ସ୍ୱରକୁ ଦମନ କରିଛନ୍ତି । ଅନ୍ଧକଙ୍କୁ ଘେରି ରହିଥିବା ମନ୍ତ୍ରୀ ଚତୁରାକ୍ଷ, ବୟସ୍ୟ, ଦ୍ୱିତୀୟ ଓ ତୃତୀୟ ପାରିଷଦ ତାଙ୍କ ଶୋଷଣ ବୃକ୍ଷର ଶାଖା ହୋଇଛନ୍ତି । କିନ୍ତୁ ପ୍ରଥମ ପାରିଷଦ ସତ୍ୟବ୍ରତ ବିବେକର ଆହ୍ୱାନରେ ତୋଷାମଦିକୁ ଘୃଣା କରିବା ସହ ରାଜାଜ୍ଞାକୁ ଅବମାନନା କରିଛି । ରାଜାଙ୍କ ଅନ୍ୟାୟ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରୁଥିବା ସତ୍ୟବ୍ରତ ରାଜଆକ୍ରୋଶର ଶିକାର ହୋଇଛନ୍ତି । ସ୍ପଷ୍ଟ ଦିବାଲୋକରେ ତାଙ୍କର ଚକ୍ଷୁ ଉତ୍ପାଟିତ ହୋଇଛି । ଅନ୍ଧ ହୋଇ ସତ୍ୟବ୍ରତ ରାଜାଙ୍କ ବିରୋଧରେ ଦୃଢ଼ ସ୍ୱର ଉତ୍ତୋଳନ କରିଛନ୍ତି । ସେ କହିଛନ୍ତି - "ଶୁଣ ଅତ୍ୟାଚାରୀ ରାଜା ଆଉ ତା'ର ତୋଷାମଦକାରୀ ମାନେ ! ମୋର ଦୁଃଖ ନାହିଁ ଏ ଚରମ ଶାସ୍ତିପ୍ରତି । ରାଜା ଅନ୍ଧକ ଚକ୍ଷୁଥାଇ ବି ଅନ୍ଧ । ଆଉ ମୁଁ ସତ୍ୟର ସନ୍ଧାନ କରି ଯଦି ଚକ୍ଷୁହୀନ ହୁଏ, ସେଥିପାଇଁ ମୋର ତିଳେ ହେଲେ ବି ଭ୍ରୁକ୍ଷେପ ନାହିଁ ।" (ପୃ.୧୨)

ଅନ୍ୟ ପକ୍ଷରେ ରାଜା ଅନ୍ଧକ ଅଶୁଭ ସ୍ୱପ୍ନ ଦେଖିଛନ୍ତି ଯେ, ରାଜଧାନୀ ଉପକଣ୍ଠରେ କେଉଁ ଏକ ଦୀନହୀନ ପରିବାରରେ ଶିଶୁଟିଏ ଜନ୍ମ ହେବାକ୍ଷଣି ତାଙ୍କ ଶାସନର ସୂର୍ଯ୍ୟାସ୍ତ ହେବା ସହ ସେ ଶିଶୁଟି ରାଜାଙ୍କର ହତ୍ୟାକାରୀ ହେବ । ଏହା ଫଳରେ ଆସନ୍ନପ୍ରସବା ଦୀନ ଦରିଦ୍ର ଧର୍ମପାଳର ପତ୍ନୀକୁ ଓ ଧର୍ମପାଳକୁ ବନ୍ଦୀ କରାଯାଇଛି । ଉଭୟଙ୍କୁ କାରାଗୃହ ଭିତରେ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ିଛି । ପୁରାଣର କଂସ ଦେବକୀ ଓ ବସୁଦେବଙ୍କୁ ଉତ୍ପୀଡ଼ନ କଲାପରି ରାଜା ଅନ୍ଧକ ଧର୍ମପାଳ ଓ ତା'ର ପତ୍ନୀଙ୍କୁ ନିର୍ଯ୍ୟାତନା ଦେଇଛନ୍ତି । ଏହାର ପ୍ରତୀକାତ୍ମକ ଉପସ୍ଥାପନ ସାମଗ୍ରିକ ଭାବରେ ଦର୍ଶକଙ୍କ ମନ ଭିତରେ ବିଦ୍ରୋହାର ଭାବ ସଂଚାର କରିଛି । ଅତ୍ୟାଚାରୀ ଅନ୍ଧକ ନିଜର ଲାଳସା ମେଣ୍ଟାଇବା ପାଇଁ ବୟସ୍ୟଙ୍କ କନ୍ୟାକୁ ଭୋଗ କରିବା ପାଇଁ ଚାହିଛନ୍ତି । ତାଙ୍କ ଭ୍ରଷ୍ଟାଚାରର ସମସ୍ତ ଗୁଣ ଚରମ ପରିଣତିରେ ପହଞ୍ଚିଛି । କାରାକକ୍ଷରେ ନିର୍ଯ୍ୟାତନା ଭୋଗୁଥିବା ଧର୍ମପାଳର ପତ୍ନୀ ଏକ ପୁତ୍ର ସନ୍ତାନକୁ ଜନ୍ମ ଦେଇଛି । ସେହି ଅଲୌକିକ ଶିଶୁର ଜନ୍ମ ପରେ ସମସ୍ତ ବନ୍ଦୀଙ୍କ ହାତରୁ ଖସି ପଡ଼ିଛି ଶୃଙ୍ଖଳ । ରାଜାଙ୍କର ଅତ୍ୟାଚାରୀ ସୈନ୍ୟମାନେ ମୃତ୍ୟୁବରଣ କରିଛନ୍ତି । ଏବଂ ବିଦ୍ରୋହୀ ପ୍ରଜାଗଣ ଦଳବଦ୍ଧ ହୋଇ ଅନ୍ଧକଙ୍କ ଅନ୍ଧାରି ଶାସନର ବିଲୋପ କରିବା ପାଇଁ ଆଗେଇ ଆସିଛନ୍ତି । ଧର୍ମପାଳର ପୁତ୍ର ସନ୍ତାନ ଜନ୍ମ କରିବା ପ୍ରସଙ୍ଗ ଭିତରେ ନାଟ୍ୟକାର ଭାଗବତର ଶ୍ରୀକୃଷ୍ଣ ପୁରାଣ ଆଖ୍ୟାନକୁ ପ୍ରତୀକାତ୍ମକ ଭାବେ ଦର୍ଶାଇଛନ୍ତି । କେଉଁଠି ହେଲେ ବି ପୌରାଣିକ

ଘଟଣାର ସଂଯୋଜନା ନକରି ନିଜର ନାଟ୍ୟ କୌଶଳ ଦ୍ୱାରା ପ୍ରତୀକାତ୍ମକ ଛଳରେ ନାଟ୍ୟକାର ଏହି ପୁରାଣ ଆଖ୍ୟାନଟିକୁ ଧର୍ମପାଳର ପୁତ୍ର ଜନ୍ମ ସହ ଯୋଡ଼ି ଦେଇଛନ୍ତି । ନାଟକରେ ମିଥ୍ ପ୍ରସଙ୍ଗକୁ ପ୍ରତ୍ୟକ୍ଷ ଭାବେ ଉପସ୍ଥାପନ କରିବା ଅପେକ୍ଷା ନାଟ୍ୟକାର ବ୍ୟଞ୍ଜନାତ୍ମକ ଢଙ୍ଗରେ ଚିତ୍ରଣ କରିବା ହେଉଛି ନାଟ୍ୟ ପରମ୍ପରାରେ ଏକ ନୂତନ ଅଧ୍ୟାୟ । ଅନ୍ଧ ସତ୍ୟବ୍ରତ ବି ତା'ର ଦୃଷ୍ଟିଶକ୍ତି ଫେରିପାଇ ବିଦ୍ରୋହର ନେତୃତ୍ୱ ନେଇ ଅନ୍ଧକଙ୍କର ସମ୍ମୁଖୀନ ହୋଇଛି ।

ପ୍ରଥମ ପରିଷଦ : ଏକଦା ଆପଣ ମୋ ପ୍ରତି ଶାସ୍ତି ବିଧାନ କରିଥିଲେ । ମୋର ଦୋଷ ଥିଲା ଯେ ମୁଁ ସତ୍ୟ-ନ୍ୟାୟର ବଶବର୍ତ୍ତୀ ହୋଇ ତୋଷାମଦକୁ ଘୃଣା କରିଥିଲି ।

ଅନ୍ଧକ : ତୁମେ ଅନ୍ଧ ହେଲା ପରେ ବି ଦୃଷ୍ଟଶକ୍ତି ଫେରିପାଇଛ । ଆଶ୍ଚର୍ଯ୍ୟ !

ପ୍ରଥମ ପରିଷଦ : ନ୍ୟାୟ ଧର୍ମ ଆଉ ସତ୍ୟର ଚକ୍ଷୁ କ'ଣ ଉତ୍ପାଟିତ କରି ଦିଆଯାଇପାରେ । ସେଇ ଅଲୌକିକ ଶିଶୁର ଜନ୍ମ ପରେ ପରେ ପୁଣି ମୁଁ ମୋର ଦୃଷ୍ଟିଶକ୍ତି ଫେରିପାଇଛି । ଆହୁରି ତେଜୀୟାନ୍, ଆହୁରି ତୀବ୍ର, ଶାଣିତ ହୋଇଉଠିଛି ମୋର ଦୃଷ୍ଟି । ମୋ ଚକ୍ଷୁ ସାମ୍ନାରେ ଏକ ନୂଆ ଯୁଗର ସଙ୍କେତ, ଏକ ଲାଲ ସୂର୍ଯ୍ୟର ସଂକେତ । ସିଏ ତ ଜନ୍ମ ନେଇସାରିଛି, ବିପ୍ଳବର ସାରଥି ଓ ଭଗୀରଥ । (ପୃ.୨୨)

ଶ୍ରୀକୃଷ୍ଣଙ୍କ ଜନ୍ମ ପରେ ପରେ ଯେମିତି ନୂଆ ଯୁଗର ସମ୍ଭାବନା ସୃଷ୍ଟି ହୋଇଥିଲା ଠିକ୍ ସେମିତି ଧର୍ମପାଳର ପୁତ୍ର ଜନ୍ମ ହେବାପରେ ପରିବର୍ତ୍ତନର ସୂର୍ଯ୍ୟୋଦୟ ଘଟିଛି । ନବଜାତ ଶିଶୁର କ୍ରନ୍ଦନ ସହ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହୀ ଜନତାର ପ୍ରତିବାଦର ସ୍ୱର ତୀବ୍ର ହୋଇଛି । ସତ୍ୟବ୍ରତ ଅନ୍ଧକଙ୍କ ଅନ୍ଧ ଶାସନର ଅନ୍ତ ହେବା ସହ ଗଣତନ୍ତ୍ର ଶାସନର ପ୍ରତିଷ୍ଠା ସଂପର୍କରେ ଘୋଷଣା କରିଛନ୍ତି । ଏସବୁ ଭିତରେ ରାଜା ଅନ୍ଧକ ନିଜର ପରାଜୟ ସ୍ୱୀକାର କରିବା ପରିବର୍ତ୍ତେ ପୁଣି ଥରେ ଭିନ୍ନ ରୂପରେ ଅତ୍ୟାଚାରୀ ଶାସକ ଭାବେ ଜନ୍ମ ନେବାର ଆସ୍ପର୍ଦ୍ଧା ରଖିଛନ୍ତି । ଅନ୍ଧକଙ୍କ ଭୟଙ୍କର ହସ ଭିତରେ ମଞ୍ଚ ଅନ୍ଧାର ହେବା ପରେ ମଞ୍ଚରେ ପୁଣି ଆବିର୍ଭାବ ହୋଇଛି କଂସ ଆଉ ସେ ଘୋଷଣା କରିଛି ତା'ର ଦୁର୍ଦ୍ଦମନୀୟ ଅତ୍ୟାଚାରୀ ସତ୍ତା ସଂପର୍କରେ ।

କଂସ : ମୁଁ କଂସ । ବିଶ୍ୱର ପ୍ରତିଟି ଅଣୁ ପରମାଣୁରେ ମୁଁ ବଞ୍ଚିଛି । ମୋର ଆତ୍ମା ଲୁକ୍‌କାୟିତ ମଣିଷ ମନର ଗୁପ୍ତ ଅଭ୍ୟନ୍ତରରେ, କୃଷ୍ଣ ସହ ମୋର ବିରୋଧ ଶେଷ ହୋଇନି କିମ୍ବା ହୋଇପାରିବନି । କେତେବେଳେ କଂସର ବିଜୟ ପୁଣି କେତେବେଳେ କୃଷ୍ଣର । ଯାତ୍ରାପଥ ମୋର ଦୁର୍ନିର୍ବାର । ମୁଁ ଭୟଙ୍କର ଦୁର୍ଦ୍ଦମନୀୟ । (ପୃ.୯୭)

ନାଟକଟି ଦୁଇଟି ପର୍ଯ୍ୟାୟକୁ ନେଇ ରଚିତ ହୋଇ ଥିବାରୁ ଗୋଟିଏ 'ଅତୀତ' ଅନ୍ୟ ଅଂଶଟି 'ବର୍ତ୍ତମାନ'ର ପୃଷ୍ଠଭୂମିକୁ ଇଙ୍ଗିତ କରିଛି । 'ଅତୀତ' ପର୍ଯ୍ୟାୟଟି ରାଜତନ୍ତ୍ର ତଥା ଐତିହାସିକ ପଟ୍ଟଭୂମିକୁ ଆଧାର କରିଥିଲାବେଳେ 'ବର୍ତ୍ତମାନ' ପର୍ଯ୍ୟାୟଟି ଗଣତନ୍ତ୍ର

ବ୍ୟବସ୍ଥା ମଧ୍ୟରେ ପୁଞ୍ଜିପତିର ଶୋଷଣକୁ ଦର୍ଶାଇଛି । ଦୁଇଟିଯାକ ପର୍ଯ୍ୟାୟରେ ଅତ୍ୟାଚାର ଓ ଶୋଷଣ ହିଁ ମୁଖ୍ୟ ସମସ୍ୟା ହୋଇଛି । ରାଜତନ୍ତ୍ର ହେଉ କି ଗଣତନ୍ତ୍ର ହେଉ, ସବୁଠାରେ ଶୋଷଣ ଓ ନିର୍ଯ୍ୟାତନା ହିଁ ସତ୍ୟ ଭାବେ ପ୍ରମାଣିତ ହୋଇଛି ।

ପ୍ରଥମ ପର୍ଯ୍ୟାୟର ପୌରାଣିକ/କାଳ୍ପନିକ ପଟ୍ଟଭୂମିର ରୂପାନ୍ତର ଘଟିଛି ଓ ତାହା ଦ୍ୱିତୀୟ ପର୍ଯ୍ୟାୟରେ ହୋଇଛି ଆଧୁନିକ ସମାଜ ବ୍ୟବସ୍ଥା । ପ୍ରଥମ ପର୍ଯ୍ୟାୟର ରାଜା ଅନ୍ଧକ ଦ୍ୱିତୀୟ ପର୍ଯ୍ୟାୟରେ ଶିଳ୍ପପତି ଅନ୍ଧଲୋଚନ ଭାବେ ଦେଖା ଦେଇଛନ୍ତି । ତାଙ୍କ କାରାଖାନର ଶ୍ରମିକମାନଙ୍କ ଉପରେ ଅତ୍ୟାଚାର ଏବଂ ଅସାଧୁ ଉପାୟ ଅବଲମ୍ବନ କରୁଥିବା ପଦସ୍ଥ କର୍ମଚାରୀଙ୍କର ଶିଳ୍ପପତି ଅନ୍ଧଲୋଚନକୁ ଅନ୍ୟାୟପୂର୍ଣ୍ଣ ସାହାଯ୍ୟ ଆଦି ଘଟଣା ହୋଇଛି ପ୍ରଥମ ପର୍ବର ପରିପୂରକ । ନାଟକର ଦ୍ୱିତୀୟ ପର୍ଯ୍ୟାୟରେ ସୂତ୍ରଧାର ଉପସ୍ଥିତ ହୋଇ ଅତୀତର କଥାଭାଗ ସହ ବର୍ତ୍ତମାନକୁ ସଂଯୁକ୍ତ କରି ନିଜର ମତ ଉପସ୍ଥାପନ କରିଛି । ଏଥିରେ କାହାଣୀ ଦୂର ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ଲମ୍ବି ଆସିଛି । ନାଟକଟିରେ ଟ୍ରାନ୍‌ସଫରମେସନ୍ ଟେକ୍‌ନିକ୍ ପ୍ରୟୋଗ ହୋଇଥିବାରୁ ପୂର୍ବ ପର୍ଯ୍ୟାୟର ଘଟଣା ଓ ଚରିତ୍ରରେ ରୂପାନ୍ତର ଆସିଛି । ଫଳରେ ରାଜା ଅନ୍ଧକ କାରଖାନା ମାଲିକ ଅନ୍ଧଲୋଚନ, ମନ୍ତ୍ରୀ ଚତୁରସେନ, ପାରିଷଦ ଦ୍ୱିତୀୟ ଓ ତୃତୀୟ ଯଥାକ୍ରମେ ପୋଲିସ୍ ଅଫିସର ଏବଂ କର୍ମଚାରୀ, ବୟସ୍ୟ- ମ୍ୟାନେଜର ଭାବେ ମଞ୍ଚକୁ ଆସିଛନ୍ତି । କିନ୍ତୁ ଧର୍ମପାଳ ଓ ସତ୍ୟପାଳ ଚରିତ୍ରଦ୍ୱୟ ପୂର୍ବ ପରି ସତ୍ୟକୁ ଆଶ୍ରୟ କରି ସମୂହର ସ୍ୱାର୍ଥ ରକ୍ଷା କରୁଥିବାରୁ ସେମାନଙ୍କର କୌଣସି ପରିବର୍ତ୍ତନ ଘଟିନି, ତଥାପି ଦୁହେଁ ସାଧାରଣ ମଣିଷ / ସର୍ବହରାର ପ୍ରତିନିଧି ଭାବେ ଦେଖା ଦେଇଛନ୍ତି ।

ନାଟକର ଦ୍ୱିତୀୟ ପର୍ଯ୍ୟାୟ ଶିଳ୍ପପତି ଅନ୍ଧଲୋଚନ ସାହସମଲ୍ଲଙ୍କ ଫାକ୍ଟ୍ରିର ଧର୍ମଘଟକୁ ନେଇ ଗତିଶୀଳ ହୋଇଛି । ଅର୍ଥ-କ୍ଷମତାର ଆସନରେ ଅଧିଷ୍ଠିତ ଅନ୍ଧଲୋଚନଙ୍କ ପାଖରେ ଶ୍ରମିକମାନେ ନିଜର ହକ୍ ଦାବିପାଇଁ ଧାରଣା ଦେଇଛନ୍ତି । ମାର୍କସ୍‌ବାଦୀ ଚିନ୍ତାଧାରାର ପ୍ରତିଫଳନ ଏହି ଦ୍ୱିତୀୟ ପର୍ଯ୍ୟାୟରେ ଲକ୍ଷ୍ୟ କରାଯାଏ । ସର୍ବହରା ଗୋଷ୍ଠୀ ପୁଞ୍ଜିପତି ବିରୋଧରେ ଯେଉଁ ସଂଗ୍ରାମ କରିଛନ୍ତି, ତାହା ଶିଳ୍ପପତିର ଷଡ଼୍‌ଯନ୍ତ୍ରରେ ଧୂଳିସାତ୍ ହୋଇଛି । ମିଥ୍ୟା ମର୍ଡ଼ର କେସ୍‌ରେ ବିଦ୍ରୋହୀ ଶ୍ରମିକ ଧର୍ମପାଳ ଓ ସତ୍ୟବ୍ରତକୁ ପୋଲିସ୍ ଗିରଫ କରିନେଇଛି । ଶ୍ରମିକମାନଙ୍କ ଦାବି ଚିରଦିନ ପାଇଁ ଅବଦମିତ ହୋଇଯାଇଛି ପୁଞ୍ଜିପତିର ଚକ୍ରାନ୍ତରେ । ସୀମିତ ପରିବେଶ-ପରିସ୍ଥିତି ଭିତରେ ବି ନାଟ୍ୟକାର ବର୍ତ୍ତମାନ ସମାଜର ଅନୈତିକ କାର୍ଯ୍ୟକଳାପ ସହ ପୁଞ୍ଜିପତିର ସର୍ବହରା ଶ୍ରମିକ ଉପରେ ନିର୍ଯ୍ୟାତନାର ଝଲକ ଦେଖାଇଛନ୍ତି । "ପୁରାଣ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗପର୍ଯ୍ୟନ୍ତ ପ୍ରତି ସ୍ତରରେ ନୀତିହୀନ, ଭ୍ରଷ୍ଟାଚାରୀ ଉତ୍ପୀଡ଼କ ବ୍ୟକ୍ତିଗଣ କିଭଳି ଧନ ଓ କ୍ଷମତା ବଳରେ ସାଧାରଣ ଜନତାକୁ ଶୋଷଣ କରିଆସିଛନ୍ତି ଏବଂ ଶୋଷଣ ଅତ୍ୟାଚାରର ଗୋଟିଏ ସାମ୍ରାଜ୍ୟକୁ ଧ୍ୱଂସ କରି

ସାଧାରଣ ଜନତା ଦୀର୍ଘଶ୍ୱାସ ନେଲାବେଳେ ପୁଣି ଗୋଟିଏ ନୀତିହୀନ ସାମ୍ରାଜ୍ୟ କିଭଳି ଭିନ୍ନ ରୂପରେ ମୁଣ୍ଡ ଟେକୁଛି; ତା'ର ଏକ ନିଖୁଣ ଚିତ୍ର 'କଂସର ଆତ୍ମା' ବହନ କରିଛି ।" (ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା, ପୃଷ୍ଠା-୭୧)

ଧର୍ମପାଳ ଓ ସତ୍ୟବ୍ରତଙ୍କୁ ବିନା ଦୋଷରେ ଜେଲ୍‌କୁ ପଠାଇ ସର୍ବହରାର ଦାବିକୁ ଗୋଡ଼ରେ ଆଡ଼େଇଦେଇ ଦର୍ପର ସହିତ ହସିଛନ୍ତି ଅନ୍ଧଲୋଚନ । ତାଙ୍କ ହସ ସହିତ ମଞ୍ଚ ଅନ୍ଧକାର ହେଲାବେଳେ ମଞ୍ଚରେ ପୁଣି ଆଲୋକ ଆସିଲାବେଳକୁ ସୂତ୍ରଧରକୁ ଦେଖିବାକୁ ମିଳିଛି । ପ୍ରତି ଯୁଗରେ ସାଧାରଣ ମଣିଷ ବିଦ୍ରୋହ କରି ହୀନବଳ ହୋଇଛି ସତ, ମାତ୍ର କଂସର ଆତ୍ମାକୁ ଧ୍ୱଂସ କରିପାରି ନି । ସେହି ଆତ୍ମାର ଧ୍ୱଂସ କିପରି ହୋଇପାରିବ ସେଇ ପ୍ରଶ୍ନବାଚୀ ଦର୍ଶକଙ୍କ ଉପରେ ଛାଡ଼ିଦେଇ ସୂତ୍ରଧର ମଞ୍ଚରୁ ଅପସରି ଗଲାପରେ ବିକଟାଳ ହସ ସହ ମଞ୍ଚରେ ପୁଣି ଉପସ୍ଥିତ ହୋଇଛି କଂସ । ଆଉ ସେ ନିଜର ଅମରତ୍ୱ ଓ ଅପରାଜେୟତାକୁ ଘୋଷଣା କରିଛି ।

କଂସ : ହାଃ...ହାଃ... ହାଃ... ମୁଁ ସବୁଆଡ଼େ ପରିବ୍ୟାପ୍ତ । ମୁଁ ସମସ୍ତଙ୍କୁ ଗ୍ରାସ କରିବାକୁ ଚାହେଁ । ମୋର କ୍ଷୁଧା ଅନେକ । ମୁଁ ଅମର । ହାଃ...ହାଃ...ହାଃ...ହାଃ । ଶତଶତ କୃଷ୍ଣ, ରାମ, ପର୍ଶୁରାମ, ଇତିହାସର ଗତିପଥ, ସମୟର ବିବର୍ତ୍ତନ, ସମସ୍ତଙ୍କୁ ବେଖାତିର କରି ମୁଁ ମାଡ଼ି ଚାଲିଛି, ମୁଁ କଂସ, ଦୁନିର୍ବାର, ଦୁର୍ଦ୍ଧଷ, ଅପରାଜେୟ ହାଃ... ହାଃ... ହାଃ.. । (ପୃ.୪୬)

ନାଟକର ଦୁଇଟିଯାକ ପର୍ଯ୍ୟାୟକୁ ଅନୁଶୀଳନ କଲେ ଏହି ସୂଚନା ମିଳେ ଯେ, ପୁରାଣ ଯୁଗର କଂସ, ଐତିହାସିକ ସମୟର ଅନ୍ଧକ କିମ୍ବା ଆଧୁନିକ ସମୟର ଶିଳ୍ପପତି ଅନ୍ଧଲୋଚନ ସମସ୍ତେ ଗୋଟିଏ ଶ୍ରେଣୀର ପ୍ରତିନିଧି । ସମସ୍ତେ ଶୋଷକ-ଅତ୍ୟାଚାରୀ କଂସ ଓ ତା ବିରୁଦ୍ଧରେ ବିଦ୍ରୋହ ଏକମାତ୍ର ସତ୍ୟ । ହୁଏତ କଂସ ମରିପାରେ କିମ୍ବା ନ ମରିପାରେ - ସେଇଟା ବଡ଼କଥା ନୁହେଁ । ସତ୍ୟ ହେଉଛି ଦ୍ୱନ୍ଦ୍ୱ । ସଂଘର୍ଷ ବା ଡାଇଲେକ୍‌ଟିକ୍ସ ।

ନାଟକଟି ନାରୀ ଚରିତ୍ର ବିବର୍ଜିତ ହୋଇଥିଲେ ବି ଅନ୍ତରାଳରେ ନାରୀର ଉପସ୍ଥିତି ପ୍ରଥମ ଦୃଶ୍ୟରେ ରହିଛି । ମୁକ୍ତଧାରାରେ ଏହି ନାଟକଟି ରଚିତ ହୋଇଥିବାରୁ ଏହାର ପରିବେଷଣର ସେପରି କୌଣସି ଜଟିଳତା ପରିଲକ୍ଷିତ ହୁଏ ନାହିଁ । ପାରମ୍ପରିକ ଯାତ୍ରାଶୈଳୀ ଭିତରେ ନାଟ୍ୟକାର ସମାଜ ବ୍ୟବସ୍ଥାର ଦୁର୍ବଳ ଦିଗକୁ ସମାଲୋଚନା କରିଛନ୍ତି । କଂସର ଆତ୍ମା ନାଟକରେ କୃଷ୍ଣଜନ୍ମ ତଥା କଂସର ମିଥ୍‌କୁ ନୂତନ ଢଙ୍ଗରେ ପରିବେଷଣ କରିଛନ୍ତି । "ମିଥ୍‌ର ପୁର୍ନଗଠନ ମଧ୍ୟ ଦେଇ ସତ୍ୟର ପରିପ୍ରକାଶ ହେଉଛି, ଏ ନାଟକର ଗୁରୁତ୍ୱପୂର୍ଣ୍ଣ ଦିଗ । ନାଟକର ପ୍ରଥମ ପର୍ଯ୍ୟାୟରେ ଆମେ ଦେଖୁ ବିପ୍ଳବ ସଫଳ ହୋଇଛି ସ୍ୱେଚ୍ଛାଚାରୀ ଶାସକ ବିରୁଦ୍ଧରେ । ଦ୍ୱିତୀୟ ପର୍ଯ୍ୟାୟରେ କିନ୍ତୁ ବିପ୍ଳବକୁ ଦମନ କରାଯାଇଛି ନିଷ୍ଠୁର ଭାବରେ ।

ଏଥିରୁ ଗୋଟିଏ ସିଦ୍ଧାନ୍ତର ଅଭ୍ୟୁଦୟ ଘଟୁଛି । ତାହାହେଲେ ବିପ୍ଳବର ସଫଳତା ପୁଣି ବିପ୍ଳବର ଅସଫଳତା । ସ୍ୱେଚ୍ଛାଚାରୀ ଶାସକର ପରାଜୟ କିମ୍ବା ଅଭ୍ୟୁଦୟ କେଉଁଟି ହେଲେ ବଡ଼କଥା ନୁହେଁ । ବଡ଼କଥା ହେଲା ଯୁଗଯୁଗ ଧରି ଚାଲିଥିବା କୃଷ୍ଣଙ୍କ ସହ କଂସର ବିରୋଧ । ଏହା ବିଶ୍ୱର ପ୍ରତି ସ୍ତରରେ ଘଟୁଥିବା ଚେତନା ଜଗତର ବିରୋଧ । ପୁରାଣ ଯୁଗରେ କଂସର ମୃତ୍ୟୁ ସିନା ଘଟିଥିଲା ମାତ୍ର ତା'ର ଆତ୍ମା ମରିନାହିଁ । ସର୍ବତ୍ର ତା'ର ଆସ୍ଥାନ ।" (ବିଜୟ କୁମାର ଶତପଥୀ ନାଟ୍ୟମାନସ ଓ କଂସର ଆତ୍ମା, ଡ. ବିଜୟାନନ୍ଦ ସିଂହ)

ପୁରାଣର କଥାକୁ ଅବିକଳ ଉପସ୍ଥାପନ କରିବା ଅପେକ୍ଷା ସମାନ୍ତରାଳ ଏକ କାଞ୍ଚନିକ ପୃଷ୍ଠଭୂମିର ଅବତାରଣା କରି ପ୍ରତୀକାତ୍ମକ ଭାବରେ ପୁଣି ଆଲିଗୋରିକାଲ ଢଙ୍ଗରେ ଦର୍ଶାଇବା ହେଉଛି ବିଜୟ କୁମାର ଶତପଥୀଙ୍କ ନାଟ୍ୟକଳାର ଏକ ଚାତୁରୀ । ମିଥ୍‌ର ଏ ପ୍ରକାର ଖେଳରେ ସେ ଓଡ଼ିଆ ମିଥିକ୍ ନାଟକକୁ ନୂଆ ପରିଚୟ ଦେଇଛନ୍ତି । ନାଟ୍ୟକର ସଂଳାପ ତା'ର ପରିବେଶ ଅନୁଯାୟୀ ପାତ୍ରୋଚିତ ହେବା ସହ ବଳିଷ୍ଠ ହୋଇ ଦର୍ଶନୀୟ ଆଦୃତି ଲାଭ କରିଛି ।

'କଂସର ଆତ୍ମା'ରେ ନବମୂଲ୍ୟବୋଧର ପ୍ରତିଷ୍ଠା ସହ ବୈପ୍ଳବିକ ଦୃଷ୍ଟିଭଙ୍ଗୀର ସମନ୍ୱୟ ଘଟିଛି । ମିଥ୍ ସଚେତନତା ଓ ପରିବେଷଣ ଶୈଳୀ ହେଉଛି ଏହାର ସ୍ୱାତନ୍ତ୍ର୍ୟ । ବିଷୟବସ୍ତୁ ନିର୍ବାଚନ ସହ ଚରିତ୍ର, ସଂଳାପ, ଦୃଶ୍ୟ ବିଭାଗୀକରଣ ଓ ଉପସ୍ଥାପନ ଚାତୁରୀ ଦୃଷ୍ଟିରୁ ଏହି ନାଟକଟି ୧୯୮୦ ମସିହା ବେଳକୁ ଓଡ଼ିଆ ନାଟକରେ ନୂଆ ଧାରାର ପ୍ରବର୍ତ୍ତନ କରିଛି ।



# ଅପ୍ରାପ୍ତିର ଭୟଙ୍କର ରୂପ : 'କ୍ଷୁଧିତ ସରୀସୃପ'

୧୯୮୦ ପରବର୍ତ୍ତୀ ଓଡ଼ିଆ ନାଟ୍ୟଧାରାରେ ନୂତନତାର ମାନ୍ତ୍ରିକ ଭାବେ ପରିଚିତ ଡକ୍ଟର ବିଜୟ କୁମାର ଶତପଥୀ ଜୀବନ ଓ ଜଗତ ପ୍ରତି ଆପଣାର ସମୟୋଚିତ ଦାୟବଦ୍ଧତା ନିର୍ବାହ କରିଛନ୍ତି । ବଳିଷ୍ଠ ମିଥ୍ ଓ ପ୍ରତୀକର ପ୍ରୟୋଗ ସହ ଲୋକ ଉପାଦାନରେ ସମୃଦ୍ଧ କରି ଓଡ଼ିଆ ନାଟକକୁ ଏକଭିନ୍ନ ରୂପ ଦେବାରେ ସେ ଜଣେ କୁଶଳୀ ସ୍ରଷ୍ଟାର ମାନ୍ୟତା ପାଇଥାନ୍ତି । ପ୍ରଥମ ନାଟକ 'ଫସିଲର ନିଦ୍ରାଭଙ୍ଗ' ଠାରୁ 'ବିବର୍ଣ୍ଣ ସହର', 'କ୍ଷୁଧିତ ସରୀସୃପ', 'କଂସର ଆତ୍ମା', 'ବିଷାଦ ବୃତ୍ତର କାହାଣୀ' ପର୍ଯ୍ୟନ୍ତ ତାଙ୍କର ସମଗ୍ର ନାଟକ ଭିତରେ 'କ୍ଷୁଧିତ ସରୀସୃପ'ଟି ଅଲଗା ପ୍ରକାରର ବୋଲି ମନେ ହୋଇଥାଏ ।

'କ୍ଷୁଧିତ ସରୀସୃପ' ନାଟକକୁ ଦେଖିଲାପରେ ଦର୍ଶକଗଣ ଅବଗତ ହେବେ ଯେ, ଅପ୍ରାପ୍ତି ଅପୂର୍ଣ୍ଣତା ମଧ୍ୟରେ ବଞ୍ଚିବାର ଧାରା କିପରି ମଣିଷର ଜୀବନକୁ ଦୁର୍ବିସହ କରିଦିଏ । ଅପ୍ରାପ୍ତିର ଭୟଙ୍କର ସରୀସୃପ ଏଠାରେ ନାଟକର ଚରିତ୍ରମାନଙ୍କୁ କବଳିତ କରିଛି । ସ୍ୱାଧୀନ ଭାରତର ପାରିବାରିକ ଜୀବନର ଅବକ୍ଷୟ, ଆର୍ଥନୀତିକ ସଂକଟବୋଧ, ସମ୍ପର୍କ ହୀନତା, ବ୍ୟକ୍ତିବାଦୀ ବିଚ୍ଛିନ୍ନତା ବୋଧ, ମଣିଷର ଉଗ୍ର ଆଧୁନିକ ମନୋଭାବ, ଅଚରିତାର୍ଥ ବାସନା, ଅବସାଦ-ବିଷାଦ-ଅସହାୟତା-ନିଃସଂଗତାକୁ ନେଇ ସୁସ୍ଥ ପାରିବାରିକ ଜୀବନରେ ଯେଉଁ ଅବକ୍ଷୟ ଆସିଛି, ପ୍ରତ୍ୟେକ ମଣିଷ ଯେଉଁଭଳି ଭାବେ ଆପ୍ରାପ୍ତି-ଅପୂର୍ଣ୍ଣତାରେ ବଞ୍ଚିଛନ୍ତି ତାହାର ଜୀବନ୍ତ ଚିତ୍ରଟିଏ ଆମେ 'କ୍ଷୁଧିତ ସରୀସୃପ' ନାଟକରେ ଦେଖିପାରିବା । ଏହି ନାଟକ ସମ୍ପର୍କରେ ନିଜସ୍ୱ ସଂଳାପରେ ନାଟ୍ୟକାର ଡ. ବିଜୟ କୁମାର ଶତପଥୀ ମହୋଦୟ ଲେଖିଛନ୍ତି – "ଏ ନାଟକର କାହାଣୀ ଏକ ବିଘଟିତ ପାରିବାରିକ ଜୀବନର କାହାଣୀ । ସେଠି ସମ୍ପର୍କର ସେତୁ ଭାଙ୍ଗିଯାଇଛି । ଅର୍ଥନୀତିର ସୂତ୍ରରେ ବନ୍ଧା ଯଦୁନାଥଙ୍କ ପରିବାରର ସେଇ କରୁଣ ଜୀବମାନେ ଛଟପଟ ହୋଇଛନ୍ତି ଦାରୁଣ ଜ୍ୱାଳା ଯନ୍ତ୍ରଣାରେ, ଅପରାଧ ବୋଧର ତାଡ଼ନାରେ । ମଣିଷ ଭିତରେ ଶାୟିତ ସରୀସୃପ ଗର୍ଜନ ଶୁଭିଛି । କେହି ତାକୁ ଏଡ଼େଇ ପାରିନାହାନ୍ତି । ବୃଦ୍ଧ ଯଦୁନାଥଙ୍କଠାରୁ ଆରମ୍ଭ କରି ପ୍ରୀତି ଓ ସୁଧାଂଶୁ ଯାଏ ସମସ୍ତେ ତା' କବଳରେ କବଳିତ । ସେଠି କାହାରି ନିସ୍ତାର ନାହିଁ । ଭୁଷୁଡ଼ି ଯାଇଛି ଆଦର୍ଶ ଓ ନୀତିର ମୂଲ୍ୟବୋଧ । ସେଇ ଉଜୁଡ଼ା ମୂଲ୍ୟବୋଧ ଉପରେ ଠିଆ ହୋଇ ପ୍ରୀତି ଦେଖନ୍ତି ତାଙ୍କର

ପରିବାରଟା ଯେମିତି ଶ୍ମଶାନର ରୁକ୍ଷତା ଓ ବୀଭତ୍ସତାର ହାହାକାରରେ ଭରିଯାଇଛି ।" ମଣିଷର ଅଚରିତାର୍ଥ ବାସନା ତା'ର କାମ ପ୍ରବୃତ୍ତି ତଥା ଅପୂର୍ଣ୍ଣ-ଅଦମ୍ୟ ଯୌନ ପିପାସାକୁ ଚମତ୍କାର କଳାକୌଶଳ ଭିତରେ ଡ. ଶତପଥୀ ଏହି ନାଟକ ଭିତରେ ଧରି ରଖିପାରିଛନ୍ତି ।

ନାଟକର ପ୍ରସ୍ତାବନାରେ ପ୍ରାଚ୍ୟ ନାଟ୍ୟ ପରମ୍ପରା ଆଧାରରେ ନାଟ୍ୟକାର ନାଟକର ପରିଧିକୁ ଆଣି ଦର୍ଶନ ଓ ନାଟକରୁ ଏକ ରଜ୍ଜୁରେ ବାନ୍ଧିବାର ମାଧ୍ୟମ କରିଛନ୍ତି । ସୁତ୍ରଧାର ମଣିଷର ଛଦ୍ମତାକୁ ଠୋକ୍‌କର ମାରିବାସହ ନାଟକର କଥାବସ୍ତୁ ପରିବେଷଣ କରିବାର ଦାୟିତ୍ୱ ନାଟକର ମୁଖ୍ୟ ନାରୀ ଚରିତ୍ର ପ୍ରୀତି ଉପରେ ନ୍ୟସ୍ତକରି ମଞ୍ଚରୁ ଅପସରି ଆସିଛି । ଏହି ପ୍ରସ୍ତାବନାରେ ଚରିତ୍ରମାନଙ୍କୁ ନେଇ ଡ. ଶତପଥୀ ଚମତ୍କାର ପରୀକ୍ଷାଟିଏ କରିଛନ୍ତି । ପ୍ରୀତି ମଞ୍ଚର ସମ୍ମୁଖ ଭାଗକୁ ମୁହଁକରି ମଧ୍ୟବର୍ତ୍ତୀ ସ୍ଥାନରେ ଛିଡ଼ା ହୋଇଥିବା ବେଳେ ତାଙ୍କର ସମ୍ପର୍କୀୟ ଅନ୍ୟ ଚରିତ୍ରମାନେ ଜଣେ ପରେ ଜଣେ ଆସି ନିଜର ବକ୍ତବ୍ୟ ପ୍ରକାଶ କରି ପୁନଶ୍ଚ ଅନ୍ଧାରରେ ବୁଡ଼ି ଯାଇଛନ୍ତି । ଏହି ଦୃଶ୍ୟରେ ଆଲୋକର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇପଡ଼ିଛି । ପ୍ରୀତି ଅତୀତର ସ୍ମୃତିକୁ ରୋମନ୍ଥନ କରିବାର ପ୍ରୟାସ କଲାବେଳେ ଝାପ୍‌ସା ଆଲୋକ ଆସିବା ଏବଂ ଯେଉଁ ଚରିତ୍ର ନିଜର ବକ୍ତବ୍ୟ ଉପସ୍ଥାପନ କରିଛି ଝାପ୍‌ସା ଆଲୋକ ଅପସରି ଯିବାପରେ ସେ ଅନ୍ଧକାରରେ ବୁଡ଼ିଯାଇଛି । ଏହି କ୍ରମାନ୍ୱୟରେ ଆଠୋଟିଯାକ ଚରିତ୍ର ମଞ୍ଚକୁ ଆସି ନିଜର ବକ୍ତବ୍ୟ ଉପସ୍ଥାପନା କରିଛନ୍ତି । ପ୍ରସ୍ତାବନାକୁ ଛାଡ଼ି ସମଗ୍ର-ନାଟକର ନଅଟି ଦୃଶ୍ୟର ଅବତାରଣା କରାଯାଇଛି ।

ନାଟକର ପ୍ରଥମ ଦୃଶ୍ୟରେ ଯଦୁନାଥଙ୍କ ପାରିବାରିକ ଜୀବନର ପରିଚୟ ମିଳିଛି । ଅସ୍ୱାଭାବିକ ଅବସ୍ଥାରେ ଯଦୁନାଥଙ୍କ ଅଦ୍‌ଭୁତ ଚାଲିଚଳଣ, ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରେ । ମଣିଷର ଆସୁରିକ ପ୍ରବୃତ୍ତିରୁ ମୁକ୍ତ ନୁହନ୍ତି ଯଦୁନାଥ । ସେ ବୁଝିଛନ୍ତି ମଣିଷର ଏଇ ପ୍ରବୃତ୍ତି କେତେ ଭୟଙ୍କର । ବାକ୍‌ଶକ୍ତି ରହିତ ଚାକର ସାରଥି ସମବେଦନା ପାଇବାପରି ଏକ ଚରିତ୍ର ଭାବେ ଉଭା ହୋଇଛି । ଯଦୁନାଥ ସାରଥି ପାଖରେ ନିଜର ଛଦ୍ମତାକୁ ଉନ୍ମୋଚନ କରିବାକୁ ଯାଇ ମଧ୍ୟ ସଫଳ ହୋଇପାରି ନାହାନ୍ତି । ତାଙ୍କ ବଡ଼ପୁଅ ରମାନାଥ ପିତାଙ୍କର ଏ ବାଚାଳତାକୁ ନାପସନ୍ଦ କରିବା, ସାନପୁଅ ସୀତାକାନ୍ତ ପିତାଙ୍କୁ ବେଖାତିର୍ କରିବା ଗୋଟିଏ ପାରମ୍ପରିକ ଜୀବନର ଅବକ୍ଷୟକୁ ସୂଚାଇଥାଏ । ପୁନଶ୍ଚ ରାମାୟଣର ଦଶରଥଙ୍କ ସତ୍ୟର ଭିକ୍ଷା ଲାଗି ରାମଚନ୍ଦ୍ରଙ୍କର ବନଗମନ କରିବାର ପୁରାଣ ବର୍ଣ୍ଣିତ କାହାଣୀକୁ ଏହି ଦୃଶ୍ୟରେ ଅବତାରଣା କରି ନାଟ୍ୟକାର ପିତୃଭକ୍ତି, ପିତା ପୁତ୍ରର ସମ୍ପର୍କ ଯେଭଳି ଆଜିର ସମୟରେ ବିପର୍ଯ୍ୟସ୍ତ ହୋଇଛି ତାହାକୁ ବେଶ୍ ପ୍ରତୀକାତ୍ମକ ଢଙ୍ଗରେ ଦର୍ଶାଇଛନ୍ତି ।

ଦ୍ୱିତୀୟ ଦୃଶ୍ୟରେ ରମାନାଥଙ୍କ ପତ୍ନୀ ପ୍ରୀତି ସହ ତା'ର ପୂର୍ବତନ ପ୍ରେମିକ ସୁଧାଂଶୁ ପୁନଃ ସମ୍ପର୍କ ରଖିବା, ପ୍ରୀତିର ସୁଧାଂଶୁ ପ୍ରତି ଗଭୀର ଆସକ୍ତି ତା'ର ଅଚରିତାର୍ଥ ବାସନାକୁ

ଇଙ୍ଗିତ କରେ । ଏଥିସହ ପ୍ରୀତି ନିମ୍ନ ମଧ୍ୟବିତ୍ତ ପରିବାରର ଅଭାବ, ଅନଟନ, ଅପ୍ରାପ୍ତି ଓ ଅପୂର୍ଣ୍ଣତାରେ ବଞ୍ଚୁଥିବା ହେତୁ ସେ ଉଗ୍ର ମନୋଭାବ ସଂପନ୍ନା ହୋଇ ନିଜର ଅଦମ୍ୟ ପିପାସାକୁ ସୁଧାଂଶୁ ପାଖରେ ପୂରଣ କରିବାର ପ୍ରୟାସ କରିଛି । ଉଭୟଙ୍କ ଆଳାପ ମଝିରେ ରମାନାଥ ପ୍ରବେଶ କରିବା, ପ୍ରୀତି-ସୁଧାଂଶୁଙ୍କର ସମ୍ପର୍କକୁ ସନ୍ଦେହ ଦୃଷ୍ଟିରେ ଦେଖିବା ତାଙ୍କ ଅବଚେତନ ମନର ମାନସିକ ଅସୂୟାକୁ ପ୍ରତିପାଦନ କରିଥାଏ । ପ୍ରୀତି-ରମାନାଥଙ୍କ ଦାମ୍ପତ୍ୟ ଜୀବନର ଅସାରତା, ସନ୍ତାନ ପ୍ରାପ୍ତିରୁ ପ୍ରୀତି ବଞ୍ଚିତ ହେବା, ଉଭୟଙ୍କ ଜୀବନର ଅପୂର୍ଣ୍ଣତା, ପାରିବାରିକ ଦାମ୍ପତ୍ୟ ଜୀବନର ଅବକ୍ଷୟକୁ ଇଙ୍ଗିତ କରିଥାଏ ।

ନାଟକର ତୃତୀୟ ଦୃଶ୍ୟରେ ଯଦୁନାଥଙ୍କ ଅସହାୟତାର ସେହି ପୂର୍ବ ରୂପକୁ ଆମେ ଲକ୍ଷ୍ୟ କରିଥାଉ । ଏଥିସହ ସେ ସାରଥିର ପୁଅ ଶରତ ପାଖରେ ନିଜର ଅପକର୍ମ-ଛଦ୍ମତାକୁ ଉନ୍ମୋଚନ କରିବାର ପ୍ରୟାସ କରି ମଧ୍ୟ ସଂକୋଚରେ ନୀରବ ହୋଇପଡ଼ିଛନ୍ତି । ପୁନଶ୍ଚ ସାନପୁଅ ସୀତାକାନ୍ତ ସହ ଯଦୁନାଥଙ୍କର ବାକ୍ ବିତଣ୍ଡା, ମନାନ୍ତରକୁ ହୃଦୟଙ୍ଗମ କରି ଯଦୁନାଥ ରାମାୟଣର ରାମଚନ୍ଦ୍ରଙ୍କ ପ୍ରସଙ୍ଗକୁ ସ୍ମରଣ କରିଛନ୍ତି । ଏହି ଦୃଶ୍ୟରେ ମଧ୍ୟବିତ୍ତ ମଣିଷର ଅସହାୟତା, ଜୀବନର ଅଭାବବୋଧ ଇତ୍ୟାଦି ଦେଖିବାକୁ ମିଳେ ।

ନାଟକର ଚତୁର୍ଥ ଦୃଶ୍ୟରେ ଶରତ ପ୍ରତି ପ୍ରୀତିଙ୍କର ଆକର୍ଷଣ, ଅଚରିତାର୍ଥ ବାସନାକୁ ସାକାର କରିବାର ପ୍ରବଣତା, ନାରୀର ଜଟିଳ ମନସ୍ତତ୍ତ୍ୱକୁ ଇଙ୍ଗିତ କରିଥାଏ । ତା'ର ସ୍ୱାମୀ ରମାନାଥର ପ୍ରୀତିକୁ ସନ୍ଦେହ କରିବା ମଧ୍ୟରେ ଉଭୟଙ୍କ ଭିତରେ ସୃଷ୍ଟି ହୋଇଛି ମନୋମାଳିନ୍ୟ । ପରେ ଜ୍ୟୋତିଷ ଗୋବର୍ଦ୍ଧନ ପ୍ରବେଶ କରି ମିଛ ଆଶ୍ୱାସନା ଦେବା ଓ ଏହି ଜ୍ୟୋତିଷ ବିଦ୍ୟାକୁ ଯଦୁନାଥ ପ୍ରଶ୍ନବାଚୀ କରିବା ଭିତରେ ଉକ୍ତ ଦୃଶ୍ୟର ପରିସମାପ୍ତି ଘଟିଛି ।

ପଞ୍ଚମ ଦୃଶ୍ୟରେ ଡାକ୍ତର ସଦାନନ୍ଦଙ୍କର ରିପୋର୍ଟ ରମାନାଥର ପୌରୁଷକୁ ଆଘାତ ଦେବା ସହ ତାକୁ ମାନସିକ ଭାବେ ଭାଙ୍ଗିଦେଇଛି । ଏହି ଦୃଶ୍ୟ ପରଠାରୁ ରମାନାଥର ଅସହାୟ ମାନସିକତାକୁ ଆମେ ବରାବର ଭେଟିବା । ପୁନଶ୍ଚ ସୀତାକାନ୍ତ- ଯଦୁନାଥଙ୍କ ସମ୍ପର୍କର ତିକ୍ତତା ନାଟକର ଉତ୍କଣ୍ଠାକୁ ଆହୁରି ବୃଦ୍ଧି କରିଛି । ଯଦୁନାଥଙ୍କର ମାନସିକ ଅସହାୟତା, ନିଜକୁ ଉନ୍ମୋଚନ କରିବାର ଆବିଳତା, ଦର୍ଶକକୁ ବାନ୍ଧି ରଖିବାରେ ସଫଳ ହୋଇଛି ।

ନାଟକର ଷଷ୍ଠ ଦୃଶ୍ୟରେ ସୁଧାଂଶୁ ସହ ପ୍ରୀତିର ଅନୈତିକ ସମ୍ପର୍କ, ପ୍ରୀତିର ଅଦମ୍ୟ ପିପାସା, ରମାନାଥର ମାନସିକ ଅସହାୟତା ନାଟକର ଅବରୋହଣ ବୋଲି ସୂଚାଇ ଦେଇଥାଏ । ସେହିପରି ସପ୍ତମ ଦୃଶ୍ୟ ବେଶ୍ ଚମତ୍କାର ଦୃଶ୍ୟ । ଖଡ଼ୀରନ୍ନଙ୍କ ବିଦ୍ୟାପ୍ରତି ରମାନାଥ ପ୍ରଶ୍ନବାଚୀ ସୃଷ୍ଟି କରିବା ସହ ନିୟତିର ବିଧାନକୁ ମଥାପାତି ମାନି ନେଇଛି । ପ୍ରୀତିର ମାଆ ହେବା ଖବର ସତେ ଯେମିତି ଅଧିକରୁ ଅଧିକ ଭାଙ୍ଗି ଦେଇଛି ରମାନାଥକୁ ।

ଶରତ-ସାରଥିଙ୍କର ଘରଛାଡ଼ି ଚାଲିଯିବା, ନିଜର ଅସାମର୍ଥ୍ୟକୁ ଜାଣି ରମାନାଥ ହତୋତ୍ସାହିତ ହେବା ସହ ଏହି ଦୃଶ୍ୟର ପରିସମାପ୍ତି ହୋଇଛି ।

ନାଟକର ଅଷ୍ଟମ ଦୃଶ୍ୟରେ ସୁଧାଂଶୁ ନିଜର ପିତୃତ୍ୱକୁ ଅସ୍ୱୀକାର କରିବା, ରମାନାଥର ଆତ୍ମହତ୍ୟା, ଯଦୁନାଥ ମାନସିକ ଭାରସାମ୍ୟ ହରାଇବା ସହ ନିଜର ଅପକର୍ମକୁ ପ୍ରୀତି ଆଗରେ ସ୍ୱୀକାର କରିବା ଏବଂ ଶରତକୁ ନିଜର ପୁତ୍ରବୋଲି ମାନିନେବା, ପ୍ରୀତିର ମାନସିକ ଅସହାୟତା ଓ ତାର ଅନୁତାପ ଶୋକାକୁଳ ପରିସ୍ଥିତି ସୃଷ୍ଟି କରିବାରେ ସମର୍ଥ । ନାଟକର ଶେଷ ଦୃଶ୍ୟରେ ଦର୍ଶକଗଣ ଜାଣିବାକୁ ପାଆନ୍ତି ଯଦୁନାଥଙ୍କ ମୃତ୍ୟୁ ଖବର । ପ୍ରୀତି ଏଣିକି ଏଇ ଯଦୁନାଥଙ୍କ ପରିବାରରୂପୀ ଶ୍ମଶାନରେ ଏକାକିନୀ ବଞ୍ଚିରହେ । ମଣିଷର ଏଇ ଜାନ୍ତବ କ୍ଷୁଧା କିପରି ଜୀବନକୁ ଦୁର୍ବିସହ କରିଦିଏ ତା'ର ଚିତ୍ର ସୂତ୍ରଧାର ଦେବା ସହ ନାଟକ ସମାପ୍ତ ହୋଇଛି ।

ନାଟକଟିରେ ସୂତ୍ରଧାରକୁ ମିଶାଇ ମୋଟ ଦଶଟି ଚରିତ୍ରକୁ ଉପସ୍ଥାପନ କରାଯାଇଛି । ଯେଉଁ ପାର୍ବତୀ ଚରିତ୍ରକୁ ନେଇ ନାଟକର ମୁଖ୍ୟ ଚରିତ୍ର ଯଦୁନାଥଙ୍କ ଜୀବନ ଦୁର୍ବିସହ ହୋଇପଡ଼ିଛି, ସେଇ ଚାକରାଣୀ ପାର୍ବତୀ ମଞ୍ଚକୁ ଆସିନାହିଁ । ପଞ୍ଚମ ଦୃଶ୍ୟରେ କେବଳ ତା'ର ପ୍ରଚ୍ଛଦ ସ୍ୱରକୁ ଯାହା ଅତୀତ ସ୍ମୃତି ଚାରଣ ଭିତରେ ନାଟ୍ୟକାର ଶୁଣାଇଛନ୍ତି । ଯଦୁନାଥ ଦାନବୀୟ ପ୍ରବୃତ୍ତିରୁ ମୁକ୍ତ ହୋଇପାରି ନାହାନ୍ତି । ଏହାକୁ ସେ ପ୍ରଥମ ଦୃଶ୍ୟରେ ସ୍ୱୀକାର କରିଛନ୍ତି ।

ଯଦୁନାଥ ॥ ପ୍ରାଚୀନ ଯୁଗର ଡ୍ରାଗନଠାରୁ ଶକ୍ତିଶାଳୀ ଓ ଭୟଙ୍କର ସିଏ । କ୍ଷୁଧା ତା'ର ଅନେକ ଓ ଅମାପ, ସେସବୁ ଗ୍ରାସ କରିବାକୁ ଚାହେଁ ।

ତାଙ୍କ ଜୀବନରେ ଏହି କ୍ଷୁଧା ଯେଉଁ ବିପର୍ଯ୍ୟୟ ଆଣିଦେଇଛି, ସେଇ ଅନୁତାପ ଭିତରେ ଜଳିଜଳି ସେ ପ୍ରାଣ ହରାଇଛନ୍ତି ଏବଂ ନିଜର ପାପ କର୍ମର ଫଳସ୍ୱରୂପ ନିରୀହ ଶରତକୁ ନିଜର ପୁତ୍ର ବୋଲି ସେ ସ୍ୱୀକାର କରିଛନ୍ତି । ନିଜର ବଡ଼ପୁଅ ରମାନାଥ, ସୀତାକାନ୍ତର ବ୍ୟବହାର ତାଙ୍କ ମନରେ ଆଘାତ ଦେଇଛି । ବିଶେଷକରି ସୀତାକାନ୍ତଙ୍କର ବେଖିଆଲ ବ୍ୟବହାର, ରମାନାଥର ଆତ୍ମହତ୍ୟା, ପାର୍ବତୀର ଅଶାନ୍ତ ଓ ଆତ୍ମାର ଅଭିଶାପ ବୋଲି ହୃଦୟଙ୍ଗମ କରି ଆତ୍ମଦଗ୍ଧ ଯଦୁନାଥ ପ୍ରାଣ ହରାଇଛନ୍ତି ।

ନାଟକର ଅନ୍ୟସବୁ ଗୌଣ ଚରିତ୍ର ତଥା ସୁଧାଂଶୁ, ଶରତ, ସୀତାକାନ୍ତ, ଖଡ଼ିରତ୍ନ ଜ୍ୟୋତିଷ ଗୋବର୍ଦ୍ଧନ ସମସ୍ତେ ନିଜ ନିଜର ସୁବିଧା ହାସଲରେ ଓସ୍ତାଦ୍ । ସୁଧାଂଶୁ ଓ ଶରତ ଉଭୟ ପ୍ରୀତିର ଯୌବନ ପାଖରେ ବିବଶ ହୋଇ ପଡ଼ିଛନ୍ତି । ସୀତାକାନ୍ତ ବେଖାତିର ସ୍ୱଭାବର ବ୍ୟକ୍ତି ଭାବରେ ଉଚ୍ଛୃଙ୍ଖଳ ଚରିତ୍ର ଭାବେ ଉଭା ହୋଇଥିବା ବେଳେ, ଗୋବର୍ଦ୍ଧନ ଖଡ଼ିରତ୍ନ ମିଛ ଆଶ୍ୱାସନା ଭିତରେ ଅନ୍ୟମାନଙ୍କୁ ଠକି ଚାଲିଛନ୍ତି । ମୂକ ଚାକର ସାରଥି କିନ୍ତୁ ସବୁ ଦେଖି ଶୁଣି, ଜାଣି ବି କିଛି କହିପାରେନି । ତା'ର ଗୃହସ୍ୱାମୀଙ୍କ ପ୍ରତି ନିଷ୍ଠା, ସତ୍ୟକୁ ସାମ୍ନା

କରିବାର ଦୁର୍ବଳତା, ତା'ର ନିରୀହତା ଆଦି ସେହି ଚରିତ୍ର ପ୍ରତି ସମବେଦନା ସୃଷ୍ଟି କରିଥାଏ । ରମାନାଥ ଚରିତ୍ର ପ୍ରଥମରୁ ଯେପରି ପ୍ରତୀୟମାନ ହେଉଥିଲା ପରବର୍ତ୍ତୀ ସମୟରେ ସେ ପୂର୍ବଭଳି ହୋଇନାହିଁ । ବନ୍ଧୁ ଡାକ୍ତର ସଦାନନ୍ଦ ତା'ର ମାନସିକ ପରିସ୍ଥିତିକୁ ବୁଝି ମାନସିକ ଭାବେ ଶକ୍ତିଶାଳୀ ହେବାକୁ ପ୍ରୋତ୍ସାହନ ଯୋଗାଇ ଦେଇଥିଲେ ମଧ୍ୟ ନିଜର ସନ୍ତାନ ଉତ୍ପାଦନର ଅକ୍ଷମତା, ପ୍ରୀତିର ଅନ୍ୟ ପୁରୁଷ ପ୍ରତି ଆସକ୍ତି ଓ ପର ପୁରୁଷର ରକ୍ତକୁ ଗର୍ଭରେ ଧାରଣ କରିବା ପ୍ରଭୃତି ଘଟଣା ରମାନାଥକୁ କ୍ରମେ ମାନସିକ ଭାବେ ଭାଙ୍ଗିଦେବା ସହ ଅସହାୟ ଓ ଦୁର୍ବଳ କରିଦିଏ । ଯାହା ଫଳରେ ସେ ଆତ୍ମହତ୍ୟା କରିବାକୁ ବାଧ୍ୟ ହୁଏ ।

ନାଟକର ମୁଖ୍ୟ ନାରୀ ଚରିତ୍ର ପ୍ରୀତି ଅଭାବ ଅନଟନରେ ପୀଡ଼ିତ ମଧ୍ୟବିତ୍ତ ପରିବାରରେ ବଞ୍ଚିବାକୁ ପସନ୍ଦ କରିନି । ଜୀବନରେ ଅପୂର୍ଣ୍ଣତା, ଅପ୍ରାପ୍ତି, ସନ୍ତାନ କାମନା, ଉଗ୍ର ମନୋଭାବ ସର୍ବୋପରି ତାର ଦୈହିକ କ୍ଷୁଧା ପର ପୁରୁଷ ସହ ସମ୍ବନ୍ଧ ଯୋଡ଼ିବାକୁ ତାକୁ ଖୋରାକ ଯୋଗାଇଛି । ଯାହାଫଳରେ ସୁଧାଂଶୁ, ଶରତ ସହ ସେ ଅନୈତିକ ସମ୍ପର୍କ ରଖିଛି ଓ ସ୍ୱାମୀ ପ୍ରତି ନିଜର ନିଷ୍ଠାକୁ ଅସ୍ୱୀକାର କରିଛି । ସବୁ ବନ୍ଧନରୁ ମୁକ୍ତ ହୋଇଯିବାର ଉତ୍କଣ୍ଠା ତା'ର ଜୀବନକୁ ଦୁର୍ବିସହ କରିଦେଇଛି । ସ୍ୱାମୀ ପ୍ରତି ବିଶ୍ୱାସଘାତକତା, ସୁଧାଂଶୁ ସହ ଦୈହିକ ସମ୍ବନ୍ଧ ରଖି ଗର୍ଭବତୀ ହେବା, ସୁଧାଂଶୁ ଏହାକୁ ଅସ୍ୱୀକାର କରିବା, ରମାନାଥ ଆତ୍ମହତ୍ୟା କରିବା ଆଦି ଘଟଣା ପ୍ରୀତି ଜୀବନକୁ ଶ୍ମଶାନରେ ପରିଣତ କରିଦେଇଛି । ତା'ର ଏହି ଅଚରିତାର୍ଥ ବାସନାହିଁ ଜୀବନର ବିପର୍ଯ୍ୟୟକୁ ଡାକି ଆଣିଛି ବୋଲି ତାର ହୃଦ୍‌ବୋଧ ମଧ୍ୟ ହୋଇଛି । ଶେଷରେ ସେ ଅତି ଦୟନୀୟ ଓ ଅସହାୟ ଭାବରେ ଜୀବନ କାଟିଛି ଏକ ଟ୍ରାଜିକ୍ ପରିବେଶରେ ।

ନାଟକର ସଂଳାପଗୁଡ଼ିକୁ ଅନେକ ସମୟରେ, ପ୍ରତୀକାତ୍ମକ ଭାବେ ଉପସ୍ଥାପନ କରିଛନ୍ତି ନାଟ୍ୟକାର । ସୂତ୍ରଧାର ନାଟକକୁ ଦର୍ଶକଙ୍କ ଅତି ନିକଟତର କରିବା, ପୁରାଣ କଥନିକାକୁ ଆଶ୍ରୟ କରି ମିଥିକ୍ ସଂଳାପ ଉଚ୍ଚାରଣ କରିବା ହେଉଛି ନାଟକର କେତେକ ବିଭବ । ବିଶେଷ କରି ପାତ୍ରୋଚିତ ସଂଳାପ ନାଟକକୁ ଦର୍ଶକଙ୍କ ନିବିଡ଼ ହେବାର ଖୋରାକ ଯୋଗାଇପାରିଛି । ଯଥା –

ପ୍ରୀତି ॥ ମତେ ବିଶ୍ୱାସ କର ସୁଧାଂଶୁ! ମୁଁ ତମରି ସନ୍ତାନର ମା ହେବାକୁ ଯାଉଛି । ଶରତ ମୋ ଦେହକୁ ନେଇ ଖେଳ ଖେଳି ମୋ ନାରୀତ୍ୱର ଅମର୍ଯ୍ୟାଦା କରିନାହାଁନ୍ତି । ମୁଁ ଖାଲି ତାଙ୍କ ପ୍ରତିଭାକୁ ଭଲ ପାଇଥିଲି ।

ସୁଧାଂଶୁ ॥ ବିବାହ ପରେ ବହୁ ପୁରୁଷର ସଙ୍ଗକାମନା କରିଥିବା ତମପରି ନାରୀକୁ କ'ଣ ସହଜରେ ବିଶ୍ୱାସ କରାଯାଏ ? ରମାନାଥ... ବିଚରା... । (ପୃ.୬୧)

ନାଟକଟି ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଦର୍ଶକଙ୍କୁ ବାନ୍ଧି ରଖିବାର ସୂତ୍ର ହେଉଛି ଏହାର ବଳିଷ୍ଠ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା । ସମ୍ପର୍କହୀନତା ପୁଣି ସମ୍ପର୍କର ଆବେଗ, ପିତାପୁତ୍ର ମଧ୍ୟରେ ବାକ୍

ବିତଣ୍ଡା, ରମାନାଥ-ପ୍ରୀତି ଜୀବନର ଅସାରତା, ଅପ୍ରାପ୍ତି, ସୁଧାଂଶୁ-ପ୍ରୀତିର ସମ୍ପର୍କ, ନିଜ ବିବେକ ସହ ଯଦୁନାଥଙ୍କର ଛକାପଞ୍ଝା ଖେଳ ନାଟକର ଦ୍ୱନ୍ଦ୍ୱକୁ ବୃଦ୍ଧି କରିଛି । ଏଥିସହିତ ନିଜର ଅପକର୍ମ ପାଇଁ ଯଦୁନାଥ ମାନସିକ ଭାବେ ଭାଙ୍ଗି ପଡ଼ିବା, ପ୍ରୀତି ଗର୍ଭବତୀ ହେବା, ରମାନାଥଙ୍କ ମାନସିକ ପରିବର୍ତ୍ତନ, ଶରତକୁ ନିଜର ପୁତ୍ର ବୋଲି ଯଦୁନାଥ ସ୍ୱୀକାର କରିବା ସର୍ବୋପରି ରମାନାଥର ଆତ୍ମହତ୍ୟା ଦର୍ଶକଙ୍କ ଉତ୍କଣ୍ଠା ବଢ଼ାଇବା ସହ ସେମାନଙ୍କୁ ନାଟକକୁ ଉପଭୋଗ କରିବା ଲାଗି ବାନ୍ଧି ରଖିଛି ।

ମଣିଷର ଜାନ୍ତବ କ୍ଷୁଧାକୁ ନାଟକରେ ସରୀସୃପର କ୍ଷୁଧା ବୋଲି କୁହାଯାଇଛି । କେହି ବି ଏଥିରୁ ମୁକ୍ତ ନୁହଁନ୍ତି । ଯଦୁନାଥ, ପ୍ରୀତି ଓ ସୁଧାଂଶୁଙ୍କର ଉଦଗ୍ର କାମନା ସେମାନଙ୍କ ଜୀବନର ସରସତାକୁ ହରଣ କରିନେବା ସହ ସେମାନଙ୍କୁ ଅସହାୟ କରିଦେଇଛି । ପରୋକ୍ଷରେ ଏହି କାମନାକୁ ଦମନ କରିବାର ଇଙ୍ଗିତ ଦେଖାଇଛନ୍ତି ନାଟ୍ୟକାର ।

ଫ୍ରୟେଡ୍‌ଙ୍କ ମନୋବୈଜ୍ଞାନିକ ଦୃଷ୍ଟଭଙ୍ଗୀ, ଯୌନଚେତନାର ସିଦ୍ଧାନ୍ତକୁ ଆଧାର କରି ନାଟକଟିର କଳେବର ପରିପୁଷ୍ଟ ହୋଇଛି । ସରୀସୃପର କ୍ଷୁଧା କିପରି ମଣିଷର ଜୀବନକୁ ବିପର୍ଯ୍ୟସ୍ତ କରିଦେଇଛି, ତା'ର ଯୌନ ଲାଳସା କିଭଳି ଭୟଙ୍କର ରୂପ ନେଇଛି ଓ ଚରିତ୍ରମାନଙ୍କୁ ଅସହାୟ, ନିଃସଂଗକରି ଛାଡ଼ି ଦେଇଛି, ସେ କଥାକୁ ବୁଝିପାରିଲେ 'କ୍ଷୁଧିତ ସରୀସୃପ' ନାଟକର ନାମକରଣର ଯଥାର୍ଥ ସଂପର୍କରେ ବିଚାର କରାଯାଇପାରିବ ।

ଜୀବନର ଅପୂର୍ଣ୍ଣତା-ଅପ୍ରାପ୍ତି, ଉଦଗ୍ର କାମନାର ସରୀସୃପ କ୍ଷୁଧିତ ହେଲେ ଯେଉଁ ପରିସ୍ଥିତି ସୃଷ୍ଟି ହୁଏ ତାହାକୁ ଏହି ନାଟକରେ ଉପସ୍ଥାପନ କରାଯାଇଛି । ମଞ୍ଚ କଳାଠାରୁ ଆରମ୍ଭ କରି ଚରିତ୍ର, ସଂଳାପ, କଥାବସ୍ତୁ, ନାଟକର କଳାତ୍ମକ ମୂଲ୍ୟକୁ ସାଫଲ୍ୟମଣ୍ଡିତ କରିବାରେ 'କ୍ଷୁଧିତ ସରୀସୃପ' ନାଟକ ବେଶ୍ ସଫଳ ହୋଇଛି ବୋଲି ସ୍ୱୀକାର କରିବାକୁ ହେବ ।



# ନୂଆ ସକାଳର ପ୍ରତୀକ୍ଷାରେ : 'ଏଇ ଯେ ସୂର୍ଯ୍ୟ ଉଏଁ'

ସବୁ ରାତି ଅନ୍ଧାର ରାତି ହୋଇ ରହେ ନାହିଁ । ରାତିର ଅନ୍ଧକାରକୁ ଚିରି ସକାଳ ଆସେ । ପ୍ରତ୍ୟେକ ଅମାବାସ୍ୟା ପରେ ପୁଣି ଶୁକ୍ଳପକ୍ଷ ଆରମ୍ଭ ହୁଏ । ବିଶ୍ୱରେ ଯେତେବେଳେ ବି ଶୋଷଣ-ଅତ୍ୟାଚାରର ଅନ୍ଧାର ରାତି ଆସିଛି, ତାହା ଦୀର୍ଘ ସ୍ଥାୟୀ ହୋଇ ରହିନାହିଁ । ଶୁଣାଯାଉଛି ନୂତନ ସକାଳର ଆବାହନୀ । ମୁକ୍ତିର ସୂର୍ଯ୍ୟ ଉଦୟ ହୋଇଛି । ବିପ୍ଳବର ମାଙ୍ଗଳିକ ଧ୍ୱନିରେ ଶୋଷକର ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିଛି । ଆଉ ଜନ୍ମ ନେଇଛି ନୂଆ ଏକ ଅଧ୍ୟାୟ । ସେଇଥିପାଇଁ ବୋଧହୁଏ ବିପ୍ଳବ ଓ ମାନବୀୟ ଚେତନାର ଉତ୍ତରଣକୁ 'ଉଦିତ ସୂର୍ଯ୍ୟ' ସହ ତୁଳନା କରାଯାଇଛି । ଏହି ସୂର୍ଯ୍ୟୋଦୟକୁ ଏକ ନୂତନ ଶ୍ରେଣୀବିହୀନ ସମାଜର ପ୍ରତିଷ୍ଠା ପାଇଁ ସମ୍ଭାବ୍ୟ ସ୍ୱପ୍ନ ଭାବେ ବିବେଚନା କରାଯାଏ । ଏ ପ୍ରସଙ୍ଗରେ ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ 'ଏଇ ଯେ ସୂର୍ଯ୍ୟ ଉଏଁ' ନାଟକକୁ ଗ୍ରହଣ କରାଯାଇପାରେ । ୧୯୮୩ ମସିହାରେ ରଚିତ ଏହି ନାଟକଟିରେ ପାଲାର ଆଙ୍ଗିକ ସହ ଷ୍ଟ୍ରୀଟ୍ ସିଙ୍ଗର୍ ମାନଙ୍କର ସଂଗୀତ ପରିବେଷଣର ଆଙ୍ଗିକକୁ ନିଆଯାଇଛି ଓ ବକ୍ତବ୍ୟରେ ଅଙ୍ଗୀକାର ଓ ବିଦ୍ରୋହର ସ୍ୱର ସଂଚାର କରାଯାଇଛି । ୧୯୮୯ ମସିହାରେ ଏହି ନାଟକଟି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛି ।

କଥାବସ୍ତୁର ସଂଯୋଜନା ଦୃଷ୍ଟିରୁ ନାଟକଟି ଦୁଇ ଭାଗରେ ବିଭକ୍ତ ହୋଇଛି । ନାଟକର ପ୍ରଥମ ଭାଗରେ ରହିଛି କାଳ୍ପନିକ ରାଜକୀୟ ପୃଷ୍ଠଭୂମି ଏବଂ ଦ୍ୱିତୀୟ ଭାଗରେ ରହିଛି ଆଧୁନିକ ଶିଳ୍ପାଞ୍ଚଳର ପୃଷ୍ଠଭୂମି । ଦୁଇଟି ସ୍ଥାନ, ଭିନ୍ନ ଭିନ୍ନ ସମୟ । ଦୁଇ ପ୍ରକାରର ପାତ୍ରପାତ୍ରୀ (ଚରିତ୍ର)ଙ୍କୁ ନେଇ ନାଟକଟିରେ ଅନ୍ୟାୟ-ଅତ୍ୟାଚାର ବିରୋଧରେ ସାଧାରଣ ଜନତାର ବିଦ୍ରୋହ ପ୍ରକାଶ ପାଇଛି । ନାଟକରେ ଲୋକ ନାଟ୍ୟଶୈଳୀ (ପାଲା) ତଥା ଲୋକପ୍ରିୟ ସଂଗୀତକୁ ନେଇ ଏକ ପ୍ରକାର ପରୀକ୍ଷା ସଂପାଦିତ ହୋଇଛି । ନାଟକର ପ୍ରଥମ ପର୍ବରେ ପାଲାର ଆଙ୍ଗିକ ସାହାଯ୍ୟରେ କର୍ଣ୍ଣପୁର ରାଜ୍ୟର କୁଶାସନ ସଂପର୍କରେ ଅବତାରଣା କରାଯାଇଛି । ଏହି ପର୍ବରେ ରାଜତନ୍ତ୍ରର ସ୍ୱେଚ୍ଛାଚାରୀ ଓ ଅତ୍ୟାଚାରୀ ଶାସନ ବ୍ୟବସ୍ଥା ଦେଖିବାକୁ ମିଳେ । ସର୍ବହରା ତଥା ସାଧାରଣ ମଣିଷ ଉପରେ ରାଜା ଓ ରାଜକର୍ମଚାରୀଙ୍କ ଅତ୍ୟାଚାର, ସ୍ୱେଚ୍ଛାଚାରୀ ଶାସକର ଶାସନକାଳରେ ଲେଖକ ଓ କଳାକାର ଦୁର୍ବିସହ ଜୀବନ ପ୍ରଥମ

ଭାଗରେ ମୁଖ୍ୟ ବିଷୟ ପାଲଟିଛି । ଏହି ପ୍ରଥମ ପର୍ବରେ ରାଜା-ରାଜୁଡ଼ା ସମୟର ବିଷୟବସ୍ତୁ, ସଂଳାପ, ସଂଗୀତ ସଂଯୋଜନାରେ ଯାତ୍ରାର ଟେକ୍‌ନିକ ଅନୁସରଣ କରି ନାଟ୍ୟକାର ମହୋଦୟ ନାଟ୍ୟ ପରିବେଷଣର ଧାରାରେ ନୂତନ ଦିଗ ଉନ୍ମୋଚନ କରିଛନ୍ତି । ପାଲା ଗାୟକମାନଙ୍କ ଦ୍ୱାରା କର୍ଣ୍ଣପୁର ରାଜା ବୀରାଦିତ୍ୟଙ୍କ ଅନ୍ୟାୟ ଅତ୍ୟାଚାର ଶୋଷଣ ସଂପର୍କରେ ବର୍ଣ୍ଣନା କରାଯାଇଛି । ରାଜ କର୍ମଚାରୀଙ୍କ ଚାଟୁକାରିତା ଭିତରେ ଆବଦ୍ଧ ରାଜା ବୀରାଦିତ୍ୟଙ୍କର ପ୍ରଜାମାନଙ୍କ ଉପରେ ଦମନଲୀଳା ବଢ଼ିଚାଲେ । ରାଜାଙ୍କ ବିରୋଧରେ ପ୍ରତିବାଦ କରୁଥିବା ଶକ୍ତିମାନଙ୍କୁ ଦୃଢ଼ଭାବେ ଦମନ କରାଯାଏ । ସେଠାରେ ସାଧାରଣ ମଣିଷର ସ୍ୱାଧୀନତା ପରାହତ । ନାରୀମାନେ ମଧ୍ୟ ନିଜର ସମ୍ମାନ ରକ୍ଷାରେ ବିଫଳ ହୋଇଛନ୍ତି । ରାଜା ଓ ତାଙ୍କର ପାରିଷଦମାନଙ୍କର କବି ଶ୍ରୀକଣ୍ଠ ଓ ତା'ର ପତ୍ନୀ ମାଳବିକା ଉପରେ ଅମାନୁଷିକ ଅତ୍ୟାଚାର ଏହି ଭ୍ରଷ୍ଟାଚାରୀ ଶାସନର ନମୁନା । ମାଳବିକାଙ୍କୁ ଉପଭୋଗ କରିବାର ପାପଲାଳସା ରାଜା ବୀରାଦିତ୍ୟଙ୍କୁ ପତନ ଆଡ଼କୁ ନେଇଯାଇଛି । ରାଜାଙ୍କ ସ୍ତୁତିଗାନ କରିବା ସହ ଭ୍ରଷ୍ଟାଚାରୀ ଶାସକ ପାଖରେ ମୁଣ୍ଡ ନ ନୁଆଁଇ ଦୃଢ଼ଭାବେ ବଞ୍ଚିବାର ମାନସିକତା କବି ଶ୍ରୀକଣ୍ଠଙ୍କ ପାଖରେ ଅଛି । ତାଙ୍କର ସ୍ୱାଭିମାନୀ ସତ୍ତା କବି ଦୀନକୃଷ୍ଣଙ୍କ ସ୍ୱାଭିମାନୀ ସତ୍ତାଠାରୁ କୌଣସି ଗୁଣରେ କମ୍ ନୁହେଁ । ତେଣୁ ରାଜାଜ୍ଞାକୁ ଅବମାନନା କରିଛି ଶ୍ରୀକଣ୍ଠ । ପାରିଷଦ ସହ ଶ୍ରୀକଣ୍ଠର କଥୋପକଥନକୁ ଲକ୍ଷ୍ୟ କରାଯାଇପାରେ -

୨ୟ ପାରିଷଦ : (ତାକୁ ବୁଝାଇବାକୁ ଚେଷ୍ଟା କରି) ଦେଖ ଶ୍ରୀକଣ୍ଠ ! ମହାରାଜା ବୀରାଦିତ୍ୟ ତମକୁ ଅସମ୍ମାନ କରୁନାହାନ୍ତି । ସେ ତମକୁ ରାଜକବି ପଦରେ ଅଧିଷ୍ଠିତ କରିବାକୁ ଚାହାନ୍ତି । ତମ ପାଇଁ ରାଜକୋଷରୁ ମାସିକ ବିପୁଳ ସ୍ୱର୍ଣ୍ଣ ମୁଦ୍ରାର ବ୍ୟବସ୍ଥା ମଧ୍ୟ ହୋଇଛି । ତମେ ସମ୍ମତ ହୁଅ ଶ୍ରୀକଣ୍ଠ ।

ଶ୍ରୀକଣ୍ଠ : ସାବଧାନ ନିର୍ଲ୍ଲଜ । ଆପଣଙ୍କ ପରି ରାଜାଙ୍କର ଚାଟୁକାରମାନଙ୍କ ତୁଣ୍ଡରେ ହୁଏତ ଏକଥା ଶୋଭା ପାଇପାରେ ମାତ୍ର ରାଜାଙ୍କର ସେ ଆଦେଶକୁ ମୁଁ ଶତ ପଦାଘାତ କରେ । (ଏଇ ଯେ ସୂର୍ଯ୍ୟ ଉଏଁ, ପୃ. ୨୭)

ବିପ୍ଳବୀ କବି ଶ୍ରୀକଣ୍ଠ ଓ ତା'ର ପତ୍ନୀ ମାଳବିକା ରାଜା ବୀରାଦିତ୍ୟଙ୍କ ରୋଷର ଶିକାର ହୋଇ ବନ୍ଦୀ ହୁଅନ୍ତି । ବୀରାଦିତ୍ୟଙ୍କ ମହାରାଣୀ ପ୍ରଜାମାନଙ୍କ ଦୁର୍ଦ୍ଦଶା ଦେଖି ବ୍ୟଥିତ ହେବା ସହ ରାଜାଙ୍କୁ ସୁଧାରିବାରେ ଚେଷ୍ଟା କରି ବିଫଳ ହୋଇ ନିଜର ପ୍ରାଣବଳି ଦେଇଛନ୍ତି । କବି ଶ୍ରୀକଣ୍ଠଙ୍କ ଚକ୍ଷୁ ଉତ୍ପାଟିତ କରାଯିବାପରେ ଦୟନୀୟ ଭାବେ ସେ ମୃତ୍ୟୁବରଣ କରିଛନ୍ତି । ନିଜର ସତୀତ୍ୱ ରକ୍ଷା କରିବାକୁ ଯାଇ ମାଳବିକା ମଧ୍ୟ ଆତ୍ମହତ୍ୟା କରିଛି । ପରିଶେଷରେ ବିପ୍ଳବୀ ସାଧୁଚରଣଙ୍କ ନେତୃତ୍ୱରେ ପ୍ରଜାମାନେ ଅନ୍ୟାନ୍ୟ ରାଜକର୍ମଚାରୀଙ୍କୁ ପରାହତ କରି ରାଜା ବୀରାଦିତ୍ୟଙ୍କୁ ବନ୍ଦୀ କରିଛନ୍ତି । କର୍ଣ୍ଣପୁରରେ ରାଜତନ୍ତ୍ରର ବିଲୋପ ଘଟି ପ୍ରତିଷ୍ଠିତ

ହୋଇଛି ଲୋକତନ୍ତ୍ର । ପୁରାତନର ଧ୍ୱଂସସ୍ତୁପ ତଳୁ ଜନ୍ମ ନେଇଛି ନୂତନ ମୂଲ୍ୟବୋଧ । ଅରାଜକତାର ଅନ୍ଧକାରକୁ ଚିରି ଉଦିତ ହୋଇଛି ପରିବର୍ତ୍ତନର ସୂର୍ଯ୍ୟ । କାହାଣୀ କିନ୍ତୁ ସେଠି ସରିଯାଉନାହିଁ !

ନାଟକର ଦ୍ୱିତୀୟ ପର୍ବରେ ଟ୍ରାନ୍ସଫରମେସନ ଟେକ୍‌ନିକ୍‌ରେ କର୍ଣ୍ଣପୁର ପରିବର୍ତ୍ତିତ ହୋଇଛି କିରଣପୁରରେ । ପୂର୍ବଭାଗର କଥାବସ୍ତୁ, ଚରିତ୍ର ସମାନ ଥାଇ ତଥା ଅତୁଟ ରହି ପରବର୍ତ୍ତୀ କାଳରେ ଆଧୁନିକ ସମାଜ ଓ ସମୟ ସହ ତାଳଦେଇ ରୂପାନ୍ତରିତ ହୋଇଛି । ପ୍ରଥମ ପର୍ବରେ ପାଲାଗାୟକମାନେ କର୍ଣ୍ଣପୁର ରାଜ୍ୟର ଅତ୍ୟାଚାରୀ ଶାସନ ସଂପର୍କରେ ଗାନ କରୁଥିଲାବେଳେ ଦ୍ୱିତୀୟ ପର୍ବରେ ଷ୍ଟ୍ରିଟ୍ ସିଙ୍ଗର୍ ଭାବେ ସେମାନେ ରୂପାନ୍ତରିତ ହୋଇ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ କିରଣପୁରର ସଂଘଟିତ ଏକ ହତ୍ୟାକାଣ୍ଡ ସଂପର୍କରେ ଗାଁରୁ ସହର ଯାଏ ବୁଲିବୁଲି ଗୀତ ଗାଇଛନ୍ତି । ଆଧୁନିକ ଜୀବନ ଓ ସମୟ ସହ ତାଳଦେଇ କର୍ଣ୍ଣପୁର ରୂପାନ୍ତରିତ ହୋଇଛି କିରଣପୁର ଭାବରେ । ରାଜା ବୀରାଦିତ୍ୟ ରୂପାନ୍ତରିତ ହୋଇଛନ୍ତି ଶିଳ୍ପପତି ଆଦିତ୍ୟ ପ୍ରତାପ ନାମରେ । ଏହି ଦ୍ୱିତୀୟ ପର୍ବରେ ଶିଳ୍ପପତିମାନଙ୍କର ସର୍ବହରା ଶ୍ରମିକ ଉପରେ ଅତ୍ୟାଚାର, ଶ୍ରମିକମାନଙ୍କ ଏକତାକୁ ଭାଙ୍ଗିଦେବାର ଷଡ଼ଯନ୍ତ୍ର ଦେଖିବାକୁ ମିଳିଥାଏ । ଶିଳ୍ପପତି ଆଦିତ୍ୟ ପ୍ରତାପଙ୍କର ଶ୍ରମିକମାନଙ୍କ ସାଧାରଣତମ ଦାବିକୁ ପ୍ରତ୍ୟାଖ୍ୟାନ, ବିଦ୍ରୋହୀ ନେତା କଣ୍ଢୁଦାସକୁ ବିନା ଦୋଷରେ ଦୋଷୀ ସଜାଇବା, ତା'ର ଅନ୍ଧୁଣୀ ପତ୍ନୀ ମାଳତୀ ଉପରେ ଲୋଲୁପଦୃଷ୍ଟି ପକାଇବା ଓ ତା'ର ଅସହାୟତାର ଫାଇଦା ନେବାର ଚିନ୍ତାଧାରା ଭିତରେ ସଇତାନୀ ସତ୍ତାଟି ଲକ୍ଷ୍ୟ କରାଯାଇପାରେ । ପ୍ରଥମ ପର୍ବରେ ବୀରାଦିତ୍ୟଙ୍କ ପତ୍ନୀ ତାଙ୍କୁ ପାପର ମାର୍ଗରୁ ଫେରେଇ ଆଣିବାରେ ଯେମିତି ବିଫଳ ହୋଇଥିଲେ, ଦ୍ୱିତୀୟ ପର୍ବରେ ସେମିତି ଆଦିତ୍ୟ ପ୍ରତାପଙ୍କ ପତ୍ନୀ କାମିନୀ ତାଙ୍କୁ ଭୁଲ୍ ରାସ୍ତାରୁ ବାହାର କରି ନେବାରେ ଅସଫଳ ହୋଇଛନ୍ତି । ଏତଦ୍‌ବ୍ୟତୀତ ଶ୍ରମିକମାନଙ୍କର ସାଧାରଣ ଦାବିଜନିତ ବିଦ୍ରୋହକୁ ଦମନ କରିବାର ପ୍ରୟାସ ଭିତରେ ଆଦିତ୍ୟ ପ୍ରତାପଙ୍କ ସୁବିଧାବାଦୀ କ୍ଷମତାଲିପ୍ସୁ ବ୍ୟକ୍ତିସତ୍ତାକୁ ଦେଖିବାକୁ ମିଳେ । ଜେଲ୍ ପାଚେରୀ ଡେଇଁ ଖସି ଆସିଥିବା କଣ୍ଢୁଦାସ ପୋଲିସ ଗୁଳିରେ ମୃତ୍ୟୁବରଣ କରିବା ସହ ଜଣେ ବିପ୍ଳବୀ-ସର୍ବହରାର କେବଳ ନୁହେଁ ବରଂ ଏ ସମାଜର ସଂଖ୍ୟାଧିକ ମେହନତି-ଅଭାବୀ ମଣିଷର ପରାଜୟ ଘଟିଛି । କଣ୍ଢୁଦାସର ମୃତ୍ୟୁ ବିପ୍ଳବୀର ସ୍ୱର୍ଦ୍ଧିତ ମୃତ୍ୟୁ । ସେ ମୃତ୍ୟୁ କୋଟି କୋଟି ଜନତାର ପ୍ରାଣରେ ବିପ୍ଳବର ଗୁଞ୍ଜରଣ ସୃଷ୍ଟି କରିଛି । "କର୍ଣ୍ଣପୁରର ରାଜା ବୀରାଦିତ୍ୟ ଭିତରେ ହୁଏତ ଆଦିତ୍ୟ ପ୍ରତାପର ସତ୍ତା ବିଲୁପ୍ତ ହୋଇଥିଲା । ପ୍ରଥମ ଦ୍ୱିତୀୟ ପର୍ବର ଓ ଦ୍ୱିତୀୟଟି ପ୍ରଥମ ପର୍ବର ଐତିହାସିକ ଓ ସାମାଜିକ ସମାନ୍ତର ହୋଇପାରନ୍ତି । ନାଟ୍ୟକାରଙ୍କ ମତରେ ପ୍ରଥମ ଓ ଦ୍ୱିତୀୟ ପର୍ବର ଚରିତ୍ରମାନଙ୍କରେ ନାମକରଣ ମଧ୍ୟ ପାଖାପାଖି ସମାନ । ଏଣୁ ଦ୍ୱିତୀୟ ପର୍ବର ଚରିତ୍ରମାନଙ୍କୁ ପ୍ରଥମ ପର୍ବର

ଚରିତ୍ର ମାନଙ୍କର ବ୍ୟାପ୍ତି ବୋଲି କୁହାଯାଇପାରେ । ଅର୍ଥାତ୍ 'ଏଇ ଯେ ସୂର୍ଯ୍ୟ ଉଏଁ' ନିରବଧି କାଳ ଭିତରେ ହେଉଥିବା ଅତ୍ୟାଚାରରେ ଏକ ପରିବ୍ୟାପ୍ତ ବିବରଣୀ । ସ୍ଥାନ, କାଳ ଓ ପାତ୍ର ପରିବର୍ତ୍ତିତ ହେଲେ ମଧ୍ୟ ପରିବର୍ତ୍ତନକୁ ଯେମିତି କେହି ଗ୍ରହଣ କରିପାରିନାହାନ୍ତି । ଅଥଚ ଆଶ୍ଚର୍ଯ୍ୟର କଥା ଉଭୟ ପର୍ବର ଶେଷରେ ପରିବର୍ତ୍ତନର ଶୁଭଶଙ୍ଖ ବାଜୁଛି ।" (ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀଧାରା, ଡ. ବିଜୟ କୁମାର ଶତପଥୀ, ପୃ.୫୭୩)

ବାସ୍ତବରେ ଦେଖିଲେ କଣ୍ଠଦାସର ମୃତ୍ୟୁପରେ ସମାଜ ବ୍ୟବସ୍ଥାରେ ବାସ କରୁଥିବା ସାଧାରଣ-ନିଷ୍ପେଷିତ ମଣିଷର ପରାଜୟ ଜନିତ ଦୁଃଖ ଭିତରେ ସାମାଜିକ ବିଷାଦବୋଧକୁ ଲକ୍ଷ୍ୟ କରିପାରିବା । ଦୁଃଖର ବିପର୍ଯ୍ୟୟ, ସ୍ୱପ୍ନଭଂଗ, ଦୁର୍ଦ୍ଦଶା ଭିତରେ କଣ୍ଠଦାସର ଏ ଦୁର୍ଦ୍ଦଶା, ବ୍ୟକ୍ତିର ନୁହେଁ, ବୃହତ୍ତର ସମାଜ ବ୍ୟବସ୍ଥାର ଦୁର୍ଦ୍ଦଶା, ଯାହା ସୋସିଆଲ୍ ଟ୍ରାଜେଡ଼ି ଭାବେ ସ୍ୱୀକୃତ । "ଏଇ ନାଟକର ବିରୋଧାଭାସ ଭିତରୁ ହିଁ ଗୋଟାଏ ସତ୍ୟର ଅଙ୍କୁରୋଦଗମ ଘଟୁଛି । ଶୋଷଣ, ସଂଗ୍ରାମ ଓ ନ୍ୟାୟ ଅନ୍ୟାୟର ଡାୟାଲେକ୍‌ଟିକ୍‌ସ ଭିତରେ ତିଆରି ହେଉଛି ଆଉ ଏକ ସୂର୍ଯ୍ୟ ଉଦୟର ମୁହୂର୍ତ୍ତ । କିନ୍ତୁ ବୀରାଦିତ୍ୟଙ୍କ ପତନ ଯେପରି ସ୍ପଷ୍ଟ ଆଦିତ୍ୟ ପ୍ରତାପଙ୍କ ବିଜୟ ସେପରି ଅସ୍ପଷ୍ଟ । ତାଙ୍କରି ବିଜୟ ଭିତରେ ଶୋଷଣର ଇତିହାସ ଲମ୍ବିଆସିଛି ବର୍ତ୍ତମାନ କାଳର ରୈହଦୀ ଆର ପାରିକି ।" (ଝଙ୍କାର, ଡିସେମ୍ବର ୧୯୯୦, ଡ. ରମେଶ ପ୍ରସାଦ ପାଣିଗ୍ରାହୀ)

ଅତ୍ୟାଚାର ଓ ବିପ୍ଳବ ହିଁ ନାଟକର ଉଭୟ ଭାଗର ମୁଖ୍ୟ କଥାବସ୍ତୁ ହୋଇଛି । ପ୍ରଥମ କାହାଣୀ / ପ୍ରଥମ ପର୍ବରେ ବୀରାଦିତ୍ୟଙ୍କ କୁଶାସନରେ ପ୍ରଜାମାନେ ଅତିଷ୍ଠ ହେବା, କବି ଶ୍ରୀକଣ୍ଠ ଉପରେ ରାଜ ଅତ୍ୟାଚାର ଓ ପ୍ରଜାମାନଙ୍କ ବିପ୍ଳବ ଦ୍ୱାରା ରାଜତନ୍ତ୍ରର ପତନ ଦେଖିବାକୁ ମିଳିଥିଲା ବେଳେ ଦ୍ୱିତୀୟ ପର୍ବରେ / ଦ୍ୱିତୀୟ କାହାଣୀର ଶିଳ୍ପପତି ଆଦିତ୍ୟ ପ୍ରତାପଙ୍କ ଚକ୍ରାନ୍ତ ଭିତରେ ଚାପି ହୋଇଯାଇଛି କଣ୍ଠଦାସ । କିନ୍ତୁ ଉଭୟ ପର୍ବର ଶୀର୍ଷବିନ୍ଦୁରେ ଅନ୍ୟାୟ ଅତ୍ୟାଚାରର ଅନ୍ଧାର ରାତି ପାହି ନୂତନ ସୂର୍ଯ୍ୟ ଉଦୟର ସମ୍ଭାବନାକୁ ଦେଖାଇ ଦିଆଯାଇଛି ।

ଟ୍ରାନ୍‌ସ୍‌ଫରମେସନ୍ ଟେକିନିକ୍‌କୁ ନାଟ୍ୟକାର ଗ୍ରହଣ କରିଥିବାରୁ ଘଟଣା, କଥାବସ୍ତୁ, ଚରିତ୍ର ପୂର୍ବପରି ଉପସ୍ଥିତ ହୋଇଛନ୍ତି ରୂପାନ୍ତର ମାଧ୍ୟମରେ । ତେଣୁ ରାଜା ବୀରାଦିତ୍ୟ-ଶିଳ୍ପପତି ଆଦିତ୍ୟ ପ୍ରତାପ, ଚଣ୍ଡାଦିତ୍ୟ-ମ୍ୟାନେଜର, ବୈଲୋଚନ-ସରପଞ୍ଚ ଲୋଚନ ମିଶ୍ର, ସେନାପତି ସୂର୍ଯ୍ୟସେନ-ଇନ୍‌ସପେକ୍ଟର, କବି ଶ୍ରୀକଣ୍ଠ-ବିପ୍ଳବୀ କଣ୍ଠଦାସ, ପ୍ରଥମ ପାରିଷଦ-ସ୍ୱାଧୀନତା ସଂଗ୍ରାମୀ ମାନଧାତା, ଦ୍ୱିତୀୟ ପରିଷଦ-ଚାଟୁକାର ଜୟୀ, ବିପ୍ଳବୀ ସାଧୁଚରଣ-ବିଧାୟକ ରକ୍ଷୀ-କନେଷ୍ଟବଳ, ରାଣୀ କାଦମ୍ବିନୀ-କାମିନୀ ଏବଂ ମାଳବିକା-ମାଳତୀ ନାମରେ ରୂପାନ୍ତରିତ ହୋଇଛନ୍ତି । ନାଟକର ପ୍ରଥମ ଭାଗରେ ରାଜ ରାଜୁଡ଼ା ସମୟର ସଂଳାପ

ବ୍ୟବହାର କରାଯାଇଥିବା ବେଳେ ଦ୍ୱିତୀୟ ଭାଗରେ ଆଧୁନିକ ଚରିତ୍ରମାନଙ୍କ ଅନୁଯାୟୀ ପାତ୍ରୋଚିତ ସଂଳାପ ସଂଯୋଜନା କରାଯାଇଛି ।

ମଞ୍ଚାୟନ ଦୃଷ୍ଟିରୁ 'ଏଇ ଯେ ସୂର୍ଯ୍ୟ ଉଏଁ' ନାଟକକୁ ବିଚାର କଲାବେଳେ ଆଲୋକ ସହ ଦୃଶ୍ୟ ସଂଯୋଜନା ଅତ୍ୟନ୍ତ କଳାନୈପୁଣ୍ୟମଣ୍ଡିତ ହୋଇଛି ବୋଲି ମନେ ହୁଏ । ନାଟକର ପ୍ରାରମ୍ଭରୁ ମଞ୍ଚଟି ଦୁଇଟି ଭାଗରେ ବିଭକ୍ତ ହୋଇଥିବାବେଳେ ପ୍ରଥମ ଜୋନ୍‌ର ଗଭୀର ଅନ୍ଧକାର ଆଲୋକର ପ୍ରବାହରେ ଧୀରେ ଧୀରେ ଅପସରି ଯାଇଛି । କୋରସ୍‌ର ଲହରୀ ଭିତରେ ଦରିଦ୍ର – ସାଧାରଣ ମଣିଷଟିଏ ମଞ୍ଚକୁ ଆସିଛି । ଖାଇବାକୁ ପାଟିକୁ ହାତ ନେଉଥିଲାବେଳେ ମହାରାଜଙ୍କ ଜୟକାର ଧ୍ୱନିରେ ତା'ର ଖାଇବା ଜିନିଷ ଖସିପଡ଼ିଛି । ପରେ ସେ ହୋଇଛି ରାଜବନ୍ଦୀ । ଭୟାତୁର ହୋଇ ସେ ଧାଁ'ଦଉଡ଼ କଲାବେଳେ ସେ କ୍ଳାନ୍ତପ୍ରାୟ ଓ ଯନ୍ତ୍ରଣାଗ୍ରସ୍ତ ହୋଇପଡ଼ିଛି । ପୁଣି ଆଲୋକର ପରିବର୍ତ୍ତିତ ସ୍ଥିତି ଭିତରେ ସେ ଶୁଣିଛି ସାଧାରଣ ମଣିଷର ବିପ୍ଳବର ଧ୍ୱନି । ବିଚରା ସାଧାରଣ ଲୋକଟି ସରକାର ବିରୋଧୀ କାର୍ଯ୍ୟପାଇଁ ଦଶବର୍ଷର ସଶ୍ରମ କାରାଦଣ୍ଡ ପାଇଛି । କ୍ରାସ୍ ମ୍ୟୁଜିକ୍‌ର ଲହର ଭିତରେ ଆଗକୁ ବଢ଼ିଚାଲିଛି ଲୋକଟି । ଏଇ ଦୃଶ୍ୟ ପରେ ଆରମ୍ଭ ହୋଇଛି ନାଟକର ପ୍ରଥମ ପର୍ବ ।

ନାଟକର ପ୍ରଥମ ପର୍ବରେ – ପ୍ରଥମ ଜୋନ୍‌ରେ ଆଲୋକ ଆସିବା ସହ ପାଲାଦଳ ପାଲା ମାଧ୍ୟମରେ ପରିବେଷଣ କରିଛନ୍ତି କର୍ଣ୍ଣପୁର ରାଜ୍ୟରେ ଅତ୍ୟାଚାରିତ ପ୍ରଜାମାନଙ୍କର ଦୁଃଖଦ କାହାଣୀ । ପାଲାଦଳର ପ୍ରସ୍ଥାନ ସହ ଆଲୋକ ବି ପରିବର୍ତ୍ତିତ ହୋଇଛି । ଅନ୍ୟ ପକ୍ଷରେ ଦ୍ୱିତୀୟ ଜୋନ୍‌ରେ ବୀରଦର୍ପରେ ପ୍ରବେଶ କରିଛନ୍ତି ରାଜା ବୀରାଦିତ୍ୟ ଓ ତାଙ୍କର ପାରିଷଦ । ବିଦୂଷକ ବୈଲୋଚନ ଦ୍ୱିତୀୟ ଜୋନ୍‌ରେ ରାଜାଙ୍କୁ କବି ଶ୍ରୀକଣ୍ଠଙ୍କ କଥା କହିଲାବେଳେ ପ୍ରଥମ ଜୋନ୍‌ଟି ଆଲୋକିତ ହେବା ସହ ଦ୍ୱିତୀୟ ଜୋନ୍‌ଟି ଅନ୍ଧାକରମୟ ହୋଇଛି ଏବଂ ପ୍ରଥମ ଜୋନ୍‌ରେ କବି ଶ୍ରୀକଣ୍ଠ ସହ ସେନାପତି ସୂର୍ଯ୍ୟସେନ ଓ ପାରିଷଦଙ୍କୁ ଦେଖିବାକୁ ମିଳିଛି । ପରବର୍ତ୍ତୀ କାଳରେ ପ୍ରଥମ ଜୋନ୍‌ରେ ଯେତେବେଳେ ବନ୍ଦୀ କରି ଶ୍ରୀକଣ୍ଠଙ୍କ ସହ ମାଳବିକାକୁ ପାରିଷଦ ଓ ସେନାପତି ନେଇଯାଇଛନ୍ତି, ସେତେବେଳେ ଏହି ଜୋନ୍‌ଟି ଅନ୍ଧାରରେ ବୁଡ଼ିଯିବା ସହ ଦ୍ୱିତୀୟ ଜୋନ୍‌ରେ ପୂର୍ବରୁ ରାଜା ବୀରାଦିତ୍ୟଙ୍କ ସହ ବୈଲୋଚନଙ୍କ ବାର୍ତ୍ତାଳାପ ଦୃଶ୍ୟ ଦେଖିବାକୁ ମିଳିଛି । ପ୍ରଥମ ପର୍ବର ପରିଣତିରେ ଦ୍ୱିତୀୟ ଜୋନ୍‌ରେ ରାଜା ବୀରାଦିତ୍ୟଙ୍କୁ ପ୍ରଜାମାନେ ବନ୍ଦୀ କଲାବେଳେ ସେହି ଜୋନ୍‌ଟି ଅନ୍ଧକାର ହେବାସହ ପ୍ରଥମ ଜୋନ୍‌ରେ ଜ୍ୱଳନ୍ତ ମଶାଲ ଧରି ଧାଉଁଥିବା ଲୋକଟିକୁ ଦେଖିବାକୁ ମିଳିଛି; ଯାହାକୁ ପ୍ରସ୍ତାବନା ଦୃଶ୍ୟରେ ଦେଖିବାକୁ ମିଳିଥିଲା । ଏହା ସହ ମଞ୍ଚରେ ଦେଖାଦେଇଛି ଲାଲ୍ ରଙ୍ଗର ଆଲୋକ ଯାହା ପ୍ରତୀକିତ କରିଛି ପରିବର୍ତ୍ତନର ନୂତନ ସୂର୍ଯ୍ୟକୁ ।

ସେହିପରି ନାଟକର ଦ୍ୱିତୀୟ ପର୍ବରେ ପ୍ରଥମ ପର୍ବର ପାଲାଦଳର ରୂପାନ୍ତର ହୋଇଛି । ଗାୟକ, ବାୟକ ପ୍ରଭୃତି ଷ୍ଟ୍ରିଟ୍ ସିଙ୍ଗର୍‌ରେ ରୂପାନ୍ତରିତ ହୋଇ କାହାଣୀ ପରିବେଷଣ କରୁଛନ୍ତି ।

ମଞ୍ଚରେ ପ୍ରଥମ ଜୋନ୍ ଆଲୋକିତ ହେଲା ବେଳକୁ ଦେଖାଦେଇଛି ଶିଳ୍ପପତି ଆଦିତ୍ୟ ପ୍ରତାପଙ୍କ ଫାକଟ୍ରୀ ନିକଟରେ ଥିବା ଡ୍ରଇଂରୁମ୍‌ର ଦୃଶ୍ୟ । କାହାଣୀର ମଞ୍ଚାୟନ ଏହି ଡ୍ରଇଂ ରୁମ୍‌କୁ ନେଇ ହେଲାବେଳେ ଫ୍ଲାସ୍ ବ୍ୟାକରେ ଅତୀତର ଦୃଶ୍ୟପଟ୍ଟ ଉନ୍ମୋଚନ ପାଇଁ ପ୍ରଥମ ଜୋନ୍ ବ୍ୟବହୃତ ହୋଇଛି । ପ୍ରଥମ ପର୍ବପରି ଦୀନହୀନ ବ୍ୟକ୍ତି ଜଣକ ଏହି ପର୍ବରେ ମଧ୍ୟ ଦେଖାଦେଇଛି । ଫାକଟ୍ରୀ କର୍ମଚାରୀମାନଙ୍କର ଧର୍ମଘଟ, ବିଧାୟକ ସାଧୁଚରଣଙ୍କ ଆଗମନ ଓ କଣ୍ଠଦାସର ପତ୍ନୀ ଅନ୍ଧୁଣୀ ମାଳତୀର ହତ୍ୟାକାଣ୍ଡ ଆଦି ଘଟଣା ସହ ଜେଲରୁ ଖସି ପଳେଇ ଆସିଥିବା କଣ୍ଠଦାସର ମୃତ୍ୟୁ ପ୍ରଭୃତିକୁ ମଞ୍ଚର ଆଲୋକ ସହ ଦୃଶ୍ୟପଟ୍ଟର ଘନଘନ ପରିବର୍ତ୍ତନ ମାଧ୍ୟମରେ ଉପସ୍ଥାପନ କରାଯାଇଛି ଓ ନାଟକୀୟ ଉତ୍କଣ୍ଠାକୁ ଏହା ବୃଦ୍ଧି କରିଛି । ନାଟକଟିର ପ୍ରଥମ ଭାଗରେ ବୀରାଦିତ୍ୟଙ୍କ ସାମ୍ରାଜ୍ୟ ପତନ ହେବା ସହ ଗଣତନ୍ତ୍ରର ପ୍ରତିଷ୍ଠା ହୋଇଛି । କିନ୍ତୁ ଦ୍ୱିତୀୟ ଭାଗରେ ଆଦିତ୍ୟ ପ୍ରତାପଙ୍କ ବଦଳରେ କଣ୍ଠଦାସକୁ ମୃତ୍ୟୁବରଣ କରିବାକୁ ପଡ଼ିଛି । ମୃତ୍ୟୁ ପୂର୍ବରୁ କଣ୍ଠଦାସ କହିଛି –

କଣ୍ଠଦାସ : ନା ପାରିଲିନି... ଭାବିଥିଲି ଆଦିତ୍ୟ ପ୍ରତାପର ଗର୍ବ ଅହମିକାକୁ ମାଟିରେ ମିଶେଇ ଦେବି । ମାଳତୀ ହତ୍ୟାର ପ୍ରତିଶୋଧ ନେବି । ପାରିଲିନି... ଓଃ କିନ୍ତୁ ମନେରଖ ଆଦିତ୍ୟ ପ୍ରତାପ । କଣ୍ଠଦାସ ମରିଗଲେ ବି ତାରି କ୍ଷୁଧିତ ଆତ୍ମା ମଧ୍ୟରୁ ଅନେକ... ଅନେକ... କଣ୍ଠଦାସ ଜନ୍ମନେବେ । ସେମାନେ କରିଚାଲିବେ ଅନ୍ୟାୟ ବିରୁଦ୍ଧରେ ଶପଥବଦ୍ଧ ସଂଗ୍ରାମ... ସେ ଦିନକୁ ଅପେକ୍ଷାକର ଆଦିତ୍ୟ ପ୍ରତାପ... ଅପେକ୍ଷା କର । (ପୃ.୬୪)

ନାଟକର ଦୁଇଟିଯାକ ପର୍ବରେ ନାୟକ ବିଦ୍ରୋହୀ ହୋଇଉଠିଛି । ବିଦ୍ରୋହ ସହିତ ଏକ ଟ୍ରାଜିକ୍ ପରିବେଶ ସମାନ୍ତରାଳ ଭାବରେ ନାଟକରେ ଗତିଶୀଳ ହୋଇଛି । କଣ୍ଠଦାସର ମୃତ୍ୟୁପରେ ନୂତନ ସକାଳର ପ୍ରତୀକ୍ଷା ନେଇ ସୂର୍ଯ୍ୟ ଉଦୟର ଆଭାସ ଆସିଛି । ସେ ଆଭାସ ପରିବର୍ତ୍ତନର, ପୁଞ୍ଜିପତିର ସାମ୍ରାଜ୍ୟକୁ ଧ୍ୱଂସ କରି ସର୍ବହରାର ନେତୃତ୍ୱ ସ୍ଥାପନର ସମ୍ଭାବନା ଆଣିଛି । ଅନେକ ମର୍ମସ୍ପର୍ଶୀ ମୁହୂର୍ତ୍ତକୁ ଜୀବନ୍ତ ଭାବେ ଉପସ୍ଥାପନ କରିବା ଭିତରେ ସୋସିଆଲ ଟ୍ରାଜେଡ଼ିର ସ୍ୱରକୁ ନାଟ୍ୟକାର କଣ୍ଠଦାସର ମୃତ୍ୟୁପରେ ସଂଚାର କରିଛନ୍ତି । ସେହି ବୃହତ୍ତର ସାମାଜିକ ବିଷାଦ ଭିତରେହିଁ ଛପିରହିଛି ନୂତନ ସୂର୍ଯ୍ୟ ଉଦୟର ସମ୍ଭାବନା ।



# ସମୟର ବିବର୍ତ୍ତନ ଧାରାରେ 'କର୍ଣ୍ଣ'

ବିଂଶ ଶତକର ମଧ୍ୟଭାଗ ବେଳକୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଧୃତରାଷ୍ଟ୍ର, ଦ୍ରୌପଦୀ, କର୍ଣ୍ଣ, ଦୁର୍ଯ୍ୟୋଧନ, ଭୀଷ୍ମ ପ୍ରମୁଖ କେତେକ ସ୍ମରଣୀୟ ପୌରାଣିକ ଚରିତ୍ର ପୁରାଣର ବାଡ଼ଭାଙ୍ଗି,ସମୟର ବନ୍ଧନକୁ ଅତିକ୍ରମ କରି ଏକାକାର ହୋଇଗଲେ ଆଧୁନିକ ଚେତନା ସହ । ଏମାନଙ୍କୁ ସମାଲୋଚକମାନେ ଅଭିହିତ କଲେ 'ମିଥିକ୍' ଚରିତ୍ର ଭାବରେ । ପୁରାଣର କଥାବସ୍ତୁକୁ ବା ଚରିତ୍ରକୁ ଆଧୁନିକ ମାନସିକତା ସହ ସଂଯୁକ୍ତ କରି ଭାବ ପ୍ରକାଶ କରିବା ପରିଗଣିତ ହେଲା 'ମିଥ୍' ଭାବରେ । ସେମିତି ପୁରାଣର ଗୋଟିଏ ଚରିତ୍ର 'କର୍ଣ୍ଣ'କୁ ଆଣି ନାଟ୍ୟକାର ଡ. ବିଜୟ କୁମାର ଶତପଥୀ ଆଧୁନିକ ମାନସିକତା ସହ ସଂଯୁକ୍ତ କରିପାରିଛନ୍ତି । ପୁରାଣର ପଟ୍ଟଭୂମି ଉପରେ ଆଧୁନିକତାର ପ୍ରାସଙ୍ଗିକତା ନେଇ 'କର୍ଣ୍ଣ' ନାଟକ ପର୍ଯ୍ୟବସିତ ।

ମିଥ୍‌ର ସତ୍ୟ କାଳଜୟୀ ସତ୍ୟ; ଏ ସତ୍ୟ ମଧ୍ୟରେ ଲୁକ୍‌କାୟିତ ଥାଏ ସମ୍ବେଦନଶୀଳତା, ସୂକ୍ଷ୍ମ ମନନଶୀଳତା । ଏ ସତ୍ୟ ଭିତରେ ଜୀବନ ସତ୍ୟର ସନ୍ଧାନ କରି ଆଧୁନିକ କାଳର ନାୟକ ଜୀବନକୁ ନୂତନ ଦୃଷ୍ଟିଭଙ୍ଗୀ ଦେଇ ପ୍ରତ୍ୟକ୍ଷ କରିଛି । ଏହା ଫଳରେ ମିଥ୍‌ର ପୁନର୍ମୂଲ୍ୟାୟନ ଘଟିବା ସହ ତା'ର ସଙ୍ଗଠନ କ୍ଷେତ୍ରରେ ଦେଖାଦେଇଛି ପରିବର୍ତ୍ତନ ।

ଆଉ ଗୋଟିଏ ଦିଗରୁ ଦେଖିଲେ 'କର୍ଣ୍ଣ' ଏକ ରକ୍ତ ମାଂସର ଚରିତ୍ର ନୁହେଁ, ବରଂ ଏକ ମାନସିକତା । ପ୍ରତି ମଣିଷ ଭିତରେ ସେ ବାଛିନିଏ ନିଜର ଅସ୍ତିତ୍ୱ, ଯେଉଁମାନେ ଶତ ଉପେକ୍ଷା, ଲାଞ୍ଛନା ଭିତରେ ବଞ୍ଚନ୍ତି, ସଂଘର୍ଷ କରନ୍ତି ପୁଣି ଟଳି ପଡ଼ନ୍ତି ଭାଗ୍ୟ ଦେବୀର କ୍ରୂର୍ ନିର୍ଦ୍ଦେଶରେ । ମଣିଷର ଜୀବନ ପ୍ରବାହରେ ଆମେ ଦେଖୁ ଦୁଇଟି କ୍ରିୟାଶୀଳ ଶକ୍ତି । ଗୋଟିଏ ଭାଗ୍ୟ, ଆରଟି ପୌରୁଷ । କେତେବେଳେ ଭାଗ୍ୟର ବିଜୟ ହୁଏ ପୁଣି କେବେ ପୌରୁଷର । ଏହି ଦୁଇଟି ଦ୍ୱନ୍ଦ୍ୱ ଭିତରେ ଗତିକରେ ମଣିଷର ଜୀବନ । ଏହି ଦ୍ୱନ୍ଦ୍ୱଶୀଳ ମାନସିକତାର ପ୍ରତିବିମ୍ବ ଭାବେ 'କର୍ଣ୍ଣ' ଚରିତ୍ରକୁ ଦେଖିବାକୁ ମିଳେ ଏହି ନାଟକରେ । ମଣିଷ ଜୀବନରେ ଯେମିତି ଯୁଦ୍ଧର ଶେଷ ନ ଥାଏ, ସେମିତି ପାର୍ଥ ଓ କର୍ଣ୍ଣର ସଂଘର୍ଷର ଇତି ହୁଏ ନାହିଁ । କର୍ଣ୍ଣ ପରାଜିତ ହୋଇ ବି ବଞ୍ଚିଥାଏ କାଳ କାଳ ଧରି ପ୍ରତ୍ୟେକ ମଣିଷର ହୃତ୍‌ସ୍ପନ୍ଦନରେ । ମିଥ୍‌ର ପୁନର୍ଗଠନ, ଜୀବନର ସତ୍ୟସନ୍ଧାନ ଓ ସୂକ୍ଷ୍ମ ସମ୍ବେଦନଶୀଳତା ଏହି ୩ଟି ପର୍ଯ୍ୟାୟକୁ ଦୃଷ୍ଟିରେ ରଖି 'କର୍ଣ୍ଣ' ନାଟକର ପରିକଳ୍ପନା କରାଯାଇଛି ।

'କର୍ଣ୍ଣ' ନାଟକରେ ଯେକୌଣସି ସାମାଜିକ, ପୌରାଣିକ, ଐତିହାସିକ କିମ୍ବା ରାଜନୈତିକ ସମସ୍ୟା ବା ବିଷୟ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥାଏ । ପୁରାଣର ଚରିତ୍ର କର୍ଣ୍ଣ କିପରି ଆଧୁନିକ ଚେତନାରେ ନିଜର ସ୍ଥାନକୁ ବାଛି ନେଇଛି ତାହା ଯେମିତି ଦେଖିବାକୁ ମିଳେ, ଅନୁରୂପ ଭାବେ ସାଧାରଣ ମଣିଷର ଜୀବନଚର୍ଯ୍ୟା, ଶୋଷକ-ଶୋଷିତର ଲଢ଼େଇ ପ୍ରଭୃତି ସମାଜର ନାନା ସମସ୍ୟାକୁ ଏ ନାଟକରେ ଦେଖିବାକୁ ମିଳୁଥିବାରୁ ଏହା ମଧ୍ୟ ଏକ ସମାଜ ସମସ୍ୟା ସମ୍ବଳିତ ନାଟକର ମର୍ଯ୍ୟାଦା ବହନ କରେ ।

ନାଟକରେ ଦୁଇଟି ଜୋନ୍‌ରେ ବିଭାଜିତ ରଙ୍ଗମଞ୍ଚର ପରିକଳ୍ପନା ରହିଛି । ପ୍ରଥମ ଜୋନ୍‌ରେ କର୍ଣ୍ଣଙ୍କର ରଥଚକ ମେଦିନୀଗ୍ରାସ କରିଥିବା ମୁହୂର୍ତ୍ତରେ କୃଷ୍ଣଙ୍କ କଥାରେ ଅର୍ଜ୍ଜୁନ କର୍ଣ୍ଣଙ୍କ ଉପରକୁ ଶର ନିକ୍ଷେପ କରିଛନ୍ତି । ଥରଟିଏ ଆତ୍ମରକ୍ଷା କରିବାର ସୁଯୋଗ ମଧ୍ୟ କର୍ଣ୍ଣଙ୍କୁ ମିଳିନାହିଁ । ଭାଗ୍ୟ ଓ ପୌରୁଷର ଲଢ଼େଇ ଭିତରେ କର୍ଣ୍ଣଙ୍କ ଅସ୍ତିତ୍ୱ ପରିଣତ ହୋଇଯାଏ ଏକ ମାନସିକତାରେ । ପ୍ରଥମ ଦୃଶ୍ୟରେ ମୁମୂର୍ଷୁ କର୍ଣ୍ଣର ନିଜ ସମ୍ପର୍କରେ ବକ୍ତବ୍ୟ, କର୍ଣ୍ଣଙ୍କ ହୃଦୟର ଅବ୍ୟକ୍ତ ବେଦନା, ସୂତ୍ରଧାରର ସମ୍ବେଦନଶୀଳ ପୁଣି ପ୍ରଶାନ୍ତ ସ୍ୱର ପ୍ରଭୃତି ଦର୍ଶକଙ୍କୁ କର୍ଣ୍ଣ ନାଟକ ପ୍ରତି ଆବେଗ ଓ ସମ୍ବେଦନା ପ୍ରକାଶ କରିବାକୁ ବାଧ୍ୟ କରେ । ନାଟକରେ ସୂତ୍ରଧାରଙ୍କ ଭୂମିକା ରହିଛି ପୁରାଣ ସହ ଆଧୁନିକତାକୁ ସଂଯୋଗ କରିବାଲାଗି । ନାଟକର ନାୟକ ସୂର୍ଯ୍ୟ ପ୍ରକାଶର ଜନ୍ମ, ତା'ର ସଂଘର୍ଷମୟ ଜୀବନ, ପ୍ରେମର ବିଫଳତା ସହ ପୁରାଣ ଯୁଗର 'କର୍ଣ୍ଣ' ଚରିତ୍ରକୁ ଫେଣ୍ଟିଦେଇ କାହାଣୀ ଗଢ଼ିବାର ପ୍ରୟାସ କରିଛନ୍ତି ନାଟ୍ୟକାର । ନାଟକଟିରେ ପ୍ରସ୍ତାବନା ଓ ଉପସଂହାରକୁ ବାଦ୍‌ଦେଇ ୧୧ଟି ଦୃଶ୍ୟ ସମନ୍ୱିତ ହୋଇଛି ।

ସମୟର ବିବର୍ତ୍ତନ ଧାରାରେ ପୁରାଣ ଚରିତ୍ରମାନେ ନୂଆ ରୂପ ପାଇ ଆଧୁନିକ ଜୀବନରେ ଦେଖାଦିଅନ୍ତି । କୃଷ୍ଣ-କେଶବ ଦାସ ଭାବେ, ଅର୍ଜ୍ଜୁନ-ପାର୍ଥ ଭାବେ, କର୍ଣ୍ଣ-ସୂର୍ଯ୍ୟ ପ୍ରକାଶ ଭାବେ, କୁନ୍ତୀ-ଦୁର୍ଯ୍ୟୋଧନ ପ୍ରମୁଖ ନିଜ ନାମ ଅନୁସାରେ ରୂପାନ୍ତରିତ ହୋଇଛନ୍ତି । ପ୍ରସ୍ତାବନା ଓ ପ୍ରଥମ ଦୃଶ୍ୟ ପରେ ଆଧୁନିକ କର୍ଣ୍ଣର ଭାଗ୍ୟ ବିପର୍ଯ୍ୟୟ ସ୍ତବ୍ଧ କରିଦିଏ ଦର୍ଶକଙ୍କୁ । ସୁବିଧାବାଦୀ ଶାସକ ତଥା ମୁଷ୍ଟିମେୟ ରାଜନୀତିର କାର୍ପଟଦାରମାନେ କିପରି ଗଣତନ୍ତ୍ରକୁ ନିଜ ହାତ ମୁଠାରେ ରଖିବାର ମସୁଧା କରନ୍ତି, ଯୋଗ୍ୟ ଲୋକର ଯୋଗ୍ୟତାକୁ ପ୍ରତ୍ୟାଖ୍ୟାନ କରି ନିଜର ଚେଲା ଚାମଚାଙ୍କୁ ସୁବିଧା ପ୍ରଦାନ କରନ୍ତି ତାହା ନାଟକଟିରେ ପରିବେଷିତ ହୋଇଛି । ପୁଞ୍ଜିପତି ସର୍ବହରାର ଶ୍ରେଣୀ ସଙ୍ଘର୍ଷର ଚିତ୍ର, ମାତୃହୃଦୟର ସନ୍ତାନ ପ୍ରତି ଦରଦ, ସୁବିଧାବାଦୀ କ୍ଷମତା ଲିପ୍ସୁମାନଙ୍କର କୂଟଚକ୍ରାନ୍ତ ପ୍ରଭୃତିର ଅବତାରଣା ନାଟକରେ ଭାବୋଚ୍ଛାସର ତରଙ୍ଗ ସୃଷ୍ଟି କରିଛି । ପୁଣି କ୍ଷମତାନ୍ଧମାନଙ୍କର ମିଥ୍ୟା ଆଦର୍ଶର ଧବଳ ଛଦ୍ମମୁଖାକୁ ସର୍ବସାଧାରଣଙ୍କ ଆଗରେ ଖୋଲି ଦେବାର ପ୍ରୟାସ ଏ ନାଟକରେ ମଧ୍ୟ କରାଯାଇଛି । ଏହି କ୍ଷମତାଭିଳାଷୀମାନେ ଆପଣାର ପରିଚୟ ହରାଇବା ଭୟରେ ପ୍ରତିପକ୍ଷଙ୍କ

ଭିତରେ ବିଭେଦ ସୃଷ୍ଟି କରି ଫାଇଦା ଉଠାଇବାର ହୀନ ଚକ୍ରାନ୍ତ କରନ୍ତି । ଆଭିଜାତ୍ୟ-ବଂଶ ପରମ୍ପରା-ପ୍ରତିଷ୍ଠା ନାଆଁରେ ଯୋଗ୍ୟତାକୁ ସେମାନେ ଉପେକ୍ଷା କରନ୍ତି । ସୁବିଧାବାଦୀମାନେ ପ୍ରତିବାଦୀର ବଳ, ସ୍ୱାଭିମାନ, ଲୋକପ୍ରିୟତାରେ ଈର୍ଷାନ୍ୱିତ ହୋଇ ସତ୍ୟକୁ ସମ୍ମୁଖୀନ ହେବାର ଭୟ ସହିତ ମଣିଷର ଆତ୍ମପ୍ରବଞ୍ଚନା ଏହି ନାଟକର କଥାବସ୍ତୁକୁ ସମୃଦ୍ଧ କରିଛି ।

ଆଉ ଗୋଟିଏ ଦୃଷ୍ଟିରୁ ଦେଖିଲେ ଆଧୁନିକ କର୍ଣ୍ଣ-ସୂର୍ଯ୍ୟପ୍ରକାଶ, ନିଜର ବଂଶ ପରିଚୟ ଖୋଜି ଖୋଜି ନିରାଶ ହେବା, ସମାଜର କୁସଂସ୍କାରଟନା, ସୂର୍ଯ୍ୟ ପ୍ରତି କୃଷ୍ଣାର ଶାଶ୍ୱତ ପ୍ରେମ, ତାର ବ୍ୟକ୍ତିତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ, ସୂର୍ଯ୍ୟର ପରାହତ ଅସ୍ତିତ୍ୱ, ପ୍ରତିବାଦୀ ମାନସିକତା, ପ୍ରେମର ବିଫଳତା ପୁଣି କରୁଣ ମୃତ୍ୟୁ, 'କର୍ଣ୍ଣ'ର ମୁଖ୍ୟ ପ୍ରସଙ୍ଗ ହୋଇଛି । ମୋଟ ଉପରେ ଗୋଟିଏ ବାକ୍ୟରେ କହିଲେ କୁନ୍ତୀମାନେ କାଳେ କାଳେ କରନ୍ତି ଭୁଲ୍, ସୂର୍ଯ୍ୟମାନେ ଯୁଗେ ଯୁଗେ ଅପରାଧ କରନ୍ତି, ମାତ୍ର ଏହି ସୁବିଧାବାଦୀଙ୍କ ସୁବିଧାପାଇଁ କର୍ଣ୍ଣପରି-ସୂର୍ଯ୍ୟ ପ୍ରକାଶପରି ନିରୀହମାନେ ପ୍ରତି ମୁହୂର୍ତ୍ତରେ ପାଆନ୍ତି ମାନସିକ ଯନ୍ତ୍ରଣା ଲାଞ୍ଛନା, ଅପମାନ ଓ ଜୀବନ ବ୍ୟାପୀ ଜ୍ୱାଳାର ମାଳା । ଦୁର୍ଭାଗ୍ୟ ଓ ଆତ୍ମଦହନର ସାର୍ଥକ ନାଟକ ହେଉଛି 'କର୍ଣ୍ଣ' ।

ନାଟକର ପ୍ରମୁଖ ଉପାଦାନ ଚରିତ୍ର ଯାହା ନାଟକକୁ ଜୀବନ୍ତ କଳାରେ ପରିଣତ କରିବାରେ ସହାୟ ହୁଏ । ଚରିତ୍ର ଯେତିକି ବାସ୍ତବଧର୍ମୀ ହୁଏ ସେତିକି ତାହା ଦର୍ଶକର ହୃଦୟରେ ପ୍ରଭାବ ପକାଏ । ତେଣୁ ଏ ଦୃଷ୍ଟିରୁ କର୍ଣ୍ଣ ନାଟକର ପ୍ରତିଟି ଚରିତ୍ର ବାସ୍ତବଧର୍ମୀ ମନେହୁଏ । ପୌରାଣିକ କାଳର ଶ୍ରୀକୃଷ୍ଣ, ଅର୍ଜୁନ, ଦୁର୍ଯ୍ୟୋଧନ କର୍ଣ୍ଣ, କୁନ୍ତୀ ଓ ଅଧିରଥ ଆଧୁନିକ କାଳର ଯଥାକ୍ରମେ କେଶବ, ପାର୍ଥ, ସୂର୍ଯ୍ୟ, କୁନ୍ତୀ, ଦୁର୍ଯ୍ୟୋଧନ, ଅଧୀର, ଆଦି ଚରିତ୍ର ନାଟକରେ ସଂଯୋଜିତ । ବିକର୍ତ୍ତନ ରାୟ ଚରିତ୍ର ସମ୍ପର୍କରେ ସାମାନ୍ୟ ଆଭାସ ମିଳିଥିଲେ ମଧ୍ୟ ମଞ୍ଚ ଉପରେ ତାର ଆବିର୍ଭାବ ଘଟିନାହିଁ ।

ସୁତ୍ରଧାର ଚରିତ୍ର ପୁରାଣ ସହ ଆଧୁନିକ ଜୀବନକୁ ସଂଯୋଗ କରିବାର ଦାୟିତ୍ୱ ନିର୍ବାହ କରିଛି । ମିଥିକ୍ ଚରିତ୍ର ଏବଂ ଘଟଣାର ସମାବେଶ ଘଟାଇ ନାଟ୍ୟକାର ଡ. ଶତପଥୀ ନାଟକକୁ କେବଳ ମିଥ୍ ଧର୍ମୀ କରି ତୋଳି ନାହାନ୍ତି, ବରଂ ପରମ୍ପରା ଓ ଐତିହ୍ୟ ସହିତ ବର୍ତ୍ତମାନର ମୂଲ୍ୟବୋଧକୁ ସଂଯୁକ୍ତ କରିପାରିଛନ୍ତି ସେତୁଟିଏ ରଚନା କରି ।

ଆଧୁନିକ କାଳର କୃଷ୍ଣ-କେଶବଦାସ ଓ ଅର୍ଜୁନ-ପାର୍ଥ ଉଭୟ ଧବଳମୁଖାପିନ୍ଧା ଛଦ୍ମ ଆଦର୍ଶ ଭିତରେ ବଞ୍ଚିଥିବା ସୁବିଧାବାଦୀ କ୍ଷମତାଲିପ୍‌ସୁ ମୁଷ୍ଟିମେୟ ପୁଞ୍ଜିବାଦୀ ଗୋଷ୍ଠୀର ପ୍ରତିନିଧି ଭାବେ ଉଭା ହୋଇଛନ୍ତି । ଅଧୀର ଡ୍ରାଇଭର୍‌ଟିଏ ହେଲେ ମଧ୍ୟ ଗୋଟିଏ ପରିତ୍ୟକ୍ତ ଛୁଆକୁ ବଡ଼କରି ନିଜର ମହନୀୟତାର ପରିଚୟ ହେଇଛି । ଦୁର୍ଯ୍ୟୋଧନ ଚରିତ୍ରରେ ଏକ କଳୁଷିତ ସମାଜ ବ୍ୟବସ୍ଥାକୁ ଭାଙ୍ଗିଦେବାର ମାନସିକତା ଲକ୍ଷ୍ୟ କରିହୁଏ । ମଦନ ପରି ଶ୍ରେଣୀହୀନମାନେ କିନ୍ତୁ ମନେମନେ ବିଶ୍ୱସ୍ତ-ପ୍ରତିବାଦୀ ସୂର୍ଯ୍ୟମାନଙ୍କ ପ୍ରତି । କୁନ୍ତୀ ଚରିତ୍ରରେ ଆତ୍ମଦହନରେ ଜଳିଯାଉଥିବା ଏକ ବ୍ୟାକୁଳ ମାତୃତ୍ୱକୁ ଦେଖିବାକୁ ମିଳେ । ନିଜର ସନ୍ତାନକୁ

ପରିଚୟ ଦେବାର ଚେଷ୍ଟାକରି କୋଳେଇ ନେବାକୁ ହାତ ବଢ଼ାଇଲେ ମଧରେ ଛୁଇଁ ପାରିନାହାନ୍ତି, ସମୟର ସୁଅରେ ସେ ଭାସି ଯାଏ । ଏକ ଅସହାୟ ମାଆଭାବେ ଦର୍ଶକ କୁନ୍ତୀଙ୍କୁ ଦେଖେ ।

ମହାଭାରତରେ କର୍ଣ୍ଣଙ୍କ ପ୍ରତି ଥିବା ଦ୍ରୌପଦୀଙ୍କର ଦୁର୍ବଳତାକୁ ଆଧୁନିକ ଜୀବନରେ ଏକ ବିଫଳ ପ୍ରେମ କାହାଣୀ ଭାବେ ନାଟ୍ୟକାର ଦେଖାଇଛନ୍ତି । ସୂର୍ଯ୍ୟଠାରୁ ପ୍ରତ୍ୟାଖ୍ୟାତ ହେବାପରେ କୃଷ୍ଣା ପାର୍ଥଙ୍କୁ ବିବାହ କରିଛି, ମାତ୍ର ସୂର୍ଯ୍ୟର ବ୍ୟକ୍ତିତ୍ୱ ପ୍ରତି ଅସରନ୍ତି ଅମାପ ତା'ର ଶ୍ରଦ୍ଧା, ଅନ୍ତଃସଲୀଳା ପ୍ରେମର ଫଲ୍‌ଗୁ, ପ୍ରବାହିତ ହୋଇଛି ତା' ହୃଦୟରେ । ତେବେ ପ୍ରଶ୍ନଉଠେ ଯଦି ନାଟ୍ୟକାର କୃଷ୍ଣା-ସୂର୍ଯ୍ୟଙ୍କ ପ୍ରେମକୁ ସଫଳତାରେ ପରିଣତ କରି ଦେଇଥାନ୍ତେ ତେବେ ନାଟକରେ କ'ଣ ଅସୁବିଧା ହୋଇଥାଆନ୍ତା ? ସତରେ ନାଟ୍ୟକାର ଡ. ଶତପଥୀ ଅତ୍ୟନ୍ତ କୁଶଳତାର ସହ ଏହାକୁ ବାନ୍ଧି ରଖିଛନ୍ତି । ଏକ ସାମାଜିକ ବାସ୍ତବତାର କଥା କହିବା ନାଟ୍ୟକାରଙ୍କ ଉଦ୍ଦେଶ୍ୟ । ତେଣୁ ରିଅଲିଜିମ୍ ସହ ରୋମାଣ୍ଟିସିଜିମ୍‌ର ବିରୋଧ ଥିବାରୁ କୃଷ୍ଣା-ସୂର୍ଯ୍ୟଙ୍କ ପ୍ରେମ ପ୍ରସଙ୍ଗକୁ ଯଥାସମ୍ଭବ ଦୂରେଇ ଦେବାର ପ୍ରୟାସ .କରଛନ୍ତି ବୋଧହୁଏ ନାଟ୍ୟକାର ।

ନାଟକର ମୁଖ୍ୟ ଚରିତ୍ର ଆଧୁନିକ କର୍ଣ୍ଣ – ସୂର୍ଯ୍ୟପ୍ରକାଶ ବ୍ୟାସଙ୍କ 'ମହାଭାରତ' ଓ ସାରଳାଙ୍କ 'ମହାଭାରତ'ର ପଟ୍ଟଭୂମି ଉପରେ ଦଣ୍ଡାୟମାନ । ତେବେ ଏ ଉଭୟ ମହାକାବ୍ୟର କର୍ଣ୍ଣଠାରୁ ବିଜୟକୁମାର ଶତପଥୀଙ୍କ 'କର୍ଣ୍ଣ' ଭିନ୍ନ ଓ ସ୍ୱତନ୍ତ୍ର । ପୁରାଣର କୃଷ୍ଣ ପରି ସେ ଦୁର୍ଯ୍ୟୋଧନର ସବୁ ଅନ୍ୟାୟକୁ ସମର୍ଥନ କରିନାହିଁ ବରଂ ସୁବିଧାବାଦୀ କ୍ଷମତା ଲିପ୍‌ସୁ, ପୁଞ୍ଜିବାଦୀମାନଙ୍କ ବିରୋଧରେ ବିଦ୍ରୋହ କରିଛି । ବନ୍ଧୁ ଦୁର୍ଯ୍ୟୋଧନକୁ ସଠିକ୍ ମାର୍ଗ ଦେଖେଇଛି, ନାରୀ ପ୍ରତି ସମ୍ମାନବୋଧ ମଧ ତାର ଅଛି । ତେଣୁ ଏ ଦୃଷ୍ଟିରୁ ନାଟ୍ୟକାରଙ୍କ ଆଧୁନିକ କର୍ଣ୍ଣ ସୂର୍ଯ୍ୟପ୍ରକାଶ ପୁରାଣର କର୍ଣ୍ଣଠାରୁ ଏକ ବ୍ୟତିକ୍ରମ, ପୁଣି ସ୍ୱତନ୍ତ୍ର । ଏକ ପ୍ରଗତିଶୀଳ ଓ ଅଗ୍ରଗାମୀ ମୂଲ୍ୟବୋଧର ଚରିତ୍ର ଭାବରେ ଆଧୁନିକ କାଳର କର୍ଣ୍ଣ ବା ସୂର୍ଯ୍ୟପ୍ରକାଶକୁ ଦେଖିବାକୁ ମିଳେ । ତା'ର ପରାହତ ଅସ୍ତିତ୍ୱ,ଜୀବନଯନ୍ତ୍ରଣା ପାଠକଙ୍କୁ ଶୋକାଭିଭୂତ କରେ । ତେଣୁ ନାଟ୍ୟକାର ସୂତ୍ରଧାର ମୁଖରେ କହିଛନ୍ତି, ଭାଗ୍ୟର ବିଡ଼ମ୍ବନା ମଧରେ ପୌରୁଷର ଅପମୃତ୍ୟୁ ଘଟିଲେ ବି କର୍ଣ୍ଣ ଜୀଇଁ ରହିଥାଏ ଯୁଗ ଯୁଗ ଧରି, ଶତାବ୍ଦୀ ଧରି । ବାସ୍ତବରେ ସେ ରକ୍ତମାଂସର ଶରୀର ନୁହେଁ ବରଂ ଏକ ମାନସିକତା,ଏହାହିଁ କର୍ଣ୍ଣ ଚରିତ୍ରର ବୈଶିଷ୍ଟ୍ୟ ।

ପାତ୍ରୋମୁଖୀ ଭାଷା ଓ ସଂଳାପ ନାଟକକୁ ଜୀବନ୍ତ କରେ । ସଂଳାପ ଯେତିକି ବାସ୍ତବଧର୍ମୀ, ଭାବଗର୍ଭକ ହୁଏ ତାହା ଦର୍ଶକଙ୍କ ଉପରେ ସେତିକି ପ୍ରଭାବ ପକାଏ । 'କର୍ଣ୍ଣ' ନାଟକର ସଂଳାପ ବେଶ୍ ସଂକ୍ଷିପ୍ତ ଓ ପ୍ରଭାବଶାଳୀ ପୁଣି ଅନେକାଂଶରେ ଟେଲିଗ୍ରାଫିକ୍ । ଏହାହିଁ ନାଟ୍ୟକାର ଡ. ଶତପଥୀ ନାଟ୍ୟ ପ୍ରତିଭାର ବିଶେଷତ୍ୱ । କେତେକ କ୍ଷେତ୍ରରେ ଏହି

ନାଟକର ସଂଳାପ ହୋଇଛି ପ୍ରତୀକଧର୍ମୀ । ମାନସିକ ଭାବାବେଗ ଓ ଜୀବନର ନାନାବିଧ ଅବସ୍ଥା 'କର୍ଣ୍ଣ' ନାଟକର ସଂଳାପରୁ ଜାଣିହୁଏ । ବିଶେଷକରି ସୂର୍ଯ୍ୟ ମୁଖରେ ନାଟ୍ୟକାର ଯେଉଁ ସଂଳାପ ଖଞ୍ଜି ଦେଇଛନ୍ତି, ତାହା ଦର୍ଶକର ପ୍ରାଣରେ ବିପ୍ଳବର ଉତ୍ତାପ ଯେପରି ସୃଷ୍ଟି କରେ ସେମିତି ତା ଚରିତ୍ର ପ୍ରତି ଗୋଟିଏ ମମତ୍ୱ ବୋଧ ବି ସୃଷ୍ଟି କରିଥାଏ ।

ଦ୍ୱନ୍ଦ୍ୱ ନାଟକର ଅପରିହାର୍ଯ୍ୟ ଉପାଦାନ । ଦ୍ୱନ୍ଦ୍ୱ ନଥିବା ନାଟକ ପ୍ରାଣହୀନ ମନେହୁଏ । ଏହି ଦ୍ୱନ୍ଦ୍ୱ ବଞ୍ଚିବା ସହ ମରଣର, ପ୍ରାପ୍ତି ସହିତ ଅପ୍ରାପ୍ତିର, ହୃଦୟ ସହିତ ମନର, ଜୀବନ ସହିତ ପରିବେଶର, ସମାଜ ସହିତ ବ୍ୟକ୍ତିର, ବାସ୍ତବତା ସହିତ ନୈତିକତାର, ମଣିଷର ପରିମିତ ଶକ୍ତି ସହ ଅନନ୍ତ ଆକାଙ୍‌କ୍ଷାର, ବାସ୍ତବତା ସହ ଅଦୃଶ୍ୟ ଶକ୍ତିର, ପୁଞ୍ଜିପତି କ୍ଷମତା ଲିପ୍‌ସୁ ସୁବିଧାବାଦୀ ସହ ଖଟିଖିଆ ସର୍ବହରାର ସଂଘର୍ଷ । ନିଜର ମାତୃତ୍ୱକୁ ସାବ୍ୟସ୍ତ କରିବାକୁ ବ୍ୟାକୁଳ ହୋଇ ପଡୁଥିବା କୁନ୍ତୀଙ୍କର ମାନସିକତା, ପାର୍ଥ ଓ କେଶବ ସହ ଦୁର୍ଯ୍ୟୋଧନ-ସୂର୍ଯ୍ୟଙ୍କର ମୁହାଁମୁହିଁ ହୋଇ ସେମାନଙ୍କ ଛଦ୍ମତାକୁ ଉନ୍ମୋଚନ କରିବାର ମାନସିକତା, କୃଷ୍ଣା-ସୂର୍ଯ୍ୟଙ୍କର ବିଫଳ ପ୍ରେମ, କୃଷ୍ଣା-ପାର୍ଥଙ୍କ ଦାମ୍ପତ୍ୟ କଳହ 'କର୍ଣ୍ଣ' ନାଟକର ଦ୍ୱନ୍ଦ୍ୱକୁ କରିଛି ତୀବ୍ରତର । ଫଳରେ ନାଟକ ବେଶ୍ ପ୍ରାଣଧର୍ମୀ ମନେ ହୋଇଛି ।

ଉତ୍କଣ୍ଠା ହିଁ ନାଟକର ମୁଖ୍ୟ ବୈଶିଷ୍ଟ୍ୟ । ଦର୍ଶକକୁ ପ୍ରଥମରୁ ଶେଷଯାଏଁ ଏହା ବାନ୍ଧି ରଖିଥାଏ । ପାର୍ଥ-କେଶବଙ୍କ ସହ ସୂର୍ଯ୍ୟର ବିବାଦ, କୃଷ୍ଣା-ସୂର୍ଯ୍ୟଙ୍କର ବିଫଳ ପ୍ରେମକାହାଣୀ, ଶେଷ ପର୍ଯ୍ୟନ୍ତ କୁନ୍ତୀଙ୍କର ଅସହାୟତା, ଶ୍ରେଣୀ ସଂଘର୍ଷ ଏହି ନାଟକର ଉତ୍କଣ୍ଠାକୁ ଜାବୁଡ଼ିଧରି ରଖିଛି । ତେବେ ତୃତୀୟ ଦୃଶ୍ୟରେ ଯଦି ନାଟ୍ୟକାର ସୂର୍ଯ୍ୟର ଜନ୍ମରହସ୍ୟକୁ ଉନ୍ମୋଚନ ନକରି ଶେଷ ପର୍ଯ୍ୟାୟରେ କରିଥାଆନ୍ତେ ତେବେ ଉତ୍କଣ୍ଠା ଆହୁରି ବଢ଼ି ଯାଇଥାନ୍ତା । ମୋଟ ଉପରେ କହିବାକୁ ଗଲେ ପ୍ରଥମରୁ ଶେଷଯାଏଁ ଦର୍ଶକଙ୍କୁ ବାନ୍ଧି ରଖିବାରେ ସମର୍ଥ ନାଟକ 'କର୍ଣ୍ଣ' ।

ନାଟକର ପ୍ରସ୍ତାବନାରେ ରହିଛି ପୌରାଣିକ ବାତାବରଣ, ଯୁଦ୍ଧବାଦ୍ୟର ଆଭାସ, ଦୁଇଟି ଜୋନ୍‌ର ପରିକଳ୍ପନା । ପୌରାଣିକ ପୃଷ୍ଠଭୂମିରୁ ନାଟକ ଆରମ୍ଭ ହୋଇଛି । ପ୍ରସ୍ତାବନା ଦୃଶ୍ୟରେ ଓ ପ୍ରଥମ ଦୃଶ୍ୟରେ ଏବଂ ଉପସଂହାରରେ ପ୍ରଥମ ଜୋନ୍‌ଟି ବ୍ୟବହାର ହୋଇଥିବା ବେଳେ ବାକି ୧୦ ଗୋଟି ଦୃଶ୍ୟ ଦ୍ୱିତୀୟ ଜୋନ୍‌ରେ ଅଭିନୀତ ହୋଇଛି । ଦ୍ୱିତୀୟ ଜୋନ୍‌ଟି ଫ୍ୟାକ୍ଟ୍ରୀ ଅଫିସ୍, ସୂର୍ଯ୍ୟର ଘର, ପାର୍ଥର ଡାକବଙ୍ଗଳା, ପାର୍ଥର ଘର, କାରଖାନା ପ୍ରଭୃତି ବିଭିନ୍ନ ପରିବେଶକୁ ଏକାଧାରରେ ନିୟନ୍ତ୍ରିତ କରିପାରିଛି । ବିଶେଷ କରି ଆଲୋକର ଭୂମିକା ମଧ୍ୟ ନାଟକଟିରେ ଗୁରୁତ୍ୱପୂର୍ଣ୍ଣ । ମଞ୍ଚର ପ୍ରଥମ ଜୋନ୍‌ରେ ଆଲୋକ ଆସିଲା ବେଳେ ଦ୍ୱିତୀୟ ଜୋନ୍‌କୁ ଅନ୍ଧାର ରଖିବା, ଦ୍ୱିତୀୟ ଜୋନ୍‌କୁ ଆଲୋକ ଆସି ଅଭିନୟ ହେଲାବେଳେ ପ୍ରଥମ ଜୋନ୍‌କୁ ଅନ୍ଧାର ରଖିବାର ପରିକଳ୍ପନା-ଏକ ସମତା ସୃଷ୍ଟି କରିଛି ନାଟକର ମଞ୍ଚ ମୂଲ୍ୟରେ ।

ସମୟ ବିବର୍ତ୍ତନରେ ଋତ, ମାସ, ଦିନ ବଦଳିଯାଏ । ମାତ୍ର ଏମିତି କିଛି ଚରିତ୍ର ରହିଯାଆନ୍ତି ଯେଉଁମାନେ ପୁରାଣରୁ ଆଧୁନିକ ଜୀବନର ସ୍ରୋତ ପର୍ଯ୍ୟନ୍ତ ଉଜ୍ଜୀବିତ ରହିଥାଆନ୍ତି । ଯେଉଁ ସମାଜରେ କୁନ୍ତୀମାନେ ନିଜର ମାତୃତ୍ୱକୁ ସାବ୍ୟସ୍ତ କରିପାରନ୍ତି ନାହିଁ, ସେଠାରେ ଅଗଣିତ କର୍ଣ୍ଣ ଜାରଜର ମୋହର ଭିତରେ ହୀନମନ୍ୟତାରେ ସଢ଼ି ସଢ଼ି ବଞ୍ଚିଥାନ୍ତି । ସବୁ ଯୋଗ୍ୟତା ଥିବା ସତ୍ତ୍ୱେ ସମାଜ ସେମାନଙ୍କ ସାମର୍ଥ୍ୟ ଉପଲବ୍ଧି କରିପାରେନା । 'କର୍ଣ୍ଣ' ପାର୍ଥର ଶରାଘାତରେ ମୃତ୍ୟୁବରଣ କଲେ ବି ବଞ୍ଚିଥାଏ ପ୍ରତି ମଣିଷର ହୃଦୟତନ୍ତ୍ରୀରେ । ଚକ୍ରୀର ଚକ୍ରାନ୍ତ, ନିୟତିର ଉପହାସ, ଜ୍ଞାତି ପରିଜନମାନଙ୍କ କଟାକ୍ଷ କେବେବି ନିଃଶେଷ କରିପାରିନାହିଁ ତାକୁ । ସେ ବଞ୍ଚିରହେ ମଣିଷର ପୁରୁଷକାରରେ, ବିଜୟର ଲାଲ୍‌ଟୀକା ପିନ୍ଧି ସେ ଆଗେଇଯାଏ ଦୁର୍ନିବାର ଗତିରେ ।

ସମୟ ଯେତେ ଗଡ଼ି ଚାଲୁନା କାହିଁକି; ପଥ ଓ ପୃଥିବୀ ଯେତେ ବଦଳିଯାଉନା କାହିଁକି 'କର୍ଣ୍ଣ' କିନ୍ତୁ ଥିବ ଉପେକ୍ଷିତ ଓ ନିର୍ଯ୍ୟାତିତର କୋମଳତନ୍ତ୍ରୀରେ । ସେଥିପାଇଁ ନାଟ୍ୟକାର ଉପସଂହାରରେ ସୂତ୍ରଧାର ମୁଖରେ କହିଛନ୍ତି; "ପୁରାଣ ଯୁଗରୁ ଇତିହାସ ପୁଣି ବିଭିନ୍ନ ସାମାଜିକ ପରିବେଶ ମଧ୍ୟରେ କର୍ଣ୍ଣମାନେ ଏମିତି ଆସନ୍ତି । ଉପେକ୍ଷିତ ହୋଇ ବଞ୍ଚନ୍ତି, ପୁଣି ପରିବେଶ ସହ ଲଢ଼ି ପ୍ରତିଷ୍ଠା ଖୋଜନ୍ତି, ଯୁଦ୍ଧରେ ପ୍ରାଣପାତ ବି କରନ୍ତି । ବରାବର ଚାଲିଥାଏ ପାର୍ଥ ସହ କର୍ଣ୍ଣର ସଂଘର୍ଷ ପୁଣି ଭୁଲ୍ ବୁଝାମଣା ।" ସମୟର ବିବର୍ତ୍ତନ ଧାରାରେ କର୍ଣ୍ଣ ବାସ୍ତବରେ ସୃଷ୍ଟି କରିପାରିଛି ନିଜର ଗୋଟିଏ ସ୍ୱତନ୍ତ୍ର ଆତ୍ମ ପରିଚିତି ।

ପୁରାଣର କଥାକୁ ନେଇ ନାଟ୍ୟକାର 'କର୍ଣ୍ଣ' ନାଟକକୁ ଆଧୁନିକ ଢଙ୍ଗରେ ଉପସ୍ଥାପନା କରିଛନ୍ତି । ମୁକ୍ତଧାରାର ଶୈଳୀ, ମହାକାବ୍ୟିକ ବାସ୍ତବତା, ନାରୀ ସଚେତନତା, ପରାହତ ଅସ୍ତିତ୍ୱର ମର୍ମଗାଥା, ସୁବିଧାବାଦୀ ଗାଣତାନ୍ତ୍ରିକ ବ୍ୟବସ୍ଥାର କଥା କହେ ନାଟକ 'କର୍ଣ୍ଣ' । ନାଟ୍ୟକାର ଡ. ଶତପଥୀ 'କର୍ଣ୍ଣ' ନାଟକରେ ପ୍ରତିପାଦନ କରିଛନ୍ତି ଯେ ମହାଭାରତର କର୍ଣ୍ଣଠାରୁ ଆଧୁନିକ ଯୁଗର କର୍ଣ୍ଣ ଆହୁରି ଅଧିକ ପରାହତ ଅସ୍ତିତ୍ୱ ନେଇ ବଞ୍ଚିଛି ପୁଣି ସମାଜର ତାଡ଼ନାରେ ତା'ପରି ଶହ ଶହ ଯୋଗ୍ୟ କର୍ଣ୍ଣମାନେ ହତଭାଗ୍ୟ ଭାବେ ଭୂମିରେ ଲୋଟିପଡୁଛନ୍ତି । ଆଧୁନିକ କର୍ଣ୍ଣର ଦ୍ୱନ୍ଦ୍ୱଶୀଳ ମାନସିକତାହିଁ କର୍ଣ୍ଣ ଚରିତ୍ରର ସବୁଠାରୁ ବଡ଼ ବିଶେଷତ୍ୱ । ଆଉ ଏକଥା ସତ ଯେ ବ୍ୟାସ, ସାରଳାଙ୍କ କର୍ଣ୍ଣଠାରୁ ନାଟ୍ୟକାର ବିଜୟ ଶତପଥୀଙ୍କ 'କର୍ଣ୍ଣ' ଏକ ସ୍ୱତନ୍ତ୍ର ପରିଚିତି ଓ ମାନସିକତା ନେଇ ସୃଷ୍ଟ । ସେ ଯେପରି ଏକ ମର୍ମସ୍ପର୍ଶୀ ଗୀତିକବିତା ଯାହା ଜୀବନ ଯନ୍ତ୍ରଣା ଓ ସମାଜ ତାଡ଼ନାର ମିଶ୍ର ରାଗିଣୀ ତୋଳେ । ଘୋଷଣା କରେ ମଧ୍ୟ ବିପ୍ଳବର ଇସ୍ତାହାର । ଆଧୁନିକ ଯୁଗର ନିର୍ଯ୍ୟାତିତ, ଉପେକ୍ଷିତ ପୁଣି ଯୋଗ୍ୟ ଓ ବିଜୟୀ ବ୍ୟକ୍ତିର ପ୍ରତୀକ 'କର୍ଣ୍ଣ' ।



# ସତ୍ୟନିଷ୍ଠ ମାନବାତ୍ମାର ଇସ୍ତାହାର : 'ଶୋଣିତ ସ୍ୱାକ୍ଷର'

ନାଟକ କେବଳ ମନୋରଂଜନର ମାଧ୍ୟମ ନୁହେଁ, ବରଂ ସମାଜ ପରିବର୍ତ୍ତନର ମାଧ୍ୟମ - ଏହା ନିଜ ନାଟକରେ ପ୍ରତିପାଦନ କରିଛନ୍ତି ନାଟ୍ୟକାର ବିଜୟ କୁମାର ଶତପଥୀ । ତାଙ୍କ ନାଟକ ଭିତରେ କେବଳ ସମାଜ ପରିବର୍ତ୍ତନର ସ୍ୱର ନୁହେଁ, ତା' ସହିତ ରହିଛି ଜୀବନର ନୈରାଶ୍ୟ, ହତାଶା, ବ୍ୟର୍ଥତା, ସମାଜର କଳୁଷିତ ବ୍ୟବସ୍ଥା, ସୁବିଧାବାଦୀଙ୍କ ଶୋଷଣ ମନୋବୃତ୍ତି, ସର୍ବହରାର ବିଦ୍ରୋହ, ମୂଲ୍ୟବୋଧର ବିପର୍ଯ୍ୟୟ ପୁଣି ମୂଲ୍ୟବୋଧକୁ ପ୍ରତିଷ୍ଠା କରିବାର ସଂକଳ୍ପ । ଏହି ମୂଲ୍ୟବୋଧର ବିପର୍ଯ୍ୟୟ ସହ ଯେଉଁ ସୋସିଆଲ୍ ଟ୍ରାଜେଡ଼ି ଆମ ସମାଜକୁ ଆକ୍ରାନ୍ତ କରିଛି, ତାହାର ଏକ ଉଚ୍ଚକୋଟୀର କଳାତ୍ମକ ନମୁନା ହେଉଛି ନାଟକ 'ଶୋଣିତ ସ୍ୱାକ୍ଷର' । ୧୯୯୮ ମସିହା 'ଝଙ୍କାର' ପତ୍ରିକାର ବିଷୁବ ସଂଖ୍ୟାରେ ପ୍ରକାଶ ପାଇଛି ଏହି ନାଟକ ଓ ୧୯୯୯ ମସିହାରେ ଏହା ଲାଭ କରିଥିଲା ବିଷୁବ ପୁରସ୍କାର । 'କଂସର ଆତ୍ମା' ଓ 'ଏଇ ଯେ ସୂର୍ଯ୍ୟ ଉଏଁ' ନାଟକରେ ସୋସିଆଲ୍ ଟ୍ରାଜେଡ଼ିର ଯେଉଁ କରୁଣ ଝଙ୍କାର ଶୁଣାଯାଇଥିଲା ତାହା ଆହୁରି ବିକଶିତ ହୋଇଛି 'ଶୋଣିତ ସ୍ୱାକ୍ଷର' ନାଟକରେ ।

'ଶୋଣିତ ସ୍ୱାକ୍ଷର' ନାଟକ ଭିତରେ ଆମେ ଦେଖିବା ମୂଲ୍ୟବୋଧକୁ ପ୍ରତିଷ୍ଠା ଦେବାର ସଂକଳ୍ପ ସହିତ ସାମୁଦାୟିକ ଦୁଃଖ ଯାହା ନାଟକର କଳାଗତ ଉତ୍କର୍ଷ ସହ ଗତିଶୀଳ ହୋଇଛି । କୌଣସି ଅଙ୍କ ଓ ଦୃଶ୍ୟ ବିଭାଜନ ନକରି ପ୍ରଥମରୁ ଶେଷ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ, ମୁକ୍ତଧାରାର ଶୈଳୀରେ ରଚିତ ହୋଇଛି ନାଟକ – 'ଶୋଣିତ ସ୍ୱାକ୍ଷର' । ଲୋକନାଟକର ଶୈଳୀରୁ ଆରମ୍ଭ ଏହି ନାଟକଟି ଦୁଇଟି ପର୍ଯ୍ୟାୟ ଦେଇ ଗତି କରିଛି । ପ୍ରଥମ ପର୍ଯ୍ୟାୟରେ ମିଥ୍‌ର ପୁନର୍ଗଠନ, ପ୍ରାଚୀନ ବିଶ୍ୱାସ, ଉତ୍କଳୀୟ ପରଂପରା ରହିଥିବା ବେଳେ ଦ୍ୱିତୀୟ ପର୍ଯ୍ୟାୟରେ ରହିଛି ପଚମାନ ସଂସ୍କୃତି, ଭ୍ରଷ୍ଟାଚାର ଓ ମୂଲ୍ୟବୋଧର ବିପର୍ଯ୍ୟୟ । ପ୍ରଥମରୁ ଶେଷ ପର୍ଯ୍ୟନ୍ତ ନାଟକଟି ଦର୍ଶକମାନଙ୍କର ମନକୁ ଛୁଇଁବାରେ ସଫଳ ହୋଇଛି । ନାଟକ ଭିତରେ ନାଟ୍ୟକାର ଡ. ଶତପଥୀଙ୍କର ସାମାଜିକ ଅଙ୍ଗୀକାରବଦ୍ଧତା ଓ ବିଦ୍ରୋହର ସ୍ୱରକୁ ଲକ୍ଷ୍ୟ କରାଯାଇପାରେ । ନାଟକର ପ୍ରଥମ ପର୍ଯ୍ୟାୟରେ ରହିଛି ଆମ ମାଟି, ପରଂପରା

ଜୀବନବୋଧ ଓ ସର୍ବୋପରି ଆଧୁନିକତା ନାଆଁରେ ଗଢ଼ା ନିୟମ କାନୁନ୍ ପ୍ରତି ରହିଥିବା ଆସ୍ଥାକୁ ଭାଙ୍ଗି ଦେଇ, ତଥାକଥିତ ଆଧୁନିକତା ବିରୋଧରେ, ସମୟର ପ୍ରାଣସ୍ପନ୍ଦନକୁ ଯଥାବିଧି ରୂପ ପ୍ରଦାନ କରିବାର ପ୍ରୟାସ । ନାଟକର ଆଙ୍ଗିକରେ ଲୋକ ଉପାଦାନର ପ୍ରୟୋଗ ତଥା ନଟ-ନଟୀଙ୍କର କାହାଣୀ ଉପସ୍ଥାପନା କୌଶଳ, ଓଡ଼ିଆ ପରଂପରାର ଲୋକପ୍ରିୟ ଖୁଲଣା ସୁନ୍ଦରୀ କାହାଣୀର ପୁନର୍ଗଠନ ତଥା ନିଶା ମଙ୍ଗଳବାର ଓଷା କଥାବସ୍ତୁର ପ୍ରୟୋଗ ନାଟକଟିକୁ ଚମତ୍କାର ଭାବେ ଗଢ଼ି ତୋଳିଛି । ସର୍ବଦା ମଞ୍ଚ ସଜ୍ଜୀକରଣରେ ନୂତନତା ଦେଖାଉଥିବା ବିଜୟ ଶତପଥୀଙ୍କ ଏହି ନାଟକର ମଞ୍ଚ ସଜ୍ଜାକୁ ମଧ୍ୟ ନିଆରା କରିଛନ୍ତି । ଦୁଇଗୋଟି ଲାଇଟ୍ ଜୋନ୍‌ରେ ବିଭକ୍ତ ମଞ୍ଚକୁ ନଟ-ନଟୀ ଆସି ଆରମ୍ଭ କରିଛନ୍ତି ତାଙ୍କର ନୃତ୍ୟ ଗୀତ । ଉତ୍କଳର ପୁରପଲ୍ଲୀରେ ଲୋକପ୍ରିୟତା ହାସଲ କରିଥିବା ଲୋକନୃତ୍ୟ ପତର ସଉରାକୁ ଆଙ୍ଗିକ ଭାବେ ଗ୍ରହଣ କରି ପୁଣି ସ୍ଥଳ ବିଶେଷରେ ପପୁଲାର ମ୍ୟୁଜିକର ସାହାଯ୍ୟ ନେଇ ନଟନଟୀଙ୍କ ମାଧ୍ୟମରେ ନାଟକ ଉପସ୍ଥାପନ କରିବାର ସୁନ୍ଦର କୌଶଳଟିଏ ଗ୍ରହଣ କରିଛନ୍ତି ନାଟ୍ୟକାର । ନଟନଟୀଙ୍କ କଥୋପକଥନ, ଅଭିନୟ ଚାତୁରୀ ଭିତରେ ସଂଗୀତର ଭୂମିକା ରହିଛି ସ୍ୱତନ୍ତ୍ର । ସଂଗୀତ ବିନା ଏ ନାଟକ ଉପସ୍ଥାପନର ପରିକଳ୍ପନା କରାଯାଇପାରେନା । ନାଟ୍ୟକାର ବିଜୟ ଶତପଥୀ ଏହି ନାଟକରେ ଯଥାର୍ଥ ଭାବରେ ଅନୁଭବ କରିଛନ୍ତି; ଯେଉଁ କବିତାରେ ନାଟକୀୟତା ନାହିଁ କିମ୍ବା ଯେଉଁ ନାଟକରେ କାବ୍ୟିକ ଗୁଣ ନାହିଁ, ତାହା ଆଦୌ ଉତ୍ତମ ନାଟକ ହୋଇପାରିବ ନାହିଁ । ତେଣୁ ଭଲକବିତାରେ ଯେମିତି ନାଟକୀୟତା ରହିବ, ସେମିତି ଭଲ ନାଟକରେ କାବ୍ୟିକଗୁଣ ମଧ୍ୟ ରହିବ । 'ଶୋଣିତ ସ୍ୱାକ୍ଷର' ନାଟକ ଭିତରେ ଏହାହିଁ ପ୍ରତିପାଦିତ ।

ନଟନଟୀଙ୍କର ଖୁଲଣାଚରିତ ବର୍ଣ୍ଣନା ଆରଂଭ ହେବା ମାତ୍ରେ ମଞ୍ଚରେ ପ୍ରବେଶ କରିଛନ୍ତି-ସୂତ୍ରଧର-ବୟସ୍ୟ ମୁକୁନ୍ଦ ଏବଂ ରାଜା ସୁଦର୍ଶନ । ଆଖିରେ ଅନ୍ଧପୁଟୁଳି ବାନ୍ଧି ମୁହଁ ସାମ୍ନାରେ ଦର୍ପଣ ରଖିଥିବା ରାଜା ସୁଦର୍ଶନକୁ ଦେଖି ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ । ପ୍ରକୃତରେ ଏହା ଏକ ରକମର ପ୍ରତୀକାତ୍ମକ ଉପସ୍ଥାପନା, ଗ୍ରୀକ୍ ମାଇଥୋଲୋଜିରେ ଥିବା ରାଜା ନାରସିସ୍‌ଙ୍କ ମିଥ୍‌କୁ ଉପାଦାନ ଭାବେ ଗ୍ରହଣ କରିଛନ୍ତି ଏଠାରେ ନାଟ୍ୟକାର । ସର୍ବଦା ଆଖିରେ ପଟିବାନ୍ଧି ନିଜକୁ ସୁନ୍ଦର ମଣୁଥିବା, ନିଜର କାର୍ଯ୍ୟଧାରାକୁ ଠିକ୍ ବୋଲି ଦାବି କରୁଥିବା ରାଜା ସୁଦର୍ଶନଙ୍କ ପ୍ରକୃତି ବଡ଼ ଅଦ୍‌ଭୂତ । ତାଙ୍କର ଏଭଳି ଅଦ୍‌ଭୂତ ମନସ୍ତାତ୍ତ୍ୱିକ ଦିଗର କଳାତ୍ମକ ଓ ପ୍ରତୀକାତ୍ମକ ଉପସ୍ଥାପନ ସୂଚାଇ ଦିଏ ରାଜ୍ୟର ଅନ୍ଧଶାସନ ବ୍ୟବସ୍ଥା ବିଷୟରେ । କେବଳ ଅରାଜକ ଶାସନ ନୁହେଁ, ମନ୍ତ୍ରୀଠାରୁ ରକ୍ଷୀ ପର୍ଯ୍ୟନ୍ତ ରାଜକର୍ମଚାରୀ ସମସ୍ତେ ଦୁର୍ନୀତିରେ ଲିପ୍ତ । ସାଧାରଣ ଜନତାଙ୍କର ନ୍ୟାଯ୍ୟ ଦାବିକୁ ହାସଲକରିବାର ଉଦ୍ଦେଶ୍ୟକୁ ଧୂଳିସାତ୍ କରିଛନ୍ତି ରାଜା । ସେ ଏଭଳି ଜଣେ ରାଜା ଯାହାଙ୍କର ସିଂହାସନ ବନ୍ଧା ପଡ଼ିଛି

ଅନ୍ୟ ଦେଶରେ । ଏଇଥିରୁ ଅନୁମାନ କରାଯାଇପାରେ ଧୂମାନ୍ତ ରାଜ୍ୟର ଶାସନ କିପରି ଚାଲିଥିବ ? ପ୍ରଥମ ପର୍ଯ୍ୟାୟରେ କେବଳ ଶାସକଙ୍କର ଅପରିଣାମଦର୍ଶିତା, ଦୂରଦୃଷ୍ଟିହୀନତା ନାହିଁ ବରଂ ସୁଦର୍ଶନଙ୍କର ଅନ୍ଧପୁଟୁଳି ଖୋଲି ବାସ୍ତବତାକୁ ଅନ୍ବେଷଣ କରିବାର ଆଗ୍ରହ ରହିଛି । ତେବେ ପ୍ରବୃତ୍ତି ଓ ବିବେକ ଭିତରେ ରାଜାଙ୍କର ମନର ଯେଉଁ ଅନ୍ଧାର ଆଲୁଅର ଖେଳ ଲାଗିଛି ତାହା କେବଳ ନାଟ୍ୟକାରଙ୍କ ଚରିତ୍ର ଚିତ୍ରଣର କୌଶଳ । ଏହି ପର୍ଯ୍ୟାୟରେ ମାନବିକ ମୁଲ୍ୟବୋଧ ଯେପରି ବିପର୍ଯ୍ୟସ୍ତ ହୋଇ ପଡ଼ିଛି, ତାହାର କରୁଣ ଚିତ୍ର ପାଠକ-ଦର୍ଶକକୁ ଶୋକାଭିଭୂତ କରେ । ସତ୍ୟନିଷ୍ଠ ଶିଳ୍ପୀ ଉପରେ ଅତ୍ୟାଚାର, ତା'ର ପତ୍ନୀ ପ୍ରତି ପାପଲାଳସା, ସୁଦର୍ଶନଙ୍କ ଚରିତ୍ରର ଅଧଃପତନକୁ ସୂଚାଇଦିଏ । ଏହି ପର୍ଯ୍ୟାୟରେ କେତୋଟି ଅଲୌକିକତାକୁ ଆଶ୍ରୟ କରିଛନ୍ତି ନାଟ୍ୟକାର, ସେଗୁଡ଼ିକ ହେଲା; ପ୍ରଥମତଃ ଗଛ କଥା କହିବା, ପଥର ମୂର୍ତ୍ତି ମଣିଷ ପରିହେବା, ଦ୍ୱିତୀୟରେ ପଦ୍ମଫୁଲ ଉପରେ ଲକ୍ଷ୍ମୀଙ୍କର ସମୁଦ୍ର ମଝିରେ ଅବସ୍ଥାନ କରିବା ପ୍ରଭୃତି । ନାଟକରେ ପ୍ରୟୋଗ ହୋଇଥିବା ମ୍ୟାଜିକ୍ ରିଅଲିଜିମ୍ ସଂପର୍କରେ ଏହା ଦର୍ଶକ ଓ ପାଠକମାନଙ୍କୁ ଧାରଣା ଦିଏ । ଏହା ପରୋକ୍ଷରେ ସୂଚାଇଦିଏ ମଣିଷର ସତ୍ୟନିଷ୍ଠତା ପ୍ରତି ଅଙ୍ଗୀକାରବଦ୍ଧତା । ଏହାର ଅଭାବ ଓ ଅପରିଣାମଦର୍ଶିତାର ଫଳ ମଣିଷକୁ ନିଃଶେଷ କରିଦିଏ । ଶିଳ୍ପୀ ଚିତ୍ରସେନକୁ ବନ୍ଦୀ କରିବା, ତା'ର ପତ୍ନୀ ଚନ୍ଦ୍ରାବତୀକୁ ଉପଭୋଗ କରିବାର ପ୍ରବୃତ୍ତି, ଘାଗରା ରାଜ୍ୟର ସୌଦାଗର ଧନେଶ୍ୱରର ସତ୍ୟନିଷ୍ଠତାକୁ ଅସ୍ୱୀକାର କରି କାରାଗାରରେ ନକ୍ଷେପ କରିବା ଭଳି ଅଦୂରଦୃଷ୍ଟି ବ୍ୟଭିଚାରୀ ଶାସକର ବ୍ୟଭିଚାରକୁ ଆଙ୍ଗୁଳି ନିର୍ଦ୍ଦେଶ କରିଛି । ପ୍ରଥମ ପର୍ଯ୍ୟାୟରେ ଲୋକପ୍ରିୟ ଖୁଲଣାସୁନ୍ଦରୀ ମିଥ୍ର ପୁନର୍ଗଠନ ସହ ନାଟକ ଭିତରେ ତା'କୁ ଆଣି ମୂଲ୍ୟବୋଧର ପ୍ରତିଷ୍ଠା କରିବା ସହ ସତ୍ୟନିଷ୍ଠତାର ଜୟଗାନ କରିବାକୁ କୁଣ୍ଠାବୋଧ କରିନାହାନ୍ତି ନାଟ୍ୟକାର । ଓଡ଼ିଶାର ଗାଆଁମାନଙ୍କରେ ପାଳିତ ନିଶାମଙ୍ଗଳବାର ଓଷା ତଥା ଖୁଲଣା ସୁନ୍ଦରୀ ଉପାଖ୍ୟାନର ଶ୍ରୀଧର ଚରିତ୍ର ଧୂମାନ୍ତ ରାଜ୍ୟକୁ ନିଜ ପିତାଙ୍କ ଅନ୍ବେଷଣରେ ଆସିବା ସହିତ ରାଜତନ୍ତ୍ରର ବିଲୋପ ହୋଇଛି । ରାଜାଙ୍କର ହୃଦୟରେ ପରିବର୍ତ୍ତନ, ରାଜକର୍ମଚାରୀଙ୍କର ମାନସିକ ପରିବର୍ତ୍ତନ ସଙ୍ଗକୁ ଅରାଜକ ବ୍ୟବସ୍ଥାର ଅବସାନ ସହ ପ୍ରତିଷ୍ଠା ହୋଇଛି ମୂଲ୍ୟବୋଧର । ଶ୍ରୀଧର ଏଠାରେ ପାଲଟିଛି ମୁକ୍ତିର ଦୂତ । ସେଥିପାଇଁ ମୁକୁନ୍ଦ ଚରିତ୍ର ମାଧ୍ୟମରେ ଡ.ଶତପଥୀ ଶ୍ରୀଧର ଉଦ୍ଦେଶ୍ୟରେ ଏ ଚମତ୍କାର ସଂଳାପଟି ଖଞ୍ଜି ଦେଇଛନ୍ତି । ଯଥା; "ତୁମେ କେବଳ ତୁମ ପିତାଙ୍କର ଉଦ୍ଧାରକର୍ତ୍ତା ହେବନି । ଅନ୍ୟାୟର ପଥରୋଧ କରି କାରାଗାରରେ ସଡୁଥିବା ମଣିଷମାନଙ୍କର ପାଇଁ ତୁମେ ଯଥାର୍ଥରେ ଆଣିଦେବ ମଙ୍ଗଳ ଆଉ ଶ୍ରୀର ସଂଧାନ ।"

ସାଧାରଣ ଜନତାର ସ୍ୱାର୍ଥ ପାଇଁ, ସତ୍ୟନିଷ୍ଠା ପାଇଁ ଶିଳ୍ପୀ ଚିତ୍ରସେନଙ୍କୁ ହତ୍ୟାକରାଯାଏ, ତାଙ୍କର ପତ୍ନୀ ଚନ୍ଦ୍ରାବତୀ ନିଜର ସତୀତ୍ୱକୁ ବଞ୍ଚାଇବା ପାଇଁ ଆତ୍ମହତ୍ୟା କରିବା ଉଭୟ

ଦର୍ଶକ-ପାଠକଙ୍କ ଆଖିରେ ଲୁହ ଆଣିଦିଏ । ଚିତ୍ରସେନର ମୃତ୍ୟୁବେଳର କାରଣ କିନ୍ତୁ ମନକୁ ଦୋହଲାଇଦିଏ । ସତ୍ୟ ପ୍ରତି ଅଙ୍ଗୀକାରବଦ୍ଧ ହେବାର ରକ୍ତ ସ୍ୱାକ୍ଷର ରଚି ମୃତ୍ୟୁବରଣ କରନ୍ତି ଚିତ୍ରସେନ । ଶ୍ରୀଧର ଆସିବା ସହ ରାଜା ସୁଦର୍ଶନଙ୍କ ଆଖିରୁ ଖସିପଡ଼େ ଅନ୍ଧପଟି, ମୁକ୍ତ ହୁଅନ୍ତି ତାଙ୍କ ପିତା ଧନେଶ୍ୱର, ଗଣତନ୍ତ୍ରର ହୁଏ ପ୍ରତିଷ୍ଠା । ଦର୍ପଣ ତଳେ ପଡ଼ି ଭାଂଗିବାର ପ୍ରତୀକାତ୍ମକ ଉପସ୍ଥାପନା ସହ ଅବସାନ ଘଟେ ଅନ୍ଧାରି ଅମୁହାଁ ଶାସନର । ଏ ଯେଉଁ ମୂଲ୍ୟବୋଧ, ସତ୍ୟର ପ୍ରତିଷ୍ଠା ହୁଏ, ତା' ପଛରେ କିନ୍ତୁ ଥାଏ ଚନ୍ଦ୍ରା-ଚିତ୍ରସେନଙ୍କ ରକ୍ତର ହସ୍ତାକ୍ଷର-ବଳିଦାନ ।

ନାଟକର ପ୍ରଥମ ପର୍ଯ୍ୟାୟରେ ରହିଛି ରାଜାରାଜୁଡ଼ାଙ୍କ ଶାସନ ବ୍ୟବସ୍ଥାର ଚିତ୍ର । ଝୁଲଣାସୁନ୍ଦରୀ ଉପାଖ୍ୟାନର ଶ୍ରୀଧର ଚରିତ୍ର । ସେ ସତ୍ୟ, ଧର୍ମ, ନ୍ୟାୟ ଓ ମୂଲ୍ୟବୋଧର ପ୍ରତିଷ୍ଠା ସହ ପରିବର୍ତ୍ତନର ବାର୍ତ୍ତା ଆଣି ଆସିଥିଲା । କିନ୍ତୁ ନାଟକର ଦ୍ୱିତୀୟ ପର୍ଯ୍ୟାୟ ଭିନ୍ନ । ଏଠି ପୁରାଣର ଚରିତ୍ର କିମ୍ବା ରାଜା-ରାଜୁଡ଼ା ଅମଳର ଚରିତ୍ର କିମ୍ବା କଥାବସ୍ତୁ ନାହିଁ । ରାଜା ସୁଦର୍ଶନଙ୍କଠାରୁ ଶ୍ରୀଧର ପର୍ଯ୍ୟନ୍ତ ସମସ୍ତେ ଅଧୁନିକ ଜୀବନର ବାସ୍ତବ ଚରିତ୍ର ପାଲଟି ଯାଇଛନ୍ତି । ପ୍ରଥମ ପର୍ଯ୍ୟାୟର ବୟସ୍ୟ-ସୂତ୍ରଧର ମୁକୁନ୍ଦ ମଧ୍ୟ ଏହି ପର୍ଯ୍ୟାୟରେ ବିପରୀତ ମାନସିକତାରେ ବଞ୍ଚୁଥିବା ଚରିତ୍ରଟିଏ ପାଲଟିଛି । ଦ୍ୱିତୀୟ ପର୍ଯ୍ୟାୟରେ ପୁଞ୍ଜିପତି ପ୍ରିୟଦର୍ଶନର ଶୋଷଣ ମନୋବୃତ୍ତି, ଶ୍ରମିକମାଲିକ ଲଢ଼େଇ, ସାଧାରଣ ଜନତାର ହକ୍ ପାଇବାର ସଂଘର୍ଷ, ନିମ୍ନସ୍ତରର ଲୋକ (ଗୁଣ୍ଡା-ଅସାମାଜିକ ବ୍ୟକ୍ତି)ମାନଙ୍କର ରାଜନୀତିକ ସୁବିଧାର ଅପବ୍ୟବହାର, ସତ୍ୟକୁ ଦମନ କରିବାର ଚକ୍ରାନ୍ତ, ବିପ୍ଳବୀ ଚନ୍ଦ୍ରିକାକୁ ବଳାତ୍କାର କରିବା, ସାଧାରଣ ସର୍ବହରାର ତ୍ରାହି ତ୍ରାହି ଚିତ୍କାର ଏବଂ ଭ୍ରଷ୍ଟାଚାର ବିରୋଧରେ ସଂଗ୍ରାମ କରି ଶୋଷକର ଚକ୍ରାନ୍ତରେ ଶ୍ରୀଧର ନାଟକୀୟ ଭାବେ ମୃତ୍ୟୁବରଣ କରିବା ଏକ ବୃହତ୍ତର ଟ୍ରାଜିକ୍ ପରିବେଶ ସୃଷ୍ଟି କରିଛି । ତଥାପି ଶ୍ରୀଧରର ଆଗମନ ଅପେକ୍ଷାରେ ଅଛନ୍ତି ତା'ର ପ୍ରିୟଜନ ତା' ଆସିବା ଭିତରେ ରହିଛି ଜାଗରଣର ବା ସମ୍ଭାବନାର ସୂଚନା । ସେଥିପାଇଁ ମୁକୁନ୍ଦ କହିଛି ।

ମୁକୁନ୍ଦ: ଗୁଳିର ଜବାବ୍ ଗୁଳିରେ ଦିଅ । ମଥାପାତି କଷଣ ସହିବାର ଯୁଗ ଆଉ ନାହିଁ । ଆଗେଇଚାଲ ବନ୍ଧୁ, ମୁଁ ତୁମ ସହିତ ଅଛି । ବସ୍ତିର ଶହଶହ ଭୋକିଲା ମଣିଷ ବି ରହିବେ ଆମ ସାଙ୍ଗରେ । କାରଣ ଶ୍ରୀଧର ଫେରିଆସିବ... ନୂଆ ଯୁଗର... ନୂଆ ଜୀବନର ବାର୍ତ୍ତା ନେଇସେ ଫେରିବ । (ପୃ-୧୧୬)

ଏବେ ନାଟକର ଚରିତ୍ରମାନଙ୍କ ସଂପର୍କରେ କିଞ୍ଚିତ ଆଲୋଚନା କରାଯାଇପାରେ । ନାଟକର ପ୍ରଥମ ପର୍ଯ୍ୟାୟରେ ନଅଗୋଟି ଚରିତ୍ରକୁ ଆମେ ମଞ୍ଚ ଉପରେ ଭେଟିଥାଉ । ରାଜା ସୁଦର୍ଶନ ବୟସ୍ୟ ମୁକୁନ୍ଦ, ମନ୍ତ୍ରୀ ଗୁଣନିଧି ସେନାପତି ଅରିଦମନ ସାଧବ ଧନେଶ୍ୱର,

ଶିଳ୍ପୀଚିତ୍ରସେନ, ତାର ପତ୍ନୀ ଚନ୍ଦ୍ରବତୀ, ରକ୍ଷୀ ଓ ଶ୍ରୀଧର ପ୍ରମୁଖ ପ୍ରଥମ ପର୍ଯ୍ୟାୟର ଚରିତ୍ର ଭାବେ ନିଜ ଭୂମିକାକୁ ନିର୍ବାହ କରିଛନ୍ତି । ସବୁଭିତରେ କିନ୍ତୁ ମୁକୁନ୍ଦ ଚରିତ୍ରର ଉପଲବ୍ଧି ହୋଇଛି ଗଭୀର, ଯିଏ ସତକୁ ସତ ମିଛକୁ ମିଛ କହିବାର ସାହସ ରଖିଛି । ରାଜା ସୁଦର୍ଶନଙ୍କ ପରି ନାର୍‌ସିସ୍‌ଷ୍ଟକୁ ବୁଝିବା ପାଇଁ ତା'ର ସାମର୍ଥ୍ୟ ରହିଛି । ମାତ୍ର ଆଖିର ଅନ୍ଧ ଯଟି ଖୋଲିବାକୁ ସେ ଅସମର୍ଥ ହୋଇଛି । ଦୁଇଟି ଭିନ୍ନ ମାନସିକତା ତଥା ମନ ଓ ବିବେକର ଦ୍ୱନ୍ଦ୍ୱ ଭିତରେ ତା ଚରିତ୍ରର ଚାରିତ୍ରିକ ମହତ୍ତ୍ୱଟି ଉକୁଟି ଉଠିଛି । ମନ୍ତ୍ରୀ, ସେନାପତି, ରକ୍ଷୀ ଏମାନେ କେବଳ କ୍ଷମତାର ଅପବ୍ୟବହାର କରୁଥିବା ରାଜାଜ୍ଞାକୁ ମାନି ନେଉଥିବା ନିଜର ବିବେକକୁ ବିକି ଦେଇଥିବା ଦୂରଦୃଷ୍ଟିହୀନ ଚରିତ୍ର ହୋଇ ରହିଛନ୍ତି । ସୌଦାଗର ଧନେଶ୍ୱର, ଶିଳ୍ପୀଚିତ୍ରସେନ ତା'ର ପତ୍ନୀ ଚନ୍ଦ୍ରାବତୀ ସତ୍ୟନିଷ୍ଠତା ପାଇଁ ଅନ୍ୟାୟର ଶିକାର ହୋଇ ମୂଲ୍ୟବୋଧକୁ ବଞ୍ଚାଇବା ଉଦ୍ଦେଶ୍ୟରେ ନିଜକୁ ତିଳତିଳକରି ଜାଳି ଦେଇଛନ୍ତି । ସେଥିପାଇଁ ଆଗାମୀ ପିଢ଼ି ମନରେ ମୂଲ୍ୟବୋଧକୁ ଉଜ୍ଜୀବିତ ରଖିବା ଲାଗି ରକ୍ତର ହସ୍ତାକ୍ଷର ଆଙ୍କି ଦେଇଛନ୍ତି ଶିଳ୍ପୀ ଚିତ୍ରସେନ । ଶ୍ରୀଧର ଚରିତ୍ର କିନ୍ତୁ ସବୁ ଭ୍ରଷ୍ଟାଚାରକୁ ବିଲୋପକରି ମୂଲ୍ୟବୋଧ, ସତ୍ୟର ପ୍ରତିଷ୍ଠା ପାଇଁ ଅଙ୍ଗୀକାରବଦ୍ଧ ହୋଇପଡ଼ିଛି । ମୋଟ ଉପରେ ପ୍ରଥମ ପର୍ଯ୍ୟାୟରେ ରାଜାଙ୍କର ହୃଦୟ ପରିବର୍ତ୍ତନ ସହ ରାଜତନ୍ତ୍ରର ଅବସାନ ଘଟି ଗଣତନ୍ତ୍ରର ଜୟଗାନ ହୋଇଛି ।

ଦ୍ୱିତୀୟ ପର୍ଯ୍ୟାୟରେ କାଳଚକ୍ରର ଘୂର୍ଣ୍ଣନ ଅନୁସାରେ ଯଥାକ୍ରମେ ସୁଦର୍ଶନ-ପୁଞ୍ଜିପତି ପ୍ରିୟଦର୍ଶନ, ମନ୍ତ୍ରୀ-ମ୍ୟାନେଜର ଗଣନାଥ, ସେନାପତି-ଗୁଣ୍ଡା ଗ୍ୟାଙ୍ଗର ଲିଡ଼ର, ରକ୍ଷୀ-ଗ୍ୟାଙ୍ଗଲିଡ଼ରର ସହଯୋଗୀ, ଧନେଶ୍ୱର-ସତ୍ୟନିଷ୍ଠ ଧନଞ୍ଜୟ, ଶିଳ୍ପୀ ଚିତ୍ରସେନ-ବିପ୍ଳବୀ ଚିତ୍ରାନନ୍ଦ, ଚନ୍ଦ୍ରା ତା'ର ସହକର୍ମୀଣୀ ଚନ୍ଦ୍ରିକା ଭାବରେ ଦେଖାଦେଇଛନ୍ତି । ପୂର୍ବ ପର୍ଯ୍ୟାୟ ଭଳି ମୁକୁନ୍ଦ ମଧ୍ୟ ସତ୍ୟପ୍ରତି ଦାୟବଦ୍ଧ ହୋଇରହିଛି, ତା ଚରିତ୍ରରେ ପରିବର୍ତ୍ତନ ଆସିନାହିଁ । ଶ୍ରୀଧରର ଆସିବାକୁ ନେଇ ସେ ଆଶାବାଦୀ ହେବା ସହ ଧନଞ୍ଜୟ ହାତରେ ପିସ୍ତଲ ଧରେଇ ଶିଳ୍ପପତିର ସାମ୍ରାଜ୍ୟକୁ ଧ୍ୱଂସ କରିଦେବାକୁ ପ୍ରୋତ୍ସାହନ ଯୋଗାଇ ଦେଇଛି । ତା' ଭିତରେ ରହିଛି, ସାମ୍ୟବାଦୀ ସମାଜ ଗଠନ କରି ପୁଞ୍ଜିପତିକୁ ନିଶ୍ଚିହ୍ନ କରିଦେବାର ସଂକଳ୍ପ । ପ୍ରିୟଦର୍ଶନ, ଅମିନଦା ପ୍ରଭୃତିଙ୍କର ପାଶବିକ ଲାଳସା ମଣିଷ ପଣିଆର ବିଲୋପକୁ ସୂଚାଇଦିଏ । ବିପ୍ଳବୀ ଚିତ୍ରାନନ୍ଦ ଓ ଚନ୍ଦ୍ରିକା ସର୍ବହରାର ଦାବିଲାଗି ପୁଞ୍ଜିପତି ବିରୋଧରେ ଲଢ଼ିବାକୁଯାଇ ପରାହତ ହୋଇପଡ଼ନ୍ତି । ଚିତ୍ରାନନ୍ଦ ବୋମା ବିସ୍ଫୋରଣରେ ମୃତ୍ୟୁବରଣ କରିବା ସହ ଛାଡ଼ିଯାଏ ରକ୍ତର ସ୍ୱାକ୍ଷର, ଏପଟେ ଚନ୍ଦ୍ରିକା ବଳାତ୍କାରର ଶିକାର ହୋଇ କରୁଣ ଭାବେ ମୃତ୍ୟୁବରଣ କରେ । ଶ୍ରୀଧର ମଧ୍ୟବିତ୍ତ ସର୍ବହରା ଶ୍ରେଣୀ ପାଇଁ ଲଢ଼େଇ କରି ମୃତ୍ୟୁବରଣ କରେ ପୁଞ୍ଜିପତିର ଚକ୍ରାନ୍ତରେ । ଦ୍ୱିତୀୟ ପର୍ଯ୍ୟାୟରେ ସେ ମଞ୍ଚକୁ ଆସିନଥିଲେ ମଧ୍ୟ ତା'ର ଆସିବାର ପ୍ରତୀକ୍ଷାରେ ସଂଭାବନାର, ପରିବର୍ତ୍ତନର ସୂଚନାରେ ନାଟକର ପରିସମାପ୍ତି ହୁଏ । ଧନଞ୍ଜୟ କିନ୍ତୁ

ପୁତ୍ରହରାହୋଇ କୁରୁକ୍ଷେତ୍ରର ଭୀଷ୍ମ ପରି ଲହୁଲୁହାଣ ହୋଇ ଚାଲିଥାଏ । ମୁକୁନ୍ଦ ଚରିତ୍ର ମାଧମରେ ନାଟ୍ୟକାର ଧନଞ୍ଜୟ ଭିତ୍ରରେ ଆଣିଦେଇଛନ୍ତି ବିଦ୍ରୋହର ସ୍ଫୁଲିଙ୍ଗ । ସର୍ବହରା, ସାଧାରଣ ମଣିଷ କେବଳ ଅନ୍ୟାୟ ସହେ ନାହିଁ ବରଂ ପ୍ରତିବାଦ କରିବାକୁ ଯାଇ ସେ ଗୁଳିର ଜବାବ୍ ଗୁଳିରେ ଦେଇପାରେ, ଏହାହିଁ ଧନଞ୍ଜୟ ଚରିତ୍ର ଭିତରେ ଦେଖାଇ ଦେଇଛନ୍ତି ନାଟ୍ୟକାର ଡ. ଶତପଥୀ । ପ୍ରକୃତରେ କହିବାକୁ ଗଲେ ଯେଉଁଠି ନାରକୀୟ ଚରିତ୍ରର ପରିବର୍ତ୍ତନ ଆସେ, ସେଠାରେ ସେ ଅସୁରର ଖୋଳପାରୁ ମୁକ୍ତହୋଇ ବସେ ଦେବତ୍ୱର ଆସନରେ, ଯେଉଁଠି ଅସୁରିକ ସତ୍ତାର ମାତ୍ରା ବୃଦ୍ଧିପାଏ, ସେଠାରେ ସେ ଚରିତ୍ରର ପତନ ଅପରିହାର୍ଯ୍ୟ ହୋଇପଡ଼େ । ଏହାହିଁ ପ୍ରତିପାଦନ କରିଛନ୍ତି ବିଜୟ ଶତପଥୀ 'ଶୋଣିତ ସ୍ୱାକ୍ଷର'ରେ ।

ଏହି ନାଟକରେ ବ୍ୟବହୃତ ମଞ୍ଚ ବିଷୟରେ କେତେକ ସୂଚନା ଦିଆଯାଇପାରେ । ଏହି ନାଟକଟି ଯେପରି ମୁକ୍ତ ମଞ୍ଚରେ ହେବାର ସାମର୍ଥ୍ୟ ରଖିଛି, ସେପରି ମଞ୍ଚକୁ ଦୁଇଟି ଆଲୋକ ଜୋନ୍‌ରେ ବିଭକ୍ତ କରି ପ୍ରସେନିୟମ ମଞ୍ଚରେ ନାଟକ ପରିବେଷଣ କରିବାରେ ମଧ୍ୟ କୌଣସି ଅସୁବିଧା ନାହିଁ । ପ୍ରଥମ ପର୍ଯ୍ୟାୟରେ ଯେତେବେଳେ ନଟନଟୀ ପ୍ରଥମ ଜୋନ୍‌ରେ ନୃତ୍ୟ ପରିବେଷଣ କରିଛନ୍ତି ସେତେବେଳେ ଦ୍ୱିତୀୟ ଜୋନ୍ ହୋଇଛି ଅନ୍ଧାର । ପୁନଶ୍ଚ ସେମାନେ ମଞ୍ଚରୁ ପ୍ରସ୍ଥାନ କରିବା ପରେ ଦ୍ୱିତୀୟ ଜୋନ୍‌ରେ ଆଲୋକ ଆସିବା ସହ ମୁକୁନ୍ଦ ଏବଂ ରାଜା ସୁଦର୍ଶନ ପ୍ରବେଶ କରିଛନ୍ତି । ଏହିପରି ଉଭୟ ପର୍ଯ୍ୟାୟର ଚରିତ୍ରମାନେ ପରିବେଶ ଓ ଅବସ୍ଥା ଅନୁସାରେ ପ୍ରଥମ ଓ ଦ୍ୱିତୀୟ ଜୋନ୍‌ରେ ନିଜର ଅଭିନୟ ପ୍ରଦର୍ଶନ କରିଛନ୍ତି । ଏହି ନାଟକରେ ତେଣୁ ଆଲୋକର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ବୋଲି କହିବାରେ ଆପତ୍ତି ନାହିଁ ।

ନାଟକର ଉପସ୍ଥାପନ ରୀତି କିନ୍ତୁ ବେଶ୍ ସରଳ । ଭାବବସ୍ତୁ ଓ ଉଦ୍ଦେଶ୍ୟ ସାମାନ୍ୟ ଜଟିଳ ମନେ ହେଉଥିଲେ ହେଁ ଉପସ୍ଥାପନା କରିବାର ତରିକାଟି ବିଜୟ କୁମାର ଶତପଥୀଙ୍କ ନାଟ୍ୟଶିଳ୍ପର ଶ୍ରେଷ୍ଠ ନିଦର୍ଶନ । ନଟ-ନଟୀଙ୍କ ମାଧମରେ ନାଟକ ଉପସ୍ଥାପନ କରିବା, ସୂତ୍ରଧର-ବୟସ୍ୟ ଚରିତ୍ରକୁ ନାଟକର ବିଷୟବସ୍ତୁର କେନ୍ଦ୍ରରେ ରଖିବା ନାଟ୍ୟକାରଙ୍କ ଚିନ୍ତାଧାରର ବ୍ୟାପକତାର ପ୍ରମାଣ କରେ । ଏଥିସହିତ ନିଶାମଙ୍ଗଳବାର ଓଷା/ଖୁଲଣା ସୁନ୍ଦରୀ ମିଥ୍‌କୁ ଆଣି ଶ୍ରୀଧର ଚରିତ୍ର ମାଧମରେ ସତ୍ୟ ଓ ମୂଲ୍ୟବୋଧର ପ୍ରତିଷ୍ଠା କରିବା, ନାର୍‌ସିସ୍ ମିଥ୍‌କୁ ଆଣି ପ୍ରତୀକାତ୍ମକ ଢଙ୍ଗରେ ସୁଦର୍ଶନଙ୍କ ମଧରେ ଦେଖାଇବା ବିଜୟ କୁମାର ଶତପଥୀଙ୍କ ଉପସ୍ଥାପନର ସ୍ୱାତନ୍ତ୍ର୍ୟକୁ ସୂଚାଇଥାଏ ।

ନାଟକର ଆବେଦନ ମଧ୍ୟରେ ନିହିତ ସମାଜ ଜୀବନର ଅନୁଭବ । ଶ୍ରୀଧର-ଚନ୍ଦ୍ରିକା-ଚିତ୍ରାନନ୍ଦର ମୃତ୍ୟୁ, ସାଧାରଣ ଜନତା ହକ୍‌ପାଇ ଲଢ଼େଇ କରି ପୁଞ୍ଜିପତିର ଚକ୍ରାନ୍ତରେ

ବିଫଳ ହେବାର ଦୁଃଖ ଆଉ ବ୍ୟକ୍ତିଗତ ଦୁଃଖ ନହୋଇ ସାମୁଦାୟିକ ଦୁଃଖରେ ପରିଣତ ହୁଏ । ଅନ୍ୟପକ୍ଷରେ ଭୁଷୁଡ଼ି ପଡ଼ିଥିବା ମୂଲ୍ୟବୋଧର ଉଦ୍ଧାର ପାଇଁ ଜନତାର କଣ୍ଠରୋଧକୁ ମୁକ୍ତ କରିବା ପାଇଁ ଓ ସତ୍ୟନିଷ୍ଠତା ପ୍ରତି ମଣିଷର ଅଙ୍ଗୀକାରବଦ୍ଧତା ପାଇଁ ସମାଜ ପରିବର୍ତ୍ତନ ସହ ମୂଲ୍ୟବୋଧର ପ୍ରତିଷ୍ଠା ହେବା ଆବଶ୍ୟକ, ଏହାହିଁ 'ଶୋଣିତ ସ୍ୱାକ୍ଷର' ନାଟକର ବକ୍ତବ୍ୟ ବୋଲି ସୂଚନା ମିଳେ ।

ଶ୍ରୀଧର କ'ଣ ସତରେ ଫେରିବ ? ମଲାଲୋକ କ'ଣ ଜୀଇଁ ଉଠିବ ? ପାପ-ପୁଣ୍ୟ, ପୁଞ୍ଜିପତି-ସର୍ବହରା, ନ୍ୟାୟ-ଅନ୍ୟାୟ ଭିତରେ ଥିବା ଦ୍ୱନ୍ଦ୍ୱର କ'ଣ ଅବସାନ ଘଟିବ ? ଏହାର ଉତ୍ତର କିନ୍ତୁ ଥାଇପାରେ ସାରା ନାଟକ ଭିତରେ । ଯେଉଁ ନାଟକୀୟ ଦ୍ୱନ୍ଦ୍ୱ ନାଟକରେ ରୂପାୟିତ ତାହା ସଂଭାବନାର କଥା ହିଁ କହେ । ଶ୍ରୀଧର ନିଶ୍ଚୟ ଫେରିବ, ତା' ଫେରିବା ଭିତରେ ପରିବର୍ତ୍ତନର ଆଶା ଅଛି, ମୂଲ୍ୟବୋଧକୁ ପ୍ରତିଷ୍ଠା କରିବାର ସଂକଳ୍ପ ଅଛି । ତେଣୁ ଶ୍ରୀଧର ଫେରିବ ହିଁ ଫେରିବ । ସେ ରକ୍ତ ମାଂସର ମଣିଷ ହୋଇ ନ ଫେରିପାରେ, କିନ୍ତୁ ସେ ଆମ ସମସ୍ତଙ୍କ ମାନସିକତାରେ ତିଷ୍ଠି ରହିଛି । ସତ୍ୟ, ଧର୍ମ, ମୂଲ୍ୟବୋଧର ପ୍ରତିଷ୍ଠା କରିବା ଲାଗି ସେ ଫେରିବ ନିଶ୍ଚୟ ।



# ନୂତନ ଜୀବନର ଆବାହନ : 'ପ୍ରଳୟ ପରେ'

୧୯୯୯ ମସିହା ଅକ୍ଟୋବର ୨୯ ତାରିଖ, ଓଡ଼ିଶାର ଭାଗ୍ୟରେ ଏହି ଦିନ ସତେଯେମିତି ଲେଖିଥିଲା ବିଶାଳ ବିପର୍ଯ୍ୟୟର ଅଘୋଷିତ ଇସ୍ତାହାର । ଦୁର୍ବିପାକର ଚିର ବନ୍ଧୁ ଓଡ଼ିଶାର ଇତିହାସରେ ଯୋଡ଼ାଗଲା ଧ୍ୱଂସ ଓ ବିଭୀଷିକାର ଆଉ ଏକ କଳଙ୍କିତ ଫର୍ଦ୍ଦ । ଭୟଙ୍କର ମହାବାତ୍ୟା ସବୁଜ ଶ୍ୟାମଳିମାର ଶୋଭାକୁ ପାଦରେ ଦଳି ଦେଇ ଘନଘୋର ଅନ୍ଧକାରର ଛବି ଛାଡ଼ି ଦେଇଗଲା । ପ୍ରକୃତିର ସଂହାର ଲୀଳା ସିନା ଦିନେ-ଦି' ଦିନ ଭିତରେ ଶାନ୍ତ ପଡ଼ିଗଲା, ହେଲେ ମହାବାତ୍ୟା ପରେ ଯେଉଁ ହୃଦୟ ବିଦାରକ ଦୃଶ୍ୟ ସବୁ ଘଟିଗଲା ସେଥିପାଇଁ ରଙ୍ଗମଞ୍ଚର ଆବଶ୍ୟକତା ପଡ଼ିଲା ନାହିଁ । ବାସ୍ତବ ଜୀବନର ମଞ୍ଚ ଉପରେ ଅଭିନୀତ ହୋଇ ଚାଲିଲା ଦୁର୍ଦ୍ଦଶାର ନାଟକ । ଏହି ମହାବାତ୍ୟା ସତେ ଅବା ନିମନ୍ତ୍ରଣ କରି ଅଣିଲା ଚେତନା ଜଗତର ମହାପ୍ରଳୟକୁ । ୧୯୯୯ର ପ୍ରଳୟକାରୀ ମହାବାତ୍ୟାର ଏହି ପୃଷ୍ଠଭୂମିକୁ ନେଇ ନାଟ୍ୟକାର ବିଜୟ କୁମାର ଶତପଥୀ ୨୦୦୦ ମସିହାରେ ରଚନା କରିଛନ୍ତି ନାଟକ 'ପ୍ରଳୟ ପରେ' । ଏହି ନାଟକର ପ୍ରଳୟ ପରବର୍ତ୍ତୀ କାଳରେ ସଂଘଟିତ ଭୟଙ୍କର ଦୁର୍ଦ୍ଦଶାର କଥା କେବଳ କୁହାଯାଇନାହିଁ ବରଂ ଏହି ପ୍ରଳୟ ମଣିଷର ଚେତନା ରାଜ୍ୟକୁ କିପରି ବିପର୍ଯ୍ୟସ୍ତ କରିଦେଇଛି, ସେଇକଥା ଦର୍ଶାଇ ଦିଆଯାଇଛି । ନାଟ୍ୟକାର କହନ୍ତି; "ଗତ ପ୍ରଳୟଙ୍କାରୀ ବାତ୍ୟାର ପୃଷ୍ଠଭୂମିକୁ ନେଇ ରଚିତ ଏହି ନାଟକଟିର ପ୍ରକୃତି ରାଜ୍ୟରେ ସଂଗଠିତ ଖଣ୍ଡ, ପ୍ରଳୟର କଥା କେବଳ କୁହାଯାଇନାହିଁ, ତା'ଠାରୁ ଆହୁରି ଏକ ଭୟଙ୍କର ମହାବାତ୍ୟାର ଅସ୍ତିତ୍ୱ କିପରି ମଣିଷର ଚେତନାକୁ ବିକ୍ଷୁବ୍ଧ କରିଦେଇଛି ତା'ରି ଦୃଶ୍ୟରୂପ ଏଥିରେ ପ୍ରସ୍ତୁତ କରାଯାଇଛି । କହିବାକୁ ଗଲେ ବିଗତ ମହାବାତ୍ୟା ଯେପରି ନିମନ୍ତ୍ରଣ କରିଆଣିଛି ଆହୁରି ମହାବାତ୍ୟା, ପ୍ରଳୟମାନଙ୍କୁ, ସବୁଠି ପ୍ରଳୟର ଅସ୍ତିତ୍ୱ - ମଣିଷର ରକ୍ତକୋଷରେ, ନିଜ ଚେତନାରେ ଓ ହୃଦୟତନ୍ତ୍ରୀରେ । ତା'ରି ଝଙ୍କାରରେ ଝଙ୍କୃତ ଚତୁର୍ଦ୍ଦିଗ । ମଣିଷର ଅନ୍ୟାୟ, ଅବିଚାର ଓ ଅସତ୍ୟ ବିରୁଦ୍ଧରେ ପ୍ରକୃତି ମହାପ୍ରଳୟର ଯେଉଁ ତୂର୍ଯ୍ୟନାଦ ଶୁଣାଇଥିଲା ତାହା ସଂକ୍ରମିତ ହେଉ ମଣିଷର ଚିନ୍ତାର ରାଜ୍ୟକୁ । ନ ହେଲେ ଯେ ନୂଆ କିଛି ଘଟିବନି, ସକାଳ ହେବନି । ପକ୍ଷୀମାନେ ଗୀତ ଗାଇବେନି, ତେଣୁ ପ୍ରଳୟର ଆବାହନ ପ୍ରତିଷ୍ଠା କରୁ ଆଗାମୀ ଜୀବନର, ଆଗାମୀ କାଳର ଇସ୍ତାହାର ।" (ନିଜସ୍ୱ ସଂଳାପ, 'ପ୍ରଳୟ ପରେ')

ମହାବାତ୍ୟା ପରର ଦୁର୍ଦ୍ଦଶା, ସାଧାରଣ ମଣିଷଙ୍କ ଆର୍ତ୍ତନାଦକୁ ନାଟ୍ୟକାର ପ୍ରତ୍ୟକ୍ଷ ଭାବେ ସନ୍ଧାନ କରିଛନ୍ତି । ତେଣୁ ସେମାନଙ୍କର ସେଇ ଦୁର୍ଦ୍ଦଶାକୁ ଉପଲବ୍ଧି କରି ନାଟ୍ୟକାର ବୃହତ୍ତର ସମାଜର ଦୁଃଖକୁ ଦର୍ଶାଇଛନ୍ତି । ଏ ଦୁଃଖ ବ୍ୟକ୍ତିଗତ ହୋଇରହି ନାହିଁ ବରଂ ବୃହତ୍ତର ସମାଜର ହୋଇଯାଇଛି ।

ନାଟକ ଆରମ୍ଭ ହେଉଛି ନାଟ୍ୟକାରଙ୍କ ପଢ଼ାଘରର ଦୃଶ୍ୟରୁ । ସେଠାରେ ଚିନ୍ତାମଗ୍ନ ହୋଇ ବସିଥିବା ଅବସ୍ଥାରେ ନାଟ୍ୟକାରଙ୍କୁ ଦେଖିବାକୁ ମିଳିଛି । ମଞ୍ଚଟି ସଂପୂର୍ଣ୍ଣ ଅନ୍ଧକାର ଭିତରେ ବୁଡ଼ି ରହିଥିଲାବେଳେ ନାଟ୍ୟକାରଙ୍କ ସ୍ଥିତିକୁ ସ୍ପଷ୍ଟ କରିବା ପାଇଁ ତାଙ୍କ ବସିବା ସ୍ଥାନଟିକୁ ଆଲୋକିତ କରାଯାଇଛି । ନାଟକ ରଚନାପାଇଁ ପ୍ଲଟ ଖୋଜୁଥିବା ନାଟ୍ୟକାର ତାଙ୍କ ମାନସ ରାଜ୍ୟରେ ଅନୁଭବ କରିଛନ୍ତି ଯେ ସତ୍ୟର ନ୍ୟାୟର ଗଳାଚିପି ହତ୍ୟା କରାଯାଇଛି । ଅନ୍ୟାୟ ଓ ଅସ୍ୱସ୍ତିର ବାତାବରଣ ମଧ୍ୟରେ ଗତି କରୁଛି ସମାଜ । କ୍ରମେ ନାଟ୍ୟକାର ବସିଥିବା ମଞ୍ଚର ଅଂଶଟି ବା ଜୋନ୍‌ଟି ଅନ୍ଧକାରମୟ ହେବା ସହ ହଠାତ୍ ତାଙ୍କର ପଛଅଂଶ ତଥା ମଞ୍ଚର ଦ୍ୱିତୀୟ ଜୋନ୍‌ଟି ଆଲୋକିତ ହୋଇଛି । ସେଠାରେ ଗୁଣ୍ଡା ବନୁ ସତିଆକୁ ହତ୍ୟା କରୁଥିବାର ଦୃଶ୍ୟ ଦେଖିବାକୁ ମିଳିଛି । ଦଇତାରୀ ମାଷ୍ଟ୍ରେ ସତିଆକୁ ବନୁ କବଳରୁ ମୁକ୍ତ କରିବାରେ ବିଫଳ ହେବା ସହ ନିଜେ ବି ବନୁର ଆକ୍ରମଣର ଶିକାର ହୋଇଛନ୍ତି । ବନୁ ମଞ୍ଚରୁ ଅପସରି ଯିବାପରେ ବାଦ୍ୟଯନ୍ତ୍ରର ଝଙ୍କାର ସହିତ ଦୃଶ୍ୟପଟ୍ଟରେ ପରିବର୍ତ୍ତନ ଆସିଛି ଏବଂ ନାଟ୍ୟକାରଙ୍କ ସେଇ ନିଶ୍ଚଳ ଅବସ୍ଥାରେ ଛିଡ଼ା ହୋଇଥିବାର ଦୃଶ୍ୟକୁ ଦେଖିବାକୁ ମିଳିଛି । ଦୂରରୁ ସତିଆ ମାଆର କରୁଣ ସ୍ୱର ନାଟ୍ୟକାରଙ୍କୁ ବ୍ୟଥିତ କରିଛି । ଠିକ୍ ସେହି ସମୟରେ ପାଗଳ ସନାତନ ମାଳିକାର ପଦକୁ ଗାଉଥିବାର ନାଟ୍ୟକାର ଶୁଣିପାରିଛନ୍ତି । ସନାତନର ଆହ୍ୱାନ ଭିତରେ ନାଟ୍ୟକାର ନୂଆ ପ୍ଲଟର ସନ୍ଧାନ କଲାବେଳେ ଅକସ୍ମାତ ଉପସ୍ଥିତ ହୋଇଛନ୍ତି ଦଇତାରୀ ମାଷ୍ଟ୍ରେ । ଦଇତାରୀ ମାଷ୍ଟ୍ରେ ନାଟ୍ୟକାରଙ୍କ ଚିନ୍ତାଧାରାକୁ ପରିବର୍ତ୍ତନ କରିବା ସହ ସମାଜର ଛଦ୍ମ ଆବରଣ ତଳେ ଲୁଚିଥିବା ଦୁଷ୍ଟ ଶକ୍ତିଙ୍କ ମୁଖା ଖୋଲି ଫିଙ୍ଗିଦେବାର ଆହ୍ୱାନ ଦେଇ ଚାଲିଯାଇଛନ୍ତି । ନାଟ୍ୟକାରଙ୍କ ଭିତରେ ଯେପରି ସୃଷ୍ଟି ହୋଇଛି ମହାପ୍ରଳୟ । ହୃଦୟରେ ତାଙ୍କର ଭିନ୍ନ ଧରଣର ରାଗିଣୀ । ନାଟ୍ୟକାର ବ୍ୟାକୁଳ ହୃଦୟରେ ଏଣିକି ଝଡ଼ର ତାଣ୍ଡବ, ସମୁଦ୍ରର ଅଶାନ୍ତ ଗର୍ଜନ, ଝାଉଁବଣର ଭୟଙ୍କର ପ୍ରତିଧ୍ୱନିକୁ ଆମନ୍ତ୍ରଣ ଜଣାଇଛନ୍ତି ପାଗଳ ପରି, ହସ ଓ କାନ୍ଦର ଲହାର ମଧ୍ୟରେ ।

ନାଟକର ଦ୍ୱିତୀୟ ଦୃଶ୍ୟରେ ଝଡ଼ର ଝଙ୍କାର କିଛି ସମୟ ଧରି ପରିବେଶକୁ ଆଚ୍ଛନ୍ନ କରିରଖିଛି । ବାତ୍ୟା ବିଧ୍ୱସ୍ତ ସମୁଦ୍ର ସନ୍ନିକଟ ହରିପୁର ଗାଆଁର ଦୃଶ୍ୟ ମଞ୍ଚରେ ଦର୍ଶାଯାଇଛି । ଶ୍ମଶାନର ଭୟାବହତା ଓ ସ୍ତବ୍ଧତାକୁ ଚମତ୍କାର ଭାବେ ନାଟ୍ୟକାର ଏହି ଦୃଶ୍ୟରେ ଦର୍ଶାଇଛନ୍ତି । ଆହୁରି ମଧ୍ୟ ଝିଙ୍କାରୀର ଶବ୍ଦ ରାତ୍ରିର ନିର୍ଜନତାକୁ ବଢ଼େଇ ଦେଇଛି । ବାତ୍ୟା ପରବର୍ତ୍ତୀକାଳୀନ

ଏହି ବିଧ୍ୱସ୍ତ ଗାଁର ଦୃଶ୍ୟ ସଂଯୋଜନାରେ ନାଟ୍ୟକାର ଯେଉଁ ଭିଜୁଆଲ ଇଫେକ୍ଟର ଅବତାରଣା କରିଛନ୍ତି ତାହା ନାଟକଟିକୁ ଆହୁରି ପ୍ରାଣସ୍ପର୍ଶୀ କରିତୋଳିଛି । ଅନ୍ଧାରରେ ଅଣ୍ଟାଏ ପାଣିରେ କେହି ଜଣେ ଆସିବାର ଧ୍ୱନି ଶୁଣିବାକୁ ମିଳିଛି । ପରେ ପରେ ମଞ୍ଚକୁ ପ୍ରବେଶ କରିଛି ସତିଆ ଗୋଟିଏ ଯୁବତୀକୁ ଧରି । ଡାକ୍ତରଖାନାରେ ପହଞ୍ଚି ସତିଆ ଅସୁସ୍ଥ ଯୁବତୀର ଚିକିତ୍ସା ଦାୟିତ୍ୱ ଡାକ୍ତର ମନୋଜଙ୍କ ଉପରେ ନ୍ୟସ୍ତ କରିଛି । ଆକସ୍ମିକ ଭାବରେ ପାଗଳ ସନାତନ ଗୋଟିଏ ବିସ୍କୁଟ ପେଟି ଧରି ଭିତରକୁ ପଶି ଆସିଛି । ପୁଣି ତା' କଣ୍ଠରେ ରହିଛି ଅଚ୍ୟୁତାନନ୍ଦଙ୍କ ସେଇ ମାଳିକାବାଣୀ – ଧ୍ୱଂସର, ପ୍ରଳୟର ଇସ୍ତାହାର । କିନ୍ତୁ ବନୁ ସେଠାରେ ପହଞ୍ଚି ସନିଆକୁ ଧକ୍‌କା ମାରି ତା'ଠାରୁ ବିସ୍କୁଟ ପ୍ୟାକେଟ୍‌ଟି ନେଇ ଚାଲିଯାଇଛି ।

ନାଟକର ତୃତୀୟ ଦୃଶ୍ୟରେ ଅଭିନୀତ ହୋଇଛି ହରିପୁର ଗାଁର ବନ୍ଧତଳେ ରିଲିଫ୍ କେନ୍ଦ୍ରରେ ଲୋକଙ୍କ ଆର୍ତ୍ତଚିତ୍କାର । ସ୍ଥାନୀୟ ସରପଞ୍ଚ ପରମଗୁରୁ ବାତ୍ୟାରେ ମିଳିଥିବା ରିଲିଫ୍ ସାମଗ୍ରୀକୁ ହରିଲୁଟ୍ କରି ସର୍ବସାଧାରଣଙ୍କୁ ଠକିବାର ପ୍ରୟାସ କରିଛି । ତା'ର ଏଇ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିଥିବା ଦଇତାରୀ, ସତିଆ କି ନବଘନ କେହି ଜଣେ ବି ପରମଗୁରୁର ମୁକାବିଲା କରିବାରେ ସଫଳ ହୋଇନାହାନ୍ତି । ନାଟକର ଚତୁର୍ଥ ଦୃଶ୍ୟରେ ନିଜ ଡାକ୍ତରଖାନା କମ୍ପାଉଣ୍ଡ ଭିତରେ ଥିବା କ୍ୱାର୍ଟରରେ ଡାକ୍ତର ମନୋଜ ଓ ଅସୁସ୍ଥ ଯୁବତୀ ସବିତାଙ୍କ ଅନ୍ତରଙ୍ଗ ବାର୍ତ୍ତାଳାପକୁ ଲକ୍ଷ୍ୟ କରାଯାଇପାରେ । ବଞ୍ଚିବାର ଆଶା ହରେଇ ବସିଥିବା ସବିତା ଭିତରେ ମନୋଜ ବଞ୍ଚିବାର ସମ୍ଭାବନା ଜାଗ୍ରତ କରିଛନ୍ତି । ସେମାନଙ୍କ ସମ୍ପର୍କକୁ ନେଇ ସରପଞ୍ଚ ପରମଗୁରୁର ନକରାତ୍ମକ କଟାକ୍ଷ ଉଭୟଙ୍କୁ ଆଘାତ ଦେଇଛି । ପୁଣି ପରମଗୁରୁର ଦୁର୍ନୀତି ବିରୋଧରେ ଡାକ୍ତରଙ୍କ ପ୍ରତିବାଦ ତା'ପକ୍ଷେ ଅସହ୍ୟ ହୋଇଉଠିଛି । ନାଟକର ପଞ୍ଚମ ଦୃଶ୍ୟରେ ରାଜନୀତିକ ସୁବିଧାବାଦର ଛଦ୍ମତାକୁ ପ୍ରକାଶ କରାଯାଇଛି । ହାଟପଡ଼ିଆରେ ଉପସ୍ଥିତ ଜନତାକୁ ସ୍ଥାନୀୟ ନେତା ଅନାଦି ମାନ୍ଧାତା ଓ ସରପଞ୍ଚ ପରମଗୁରୁ ମିଥ୍ୟା ପ୍ରତିଶ୍ରୁତିର ଭେଳିକି ଦେଖାଇଲାବେଳେ ସନିଆ ପାଗଳ ତାର ପ୍ରତିବାଦ କରିଛି ।

ସନିଆ : ଧପ୍‌ପାବାଜ୍, ବଦ୍‌ମାସ୍... ନିଆଶ୍ରୀ ଲୋକମାନଙ୍କ ଭାଗ୍ୟ ସାଙ୍ଗରେ ଖେଳୁଛ । ମୁଖାପିନ୍ଧା ଅସୁର । ମାଡି, ମାଡି ମଣିଷର ଚାଖଣ୍ଡେ ବୋଲି ପେଟ, ସେଥିରେ ତୁମର ଏତେ ଲୋଭ । କାଇଁ ଏ ପ୍ରଳୟ ତ ତୁମକୁ ନାଶ କରିପାରିଲାନି । ନିରୀହ ଲୋକମାନେ ଖାଲି ମଲେ । ସର୍ବସ୍ୱ ଗଲା ତାଙ୍କର, ଆଉ ଫନ୍ଦି ତୁମର ଫିଟିଗଲା ରୋଜଗାର ପାଇଁ । ଆହୁରି ଧ୍ୱଂସ... ଆହୁରି ପ୍ରଳୟ... ପ୍ରଳୟ ପରେ ଆହୁରି ପ୍ରଳୟ ।" (ପ୍ରଳୟ ପରେ, ସୋସିଆଲ ଟ୍ରାଜେଡ଼ିର ତିନୋଟି ନାଟକ – ପୃ.୧୪୯)

ସନିଆର ପ୍ରତିବାଦ ଭିତରେ ରୂପାୟିତ ହୋଇଛି ମହାବାତ୍ୟାର ଝଙ୍କାର । ନାଟକର ଷଷ୍ଠ ଦୃଶ୍ୟରେ ନାଟ୍ୟକାର ଓ ଡାକ୍ତର ମନୋଜ ବାର୍ତ୍ତାଳାପ କରୁଥିବାବେଳେ, ସତିଆଠାରୁ ଶୁଣିବାକୁ ପାଇଛନ୍ତି କ୍ଷୁଧାର୍ତ୍ତ ଲୋକଙ୍କର ପ୍ରତିବାଦ ସମ୍ପର୍କରେ । ବାତ୍ୟାକ୍ଲିଷ୍ଟ ଲୋକେ ସରପଞ୍ଚର ଗୋଦାମକୁ ଲୁଟ୍ କରିଛନ୍ତି ।

ନାଟକର ସପ୍ତମ ଦୃଶ୍ୟଟିରେ ପରମଗୁରୁ ସହ ଗୁଣ୍ଡା ବନୁର ବାର୍ତ୍ତାଳାପ - ଏକ ଷଡ଼ଯନ୍ତ୍ର ସଂପର୍କରେ ସୂଚନା ଦିଏ । ଦୁହେଁ ଅପଣାର ଷଡ଼ଯନ୍ତ୍ରରେ ସଫଳ ହେବା ସହ ସେମାନଙ୍କ ବିରୋଧରେ ସ୍ୱର ଉଠାଇଥିବା ଶକ୍ତିକୁ ଦମନ କରିବାପାଇଁ ମସୁଧା କରିଛନ୍ତି । ସେହିପରି ଅଷ୍ଟମ ଦୃଶ୍ୟରେ ସବିତା ମର୍ଡ଼ର କେସ୍‌ରେ ନିର୍ଦ୍ଦୋଷ ଡାକ୍ତର ମନୋଜ ପୋଲିସ୍ ଜେରାର ସମ୍ମୁଖୀନ ହୋଇଛନ୍ତି । ଏଥିସହିତ ତାଙ୍କୁ ବ୍ୟଥିତ କରିଛି ସତିଆର ମୃତ୍ୟୁ । ଶେଷରେ ପୋଲିସ୍ ଡାକ୍ତରଙ୍କୁ ଥାନାକୁ ନେଇଛି । ଅନ୍ୟାୟ ବିରୋଧରେ ସ୍ୱର ଉଠେଇଥିବା ପ୍ରତ୍ୟେକ ବ୍ୟକ୍ତି ଦୁର୍ଦ୍ଦଶା ଭୋଗିଛନ୍ତି । ମଞ୍ଚରେ ସତିଆ ମାଆ ସତିଆକୁ ଖୋଜି ନ ପାଇବା ପରେ ବାହୁଡ଼ି ଯାଇଛି । ସତିଆ ମାଆର ପ୍ରସ୍ଥାନ ସହ କରୁଣ ସଂଗୀତର ମୂର୍ଚ୍ଛନା ମଧ୍ୟରେ ମଞ୍ଚ ଅନ୍ଧକାର ହୋଇଛି ଏବଂ ଦୃଶ୍ୟପଟରେ ପରିବର୍ତ୍ତନ ଆସିଛି । ଆଲୋକ କେନ୍ଦ୍ରୀଭୂତ ହୋଇଛି ନାଟ୍ୟକାରଙ୍କ ଉପରେ । ସେ ତାଙ୍କ ପଢ଼ାଘରେ ବସିଛନ୍ତି । ଏହା ନାଟକର ଶେଷ ଦୃଶ୍ୟ ଭାବେ ବିବେଚିତ ହୋଇଛି । ନାଟ୍ୟକାର ନାଟ୍ୟକାହାଣୀ ସଂପର୍କରେ ଦର୍ଶକମାନଙ୍କୁ କହିଛନ୍ତି । ଡାକ୍ତର ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ ହେବା, ତାଙ୍କର ଭବାନୀପାଟଣା ବଦଳି ପ୍ରସଙ୍ଗ, ପୁଣି ଦଇତାରୀ ମାଷ୍ଟ୍ରେ ନିର୍ଦ୍ଦୋଷରେ ଜେଲଯିବା ଆଦି ଘଟଣା ସମ୍ପର୍କରେ ସେ ସୂଚାଇଲାବେଳେ ଅକସ୍ମାତ୍ ଦଇତାରୀ ମାଷ୍ଟ୍ରେ ଜେଲ୍ ପାଚେରୀ ଡେଇଁ ଚାଲିଆସିଛନ୍ତି । ଦଇତାରୀଙ୍କର ବକ୍ତବ୍ୟରୁ ଜଣାପଡ଼ିଛି ବନୁକୁ ଫାଇରିଙ୍ଗ୍ କରି ସେ ପ୍ରତିଶୋଧ ନେଇଛନ୍ତି ଓ ପରମଗୁରୁକୁ ଆକ୍ରମଣ କରିବା ପାଇଁ ତାଙ୍କର ପ୍ରସ୍ତୁତି ଚୂଡ଼ାନ୍ତ ହୋଇଛି । ନାଟ୍ୟକାର ଓ ଦଇତାରୀଙ୍କ କଥାଭାଷାର ଚିତ୍ର ନିମ୍ନଲିଖିତ ଭାବରେ ନାଟକରେ ପ୍ରଦତ୍ତ ।

ନାଟ୍ୟକାର : ପ୍ରତିଶୋଧ ପ୍ରବଣତା ସମାଜ ଜୀବନକୁ ଛାରଖାର କରିଦେବ ।

ଦଇତାରୀ : ବେଶ୍ ସେଇଆ ଚାହେଁ ମୁଁ । ଧ୍ୱଂସ ପ୍ରଳୟ ଅନ୍ଧାର । ଆସୁ, ଆସୁ ଗୋଟେ ପ୍ରଖର ଝଡ଼ । ଧ୍ୱଂସ ହେଉ ଯଦୁବଂଶ, ତା ହେଲେ ଲେଖାଯିବ କାଳାନ୍ତରର ଭାଷ୍ୟ । ଆଗାମୀ ଯୁଗର ଇତିହାସ । ମୁଁ ଏବେ ଚାଲିଲି ନାଟ୍ୟକାର ଗୋଟେ ଧୂମକେତୁ ପରି । ମୁଁ ଜାଣେ, ମୁଁ ଯେଉଁ ପଥ ବାଛିନେଇଛି ତାହା କଣ୍ଟକିତ, ତାହା ପ୍ରଚଳିତ ବ୍ୟବସ୍ଥାର, ଆଇନ୍‌କାନୁନ୍ ବିରୋଧୀ । କିନ୍ତୁ ମୋ ଅନୁଭବ ମତେ ଏଇଆ କରି ଦେଉଛି... ହିଁ ଗୋଟେ ଆତଙ୍କ ଆଉ ଅରାଜକତାର ରାସ୍ତା ମତେ ଦେଖେଇଛି । ମୃତ୍ୟୁ ପର୍ଯ୍ୟନ୍ତ ମୁଁ ତାକୁ ବରି ନେବି ନାଟ୍ୟକାର,

ନ ହେଲେ ଉପାୟ ନାହିଁ... ଉପାୟ ନାହିଁ । ପ୍ରଳୟ ପରେ... ଆହୁରି ପ୍ରଳୟ । (ପୃ.୧୬୦)

ଦଇତାରୀ ମାଷ୍ଟ୍ରଙ୍କ ଏଷ୍ଟାବ୍ଲିଶମେଣ୍ଟ ବିରୋଧୀ ସତ୍ତା ଭିତରେ ନକ୍‌ସାଲ ଚିନ୍ତାଧାରାକୁ ଦେଖିବାକୁ ମିଳେ । ଧ୍ୱଂସର, ପ୍ରଳୟର ଆହ୍ୱାନ ଦେଇ ଦଇତାରୀ ମାଷ୍ଟ୍ରେ କ୍ଷିପ୍ରଭାବେ ବାହାରି ଯିବା ସହିତ ନାଟକର ପରିସମାପ୍ତି ଘଟିଛି ।

ନାଟକଟିରେ ପ୍ରଳୟ ଅପେକ୍ଷା ପ୍ରଳୟ ପରବର୍ତ୍ତୀ କାଳୀନ ଦୁର୍ଦ୍ଦଶା ଦୁରବସ୍ଥାଟି ଅଧିକ ଲକ୍ଷଣୀୟ । ତାହା ହେଉଛି ମାନବିକତାର ବିପର୍ଯ୍ୟୟ । ତାହା ପ୍ରାକୃତିକ ବିପର୍ଯ୍ୟୟଠାରୁ ଆହୁରି ସାଂଘାତିକ । ସାଧାରଣ ଜନତା ପାଇଁ ରିଲିଫ୍‌କୁ କିଛି ମୁଷ୍ଟିମେୟ ବ୍ୟକ୍ତି ହରିଲୁଟ କଲେ । ଏହା ପ୍ରକୃତରେ ମାନବିକତାର ଅପମୃତ୍ୟୁ ନୁହେଁ ତ ଆଉ କ'ଣ ? ନାଟକରେ ସବୁଠାରୁ ଆକର୍ଷଣୀୟ ହୋଇଛି ନାଟ୍ୟକାର ବିଜୟ କୁମାର ଶତପଥୀ ସନିଆ ଚରିତ୍ର ମୁହଁରେ ଯେଉଁ ମାଳିକାର ପଙ୍‌କ୍ତି ଦେଇଛନ୍ତି । ଯେପରି –

ସନାତନ : ବାଇଶି ପାହାଚେ ଖେଳିବ ଯେ ମୀନ
ଦରିଆ ଗ୍ରାସିବ ମହୀ
ଉତ୍ତରେ ସାଜିବ ବସିଣେ ଗାଜିବ
କୁଳେ ନ ରହିବେ କେହି ।
ଅଚ୍ୟୁତ ବୋଲଇ ପ୍ରଳୟ ଆସଇ
କଲ୍‌କୀର ରୂପଧରି
ମହା ଅନ୍ଧାରତ ଘୋଟି ଆସଇରେ
କୋକୁଆର ରୂପ ନେଇ ।

(ପ୍ରଳୟ ପରେ - ସୋସିଆଲ ଟ୍ରାଜେଡ଼ିର ତିନୋଟି ନାଟକ, ଅଗ୍ରଦୂତ, କଟକ ପୃ.୧୨୮-୧୨୯)

ପ୍ରଳୟ ପ୍ରକୃତି ରାଜ୍ୟରେ ଯେତିକି ତାଣ୍ଡବ ସୃଷ୍ଟି ନ କରିଛି, ତାଠାରୁ ଅଧିକ ଧ୍ୱଂସ କରିଛି ମଣିଷର ଚେତନା ରାଜ୍ୟକୁ । ମହାବାତ୍ୟାର ଦୁର୍ଦ୍ଦଶା ଏକ ସାମାଜିକ ଦୁଃଖ / ବିଷାଦର ବଳୟ ତିଆରି କରିଛି । ସେଥିରୁ କୌଣସି ବ୍ୟକ୍ତି ବି ମୁକ୍ତ ନୁହଁନ୍ତି । ଏସବୁ ଭିତରେ ରହିଛି ସମାଜର ଭଲ ପଣିଆର, ମୂଲ୍ୟବୋଧର ହତ୍ୟା । ପ୍ରଳୟ ଆଣିଛି ସତ୍ୟର ଗଳାରୁଦ୍ଧ କରିବା ସହ ବିପର୍ଯ୍ୟସ୍ତ ସମାଜ ବ୍ୟବସ୍ଥା । ଯେଉଁମାନେ ପ୍ରଳୟରୁ ମୁକ୍ତି ପାଇଗଲେ ସେମାନେ ନିଜର ଶୋଷକ ପ୍ରବୃତ୍ତିକୁ ବି ଛାଡ଼ିପାରିଲେ ନାହିଁ । ପୁଣି ଆରମ୍ଭ ହେଲା ସାଧାରଣ ମଣିଷ ଉପରେ ମୁଷ୍ଟିମେୟ ଶୋଷକର ଅତ୍ୟାଚର, ପୁଣି ଶୁଭିଲା କ୍ଷୁଧାର୍ତ୍ତର ଆର୍ତ୍ତଚିତ୍କାର ।

ମହାବାତ୍ୟାର ଅସ୍ତିତ ମଣିଷଠାରୁ ମଣିଷ ପଣିଆ ଛଡ଼ାଇ ନେବା ସହ ତା' ଭିତରୁ ମାନବିକତାକୁ ଧ୍ୱଂସ କରିଛି । ଏଣେ ମଣିଷର ଚେତନା, ରକ୍ତକୋଷ ଭିତରେ ବି ପ୍ରଳୟର ଅସ୍ତିତ୍ୱ, ସବୁକିଛି ଧ୍ୱଂସ କରିବାର ଲୋଭ । ଏହି ଧ୍ୱଂସକୁ ନାଟ୍ୟକାର ବିଜୟ କୁମାର ଶତପଥୀ 'ପ୍ରଳୟ ପରେ' ନାଟକରେ ଦର୍ଶାଇବା ସହିତ ଧ୍ୱଂସର ସ୍ତୁପ ଭିତରୁ ନୂତନ ସକାଳର ନୂତନ ଜୀବନର ଆବାହନୀ ସଂଗୀତ ଶୁଣାଇଛନ୍ତି । ଅସତ୍ୟ କେବେବି ସତ୍ୟର କଣ୍ଠରୋଧ କରିପାରିବନି । ସତ୍ୟ ସବୁବେଳେ କୁହୁଡ଼ି ଭିତରୁ ସୂର୍ଯ୍ୟ ବାହାରିଲା ପରି ବାହାରିଆସିବ ଓ ପ୍ରଳୟ ପରବର୍ତ୍ତୀ ସମୟରେ ଆଶାର କିରଣ ଢାଳିଦେବ ଏଇ ସମ୍ଭାବନା ନାଟକ ଭିତରେ ରହିଛି । ତେଣୁ ପ୍ରଳୟ ପରବର୍ତ୍ତୀକାଳୀନ ସମୟ ଆବାହନ କରିଛି ନୂତନ ଜୀବନକୁ - ନୂତନ ସମ୍ଭାବନାକୁ ।



# ସତ୍ୟ - ଅସତ୍ୟର ଏନ୍ତୁଡ଼ିଶାଳରେ : 'କାରାଗାରର କାହାଣୀ'

ସେ ଦୃଶ୍ୟ ପୁଣି ଅଦୃଶ୍ୟ, ଆତଙ୍କ ସେ, ବିଭୀଷିକାର କେବେ ଅନ୍ୟ ନାମ, ସେ ପୁଣି ପରିବର୍ତ୍ତନର ସ୍ୱପ୍ନ, ତା'ରି ଭିତରେ ପୁଣି ସୃଜନର ରାଗିଣୀ ସମ୍ଭାବନାର ନବଦିଗନ୍ତ । ସେ ଏମିତି ଏକ ଏନ୍ତୁଡ଼ିଶାଳ ଯେଉଁଠି ଧର୍ମ-ଅଧର୍ମର ସଂଘର୍ଷ ଅଛି, ପାପ ପୂଣ୍ୟର ଛକା-ପଞ୍ଝା ଖେଳ ଅଛି । ଆହୁରି ପୁଣି ସତ୍ୟ-ଅସତ୍ୟର ମୁହାଁ ମୁହିଁ ଲଢ଼େଇବି ତା'ରି ବକ୍ଷରେ ସଂଘଟିତ ହୋଇଛି । ତା'ରି ରୁକ୍ଷ-କର୍କଶ ବକ୍ଷରେ ଏସବୁ ଲିପିବଦ୍ଧ ହୋଇଛି । ସେ ମୂକ ସାକ୍ଷୀ ଆଗାମୀ ଇତିହାସର, ଯିଏ ବାର୍ତ୍ତାଦିଏ ନୂତନ ସକାଳର । ତା'ର ନିଜର ବି କାହାଣୀ ଅଛି –. ସେ କାହାଣୀ କେବଳ ତା'ର । ପଢ଼ି ହେଉଥିବା ପୁଣି ପଢ଼ି ହେଉନଥିବା-ବୁଝି ହେଉଥିବା ପୁଣି ବୁଝି ହେଉନଥିବା କାହାଣୀ – ସବୁ ଅସ୍ପଷ୍ଟ କଥା ଭିତରେ ଗୋଟିଏ କାହାଣୀ - କାରାଗାରର କାହାଣୀ । କାରାଗାରବି କଥା କହିଜାଣେ, ସେ ବି ନିଜର ଅବସୋସ ଅପ୍ରାପ୍ତି, ଖୁସି-ଆନନ୍ଦକୁ ବ୍ୟକ୍ତ କରିପାରେ ବାଣ୍ଟି ଦେଇପାରେ ଏମିତି ଏକ ପ୍ରତିଶ୍ରୁତି ଆମକୁ ଦେଇଛନ୍ତି ଓଡ଼ିଆ ନାଟ୍ୟସାହିତ୍ୟରେ ପ୍ରଥମ କରି ନାଟ୍ୟକାର ଡ. ବିଜୟ କୁମାର ଶତପଥୀ । କାରାଗାରର କାହାଣୀ ନାଟକ ସଂପର୍କରେ କେଇପଦ କହିବା ଆଗରୁ ନାଟ୍ୟକାରଙ୍କ ନାଟ୍ୟ ଉଦ୍ଦେଶ୍ୟର କିଛି ମନ୍ତବ୍ୟକୁ ସ୍ମରଣ କଲେ କୌଣସି ଅସୁବିଧା ରହିବ ନାହିଁ । "ନାଟ୍ୟବୃତ୍ତର କେନ୍ଦ୍ର ବିନ୍ଦୁରେ କାରାଗାରକୁ ରଖି ସମାଜ ବ୍ୟବସ୍ଥାର, ମାନସିକତାର ପୁଣି ମୂଲ୍ୟବୋଧର ବିବର୍ତ୍ତନ ତଥା ବିପର୍ଯ୍ୟୟ ଦେଖାଇଦେବା ପାଇଁ ମୁଁ ଯେଉଁ କ୍ଷୀଣ ପ୍ରୟାସ ଏଥିରେ କରିଛି, ତାହା ଲକ୍ଷ୍ୟ କରାଯାଇପାରେ । ଅପରାଧ କରି ବା କୌଣସି ରାଜଦଣ୍ଡର ସମ୍ମୁଖୀନ ହୋଇଆସିଥିବା ମଣିଷକୁ କୋଳରେ ଧରିବା ସହିତ କାରାଗାର ଥିଲା ନୂତନ ଚିନ୍ତା ଚେତନାର ଏନ୍ତୁଡ଼ିଶାଳ । ତା'ରି ବକ୍ଷରୁ ଦିନେ ବିପ୍ଳବର ମହାମନ୍ତ୍ର ଅନ୍ୟାୟ ଅତ୍ୟାଚାରକୁ ଧ୍ୱଂସ କରିବାର ବାର୍ତ୍ତା ଲମ୍ବିଯାଇଥିଲା କାହିଁ କେତେ ଦୂରକୁ । ସମଗ୍ର ସମାଜ ଅନୁପ୍ରାଣିତ ହେଉଥିଲା ସେଥିରେ । ଆଜି କିନ୍ତୁ ସମୟ ବଦଳିଛି । ବନ୍ଦୀ ହେବାର ସଂଜ୍ଞା ମଧ୍ୟ ବଦଳିଯାଇଛି । ଏ ସବୁର ଦୃଶ୍ୟ ରୂପ ନାଟକରେ ମୁଁ ସୂଚନାତ୍ମକ ରୀତିରେ ଦେଖାଇବାର ପ୍ରୟାସ କରିଛି ଓ ଦେଖାଇବାକୁ ମଧ୍ୟ ଚାହିଁଛି ପ୍ରତିଟି ମଣଷ କିପରି ବନ୍ଦୀତ୍ୱର ଅନୁଭବରେ ପୀଡ଼ିତ ।" (ପ୍ରାକ୍‌ବନ୍ଧ – କାରାଗାରର କାହାଣୀ)

ଶାସକର ଅହଂକାର, ଗର୍ବ ଓ ଉଦ୍ଧତପଣର ପ୍ରତିନିଧି ଭାବେ କାଳକାଳଧରି କାରାଗାର ଦଣ୍ଡାୟମାନ ହୋଇ ରହିଛି । ତା'ର ନିଷ୍ଠୁର କୋଳରେ ମନୁଷ୍ୟର ସ୍ୱାଧୀନ ଚିନ୍ତାଧାରା-ଚେତନା ଅତି ନିଦାରୁଣ ଭାବେ ପଦଦଳିତ ହୋଇଛି । ତଥାପି ସେଇ କାରାଗାର ଭିତରୁ ଚେତନାର ନବକଳେବର ଘଟିଛି । ପରିବର୍ତ୍ତନର ସୂର୍ଯ୍ୟୋଦୟ ଆତ୍ମପ୍ରକାଶ ହୋଇଛି । ଅନ୍ଧକାରର କାଳିମା ଉଭେଇ ଯାଇ ନୂତନ ବାଳସୂର୍ଯ୍ୟର ଆଲୋକରେ ଆଲୋକିତ ହୋଇଛି କାରାଗାର । ଏହିପରି ଏକ ମାନସିକତାକୁ ନେଇ ରଚିତ ନାଟକ 'କାରାଗାରର କାହାଣୀ'ରେ କାରାଗାରର ବ୍ୟଞ୍ଜନାତ୍ମକ ରୂପରେଖକୁ ସଂଧାନ କରାଯାଇପାରେ ।

ନାଟକର ପ୍ରାରମ୍ଭରେ ମଞ୍ଚ ଆଲୋକିତ ହେଲା ବେଳକୁ ମଞ୍ଚରେ ଦୃଶ୍ୟମାନ ହୁଅନ୍ତି କାରାଗାର । ପ୍ରଥମ କରି ଓଡ଼ିଆ ନାଟକରେ କାରାଗାର ପରି ଏକ ବସ୍ତୁବିଶେଷ ଚରିତ୍ର ହୋଇ ନିଜର ବକ୍ତବ୍ୟ ପ୍ରକାଶ କରିଛି । କାରାଗାର ସ୍ୱ ପରିଚୟ ସଂପର୍କରେ ତାର ସଂଳାପକୁ ଏଠାରେ ଦର୍ଶାଇ ଦିଆଯାଇପାରେ । ଏହାକୁ ନାଟକରେ କୁହାଯାଇଥାଏ – self reflexive style ।

କାରାଗାର : ମୁଁ କାରାଗାର... (ହସିଛନ୍ତି ରହସ୍ୟପୂର୍ଣ୍ଣ ଭାବରେ) ମୁଁ ସବୁଠି, ସବୁ ଜାଗାରେ, ମୁଁ ଦୃଶ୍ୟ ପୁଣି ଅଦୃଶ୍ୟ । ମୋର ଅସ୍ତିତ୍ୱ ବି ମଣିଷର ଚିନ୍ତା ଓ ଚେତନାରେ । ଆପଣମାନେ ମତେ ଦେଖିପାରନ୍ତି ବା ନ ଦେଖି ପାରନ୍ତି, ସେଥିରେ କିଛି ଯା'ଆସ ନାହିଁ । ଜନ ମାନସରେ ମୁଁ ଆଣେ ଆତଙ୍କ, ବିଭୀଷିକା । ଅବରୁଦ୍ଧ କରେ ମୁଁ ଜୀବନର ସ୍ୱଚ୍ଛନ୍ଦ ପ୍ରବାହ । ତେବେ ବି ମୋ ନିଷ୍ଠୁର କୋଳରେ ଲେଖାହୁଏ ଆଗାମୀ କାଳର ଇତିହାସ । ସତ୍ୟର, ପରିବର୍ତ୍ତନର ଏନ୍ତୁଡ଼ିଶାଳ ମୁଁ । ମୁଁ ସବୁରି ସାକ୍ଷୀ ଅନ୍ଧାର ଘେରା ଝଡ଼ ରାତିର ପୁଣି ରକ୍ତ ରଂଜିତ ସକାଳର । ମୁଁ କାରାଗାର... କାରାଗାର । ମୋରି କଥା ଭିତରେ ପ୍ରତିଧ୍ୱନିତ ହେବ ପୀଡ଼ିତ ମାନବାତ୍ମାର ଗାଥା, ମୁଁ କାରାଗାର... । ମୁଁ ଏଠି ସେଠି ସବୁଠି... ପରିବ୍ୟାପ୍ତ... ହାଃ... ହାଃ... ହାଃ... । (କାରାଗାରର କାହାଣୀ – ପୃ. ୨)

କାରାଗାର ନିଜର ପରିଚୟ ଦେଇ ମଞ୍ଚରୁ ଅପସରିଯିବା ପରେ ଜଣେ କ୍ଳାନ୍ତ ଅବସନ୍ନ ବନ୍ଦୀକୁ ପାଠକ ଓ ଦର୍ଶକ ଲକ୍ଷ୍ୟ କରେ । ସଂସାରରୂପକ କାରାଗାରରେ ବନ୍ଦୀତ୍ୱର ଅନୁଭବରେ ମଣିଷ ଯେପରି ପୀଡ଼ିତ ତା'ରି ସଙ୍କେତ ଏଥିରେ ଦିଆଯାଇଛି । ନାଟକର ପ୍ରଥମ ପର୍ଯ୍ୟାୟରେ ବନ୍ଦୀ ନଂ. ୧କୁ ଦର୍ଶକ ଓ ପାଠକ ଲକ୍ଷ୍ୟ କରେ । ଶାସକ ଓ ପ୍ରହରୀଙ୍କ କଡ଼ା ଶାସନ, କଠୋର ତାଗିଦା ଭିତରେ ବି ବନ୍ଦୀ ସ୍ୱପ୍ନର ଜାଲ ବୁଣିଛି, କାରାଗାର ଭିତରେ ମୁକ୍ତିର ଆଲୋକ ଦେଖିପାରିଛି । ସେଥିପାଇଁ ଅତ୍ୟାଚାରୀ ଶାସକ ବନ୍ଦୀର ମୃତ୍ୟୁ ଅପେକ୍ଷା ବନ୍ଦୀର ସ୍ୱପ୍ନକୁ ହତ୍ୟା କରିବା ପାଇଁ ପ୍ରହରୀକୁ ନିର୍ଦ୍ଦେଶ ଦେଇଛନ୍ତି । ଶେଷରେ ବନ୍ଦୀର ସ୍ୱପ୍ନ ସତ୍ୟ

ହୋଇଛି, କାରାଗାରର କାଳ କୋଠରୀ ଭିତରୁ ପରିବର୍ତ୍ତନର ସୂର୍ଯ୍ୟୋଦୟ ଘଟିଛି । ନାଟକର ଏହି ପ୍ରଥମ ପର୍ଯ୍ୟାୟରେ ପୌରାଣିକ ଯୁଗର ଆଖ୍ୟାନକୁ (ବସୁଦେବ-ଦେବକୀଙ୍କ ବନ୍ଦୀ ସମୟରେ ଶ୍ରୀକୃଷ୍ଣ ଜନ୍ମ ପ୍ରସଙ୍ଗ) ଅତି ସାଙ୍କେତିକ ଭାବେ ନାଟ୍ୟକାର ଦର୍ଶାଇଛନ୍ତି । ନାଟକରେ କେଉଁଠିବି ଏହି ପୌରାଣିକ ଚରିତ୍ର ମାନଙ୍କର ନାମ-ପୁରାଣ ପ୍ରସଙ୍ଗର ଉଲ୍ଲେଖ ହୋଇ ନଥିଲେ ବି କେବଳ ଭାଗବତର କେତୋଟି ପଦ ମାଧ୍ୟମରେ ଅତି କୌଶଳର ସହ ନାଟ୍ୟକାର ଏହି ପୌରାଣିକ ପ୍ରସଙ୍ଗର ଉଲ୍ଲେଖ କରିଛନ୍ତି ।

ଯେପରି –

''ନଦୀଏ ଉଛୁଳିଲେ ବଳେ । ପକ୍ଷୀଙ୍କ ନାଦ ବୃକ୍ଷଡ଼ାଳେ ॥
ସ୍ତବକ ପୁଷ୍ପ ବନେ ଫୁଟି । ବାସ ପ୍ରସରଇ ପ୍ରକଟି ॥
ବିପ୍ରେ ମଙ୍ଗଳ ଦେବ ନାଦେ । ଅନଳେ କ୍ଷେପନ୍ତି ସମିଧେ ॥
ଆନନ୍ଦ ହେଉଅଛି ମହୀ । କୃଷ୍ଣ ଜନ୍ମିବେ ଦେହ ବହି ॥''

(କାରାଗାରର କାହାଣୀ ପୃ-୧୦)

ଅତ୍ୟାଚାରୀ ପ୍ରହରୀ ଓ ଶାସକର ଅଭୀପ୍‌ସାକୁ ରାତ୍ରିର ଘନ ଅନ୍ଧାରରେ ଶାୟିତ କରି କାରାଗାର ଭିତରୁ ପରିବର୍ତ୍ତନର ଯେଉଁ ନୂତନ ଆଶା ଆଲୋକିତ ହୋଇଛି-ତାହା ଏହି ନାଟକରେ କାରାଗାରର ପ୍ରଥମ ଅନୁଭବ । ରାତ୍ରିର ମଧ୍ୟ ଭାଗରେ କାରାଗାର ଭିତରେ ଜନ୍ମ ନେଇଛନ୍ତି ଶ୍ରୀକୃଷ୍ଣ । ତାଙ୍କରି ଭିତରେ ବନ୍ଦୀ ବସୁଦେବ ଦେଖିଛନ୍ତି ନୂଆ ଜୀବନ, ସୃଜନର ସଂଭାବନା, ନୂତନ ଜୀବନର ଛନ୍ଦ, ଆପଣାର ବନ୍ଦୀତ୍ୱରୁ ମୁକ୍ତି । ଯେଉଁଥିପାଇଁ ବନ୍ଦୀ ନିଜର ନବଜାତ ସନ୍ତାନର ସୁରକ୍ଷା ପାଇଁ ତାକୁ କାରାଗାର ବାହାରେ ସୁରକ୍ଷିତ ରଖିବା ଲାଗି କାରାଗାରରୁ ବାହାରି ଆସିଛନ୍ତି । ବନ୍ଦୀ କାରାଗାର ଭିତରୁ ଚାଲିଯିବାପରେ ମଞ୍ଚରେ ପୁଣି ଆବିର୍ଭାବ ଘଟିଛି କାରାଗାରର । ନିଜର ରୁଦ୍ଧଦ୍ୱାର ଫିଟିଯିବା ପରେ ସେ ମୁକ୍ତିର ଆନନ୍ଦ ଅନୁଭବ କରିଛି । ତଥାପି କାରାଗାର ପୁଣି ନିର୍ମାଣ ହୋଇଥାଏ ମଣିଷକୁ ବନ୍ଦୀ ରଖିବା ପାଇଁ, ଆଉ କାରାଗାରର ସେଇ ରୁଦ୍ଧଦ୍ୱାର ଉନ୍ମୁକ୍ତ ବି ହେଉଥାଏ । ଏମିତି କାରାଗାର ଗଢୁଥାଏ ପୁଣି ଭାଙ୍ଗୁଥାଏ । ସେଥିପାଇଁ କାରାଗାର ତା'ର ଏହି ସଂଳାପରେ ସୂଚେଇ ଦେଇଛି –

କାରାଗାର : ଯୁଗେ ଯୁଗେ ଏଇମିତି ମୋରି ଅନ୍ଧାରୀ କୋଣରୁ ଆଲୋକର ରେଖା ଲମ୍ବିଯାଇଥାଏ କାହିଁ କେତେଦୂରକୁ । ସେ ରେଖା ପୁଣି ବିଚ୍ଛୁରିତ ହୁଏ ବିକ୍ଷିପ୍ତ ହୁଏ । ଫିଟି ଯାଉଥାଏ ବାରମ୍ବାର ମୋର ରୁଦ୍ଧଦ୍ୱାର । ଆଃ... କି ଶାନ୍ତି ! କେତେ ଆନନ୍ଦ... କେତେ ଆନନ୍ଦ... ମୁକ୍ତ ଜୀବନର ଛନ୍ଦ । ତେବେ ପୁଣି କାହିଁକି କାରାଗାର ଗଢ଼ା ହେଉଥାଏ ମଣିଷ ପାଇଁ । ମୁକ୍ତିର ସଂଗୀତକୁ ପ୍ରତିହିତ କରାଯାଉଥାଏ । ବନ୍ଦୀ... ମୁକ୍ତିର ସ୍ୱପ୍ନ... ପୁଣି ବନ୍ଦୀ...

ଏହାରି ଭିତରେ ଗତି କରୁଥାଏ ଜୀବନ । ବନ୍ଦୀ ଜନ୍ମ ନେଉଥାଏ, କଷ୍ଟ ପାଉଥାଏ, ପୁଣି ଜନ୍ମ ନେଉଥାଏ ବାରମ୍ବାର । (ପୃ.୧୨)

ନାଟକର ପ୍ରଥମ ପର୍ଯ୍ୟାୟରେ ପୌରାଣିକ ପ୍ରସଙ୍ଗ ପରିଲକ୍ଷିତ ହୋଇଥିବା ବେଳେ ଦ୍ୱିତୀୟ ପର୍ଯ୍ୟାୟରେ କାରାଗାରକୁ କେନ୍ଦ୍ରରେ ରଖି ଐତିହାସିକ ପ୍ରସଙ୍ଗର ଅବତାରଣା କରାଯାଇଛି । ଏହି ପର୍ଯ୍ୟାୟରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଚିତ୍ର ଦେଖିବାକୁ ମିଳେ । ସମୟର ବିବର୍ତ୍ତନରେ ଶାସକ-ଜେଲର ଭାବେ, ପ୍ରହରୀ - ୱାର୍ଡ଼ର ଭାବେ ମଞ୍ଚରେ ଆବିର୍ଭୂତ ହୁଅନ୍ତି । ଅବଶ୍ୟ ବନ୍ଦୀର ସଂଜ୍ଞା ପୂର୍ବପରି ରହିଥାଏ । ବନ୍ଦୀ ନଂ.୧ ପୁରାଣ ସମୟର, ଆଉ ଏବେର ବନ୍ଦୀ ସ୍ୱାଧୀନତା ସଂଗ୍ରାମ ସମୟର । ଏସବୁ ଭିତରେ କାରାଗାର ହିଁ ଏକମାତ୍ର ସତ୍ୟଭାବେ ନିଜକୁ ସାବ୍ୟସ୍ତ କରିଛି । ଏହି ପର୍ଯ୍ୟାୟରେ ଜେଲର-ୱାର୍ଡ଼ର ସ୍ୱାଧୀନତା ସଂଗ୍ରାମୀ-ବନ୍ଦୀକୁ ଉଭୟ ଶାରିରୀକ ଓ ମାନସିକ ନିର୍ଯ୍ୟାତନା ଦେଇଛନ୍ତି । ମହାତ୍ମା ଗାନ୍ଧୀ... ବନ୍ଦେ ମାତରମ୍ ଭଳି ଶବ୍ଦକୁ ତୁଣ୍ଡରେ ନ ଧରିବା ପାଇଁ ବନ୍ଦୀକୁ ୱାର୍ଡ଼ର ଯେତେ ବାରଣ କଲେ ବି ବନ୍ଦୀ ଏଥିରୁ ବିଚ୍ୟୁତ ହୋଇନାହିଁ, ବରଂ ସେ ଅଧିକରୁ ଅଧିକ ପ୍ରତିବାଦୀ ହୋଇଉଠିଛି । ତା'ର ପ୍ରତିବାଦ ଯେତିକି ତୀବ୍ର ହୋଇଛି ସେହି ମାତ୍ରାରେ ତା' ଉପରେ ନିର୍ଯ୍ୟାତନା ବଢ଼ିଚାଲିଛି । କାରାଗାର ଭିତରେ ସେ ଦେଖିଛି ଜାତିର, ମୁକ୍ତିର ସ୍ୱପ୍ନ... ଗାଇଛି ମୁକ୍ତିର ସଂଗୀତ । ଏଠାରେ ବନ୍ଦୀର ପ୍ରତିବାଦ ଓ ୱାର୍ଡ଼ରର ଅତ୍ୟାଚାର ଜନିତ କଥୋପକଥନକୁ ଉଦ୍ଧାର କରାଯାଉ ।

ୱାର୍ଡ଼ର : ଶଳା ଏଇଟା ଜମା ବଦଳିବନି ଦେଖୁଛି । (ତଳୁ ତାକୁ ଝିଙ୍କିଆଣି ଠିଆ କରିଛି) ଆବେ ହେ କେତେଥର ତତେ ମନା ହୋଇଛି ଗାନ୍ଧୀ, ସ୍ୱରାଜ – ଏ ନାଁ ଗୁଡ଼ା ଧରିବୁନି । ଆଏଁ... (ବେଲ୍‌ଟ ଫିଟେଇଛି ଅଣ୍ଟାରୁ ଓ ଉଠେଇଛି) ମାରିମାରି ଶଳାକୁ ପଟା ଭଳିଆ ପକେଇଦେବି । ଜାଣିଛୁ, ଚିହ୍ନିଛୁ ମତେ । (ଦୂରରୁ ସମବେତ ସ୍ୱରରେ ଭାସି ଆସୁଥିଲା – ବନ୍ଦେ ମାତରଂ, ସୁଜଳାଂ ସୁଫଳାଂ ମଳୟଜ ଶୀତଳାଂ...)

ବନ୍ଦୀ : ହାଃ... ହାଃ... ହାଃ... ଶୁଣୁଚ ! ଶୁଣୁଚ ଦେଶ ମୁକ୍ତିର ଗାନ । ତୁମେକି, ତୁମ ଜେଲର ଏହାକୁ ଜମା ବନ୍ଦ କରିପାରିବେନି । ପୋଲିସ୍‌ର ଲାଠି, ଗୁଳି, ତୁମର ନାଲି ଆଖିକୁ ବେଖାତିର କରି ଏ ମୁକ୍ତି ସଂଗୀତ ହଜାର ହଜାର ସଂଗ୍ରାମଙ୍କ କଣ୍ଠରେ ଶୁଣାଯିବ । (ପୃ.୧୬)

ୱାର୍ଡ଼ରର ଅତ୍ୟାଚାରକୁ ଖାତିର ନକରି ମରଣାନ୍ତକ କଷ୍ଟ ପାଉଥିଲେ ବି ବନ୍ଦୀ ମୁକ୍ତିର ସଂଗୀତ ଗାଇବାକୁ ପଛଘୁଞ୍ଚା ଦେଇନି । ତା' ପାଖରେ ଫାଶୀ କି କଳାପାଣିର ଭୟ ତୁଚ୍ଛ ହୋଇ ପଡ଼ିଛି । ସେ କେବଳ ଭାରତ ବର୍ଷର ମୁକ୍ତିର ସ୍ୱପ୍ନ ଦେଖିଛି । ଜାତି ପ୍ରେମର

ସଂଗୀତ ଗାଇଛି । ସେଇ ସଂଗୀତ ଗାଇବା ଭିତରେ ଅକଥନୀୟ ନିର୍ଯ୍ୟାତନା ସହି ଟଳି ପଡ଼ିଛି ବନ୍ଦୀ । ସ୍ୱାଧୀନ ହୋଇଛି ଭାରତବର୍ଷ କିନ୍ତୁ ସ୍ୱାଧୀନତାର ମୋହଭଙ୍ଗ ଘଟିଛି । ପରାହତ ହୋଇଛି ମୁକ୍ତିର ଆଶା... ମୁକ୍ତ ହେବାର ଜୀବନ ସଂଗୀତ । ସ୍ୱପ୍ନଭଙ୍ଗର କରୁଣ ଦୃଶ୍ୟର ପ୍ରତ୍ୟକ୍ଷ ସାକ୍ଷୀ ହୋଇ ରହିଛି କାରାଗାର । କାରାଗାର ଯେମିତି ରହିବା କଥା ସେମିତି ଅଛି, କିନ୍ତୁ ମୁକ୍ତିର ଅର୍ଥ ବଦଳିଯାଇଛି, ବନ୍ଦୀର ସଂଜ୍ଞା ବଦଳିଯାଇଛି । ସ୍ୱାଧୀନ ଭାରତରେ ବନ୍ଦୀର ପରିବର୍ତ୍ତିତ – ବିଚିତ୍ର ରୂପକୁ ନାଟକର ତୃତୀୟ ପର୍ଯ୍ୟାୟରେ ଲକ୍ଷ୍ୟ କରାଯାଇପାରେ ।

ଏହି ପର୍ଯ୍ୟାୟରେ କାରାଗାରରେ ଦେଖିବାକୁ ମିଳେ ଜଣେ ରାଜନୈତିକ ବନ୍ଦୀକୁ । ଅନେକ ଅପରାଧ କରିଥିଲେ ବି ସେ ନିଜର ବାହୁବଳ – ଅର୍ଥବଳ ଯୋଗୁ ନିର୍ଦ୍ଦୋଷରେ ଖଲାସ ହୋଇଛି । ଜେଲ୍‌ରୁ ଖଲାସ ହେବା ପରେ ତାକୁ ଫୁଲମାଳ ଦେଇ ପାଛୋଟି ନିଆଯାଉଛି । ଏହି ନେତାମାନେ ଜେଲ୍‌ରେ ରହିବାପରି ନିଜକୁ ଗାନ୍ଧୀ-ଗୋପବନ୍ଧୁଙ୍କ ବିକଳ୍ପ ଭାବି ଗର୍ବ କରନ୍ତି । ଏହିଭଳି ସ୍ୱର୍ଣ୍ଣ କାତର ଘଟଣାକୁ ନାଟ୍ୟକାର ବେଶ୍ ବ୍ୟଙ୍ଗାତ୍ମକ ଭାବେ ଉପସ୍ଥାପନ କରିଛନ୍ତି । ଏଥିସହିତ ଏହି ରାଜୈତିକ ବନ୍ଦୀ ବା ନେତାଙ୍କର ଅସଲ ମୁଖାକୁ କିପରି ଖୋଲି ଦିଆଯାଇଛି ତାହା ନିମ୍ନୋକ୍ତ ସଂଳାପ ହିଁ ସୂଚେଇ ଦେଇଛି –

ନେତା : (ଅନୁଚ୍ଚ କଣ୍ଠରେ) ଦେଖିଲତ ! ମୋ ନାଁରେ ଯୋଉ ଇନ୍‌କ୍ୱାରୀ କମିଶନ ବସିଥିଲା ସବୁ କେମିତି ଫୁସ୍ ହେଇଗଲା । ପଶୁଖାଦ୍ୟ ଘୋଟଲା, ଟେଲିକମ୍ ଘୋଟଲା, ଜମି ଆବଣ୍ଟନ, ଗୃହ ଯୋଗାଣ ଘୋଟଲା - ସବୁ ଘୋଟଲାଯାକ ମୋ ନାଁରେ ଥିଲା ନାଁ । (ଉତ୍ତେଜିତ କଣ୍ଠରେ) କିହୋ ! ଏ ଘୋଟଲା ପଛରେ ବ୍ୟକ୍ତି ସ୍ୱାର୍ଥ ନାହିଁ । ସବୁ ପାର୍ଟି ପାଇଁ ହୋଇଛି । ପାର୍ଟି ପୁଣିଥରେ କ୍ଷମତାକୁ ଆସିଲେ ଦେଶ ଉଦ୍ଧାର ହେବ ।

କର୍ମୀ ଶେଷରେ କମିଶନ୍ ଆମକୁ ସାହାଯ୍ୟ କଲାନା । ସାକ୍ଷୀ ପ୍ରମାଣ ଆମେ ଆଗରୁ ସବୁ ଉଡ଼େଇ ଦେଇଥିଲେ ।

ନେତା : କରିବନି ସିଏ ପରା ଆମ ଲୋକଟା । ମୁଁ ମନ୍ତ୍ରୀ ଥିଲାବେଳେ I.A.S ପାଇ ନୂଆ ଜଏନ୍ କରିଥାଏ । ଗୋଟେ important postରେ ତାକୁ ରଖି ଦେଇଥିଲି । ଆଉ ଏଥର ଯଦି ଆମ ସର୍କାର ଆସେ ସେ ସମସ୍ତଙ୍କୁ ସୁପରସିଡ୍ କରି ଏକାଥରେ ଚିଫ୍ ସେକ୍ରେଟାରୀ ହୋଇଯିବ । (ପୃ.୨୨-୨୩)

କୁତ୍ସିତ ସ୍ୱାର୍ଥର ନେତା ଜଣକ ବନ୍ଦୀ ହେଲାପରେବି ନିଜର କୃତକର୍ମ ପାଇଁ ସାମାନ୍ୟ ଅନୁତାପ କରିବା ବଦଳରେ ନିଜର ଜେଲ୍ ଦଣ୍ଡକୁ ସୌଭାଗ୍ୟ ମଣିଛନ୍ତି । ଜେଲ୍ ସତେ ଯେମିତି ଏମାନଙ୍କ ପାଇଁ ବିଳାସର ପ୍ରକୋଷ୍ଠ । ଏହି ନେତାଙ୍କ ଚରିତ୍ର ମାଧ୍ୟମରେ ଭାରତୀୟ

ରାଜନୀତିର କଦର୍ଯ୍ୟ ସ୍ୱରୂପ ଓ ରାଜନେତାମାନଙ୍କର ପ୍ରକୃତ ଚିତ୍ରକୁ ଦେଖାଇଦିଆଯାଇଛି । ବନ୍ଦୀ ନେତା ଖଲାସ ହେବାପରେ ଜେଲର ଓ ୱାର୍ଡ଼ର ସତେ ଯେମିତି ପ୍ରମାଦ ଗଣିଛନ୍ତି- ଅନିଶ୍ଚିତ ଆଶଙ୍କାରେ । ନେତାଙ୍କ ଗୁଣ୍ଡାଗିରି ଆହୁରି ବଢ଼ିଯିବ ବୋଲି ସେ ଭାବିଛନ୍ତି । କାରାଗାର ଯେମିତି କାରାଗାର ଭିତରେ ନାହିଁ ବରଂ ବାହାରେ ଅଛି, ପ୍ରତ୍ୟେକ ବ୍ୟକ୍ତି ସତେଯେମିତି କାରାରୁଦ୍ଧ, ଏହିଭଳି ଏକ ଉପଲବ୍ଧି ଜେଲରଙ୍କ ଭିତରେ ସୃଷ୍ଟି ହୋଇଛି । ନାଟକର ଚତୁର୍ଥ ପର୍ଯ୍ୟାୟ ବା ଅନ୍ତିମ ପର୍ଯ୍ୟାୟରେ ତୃତୀୟ ପର୍ଯ୍ୟାୟର ଠିକ୍ ବିପରୀତ ଦୃଶ୍ୟ ଦେଖିବାକୁ ମିଳିଛି । ତାହା ହେଲା ସମୟର ବିବର୍ତ୍ତନରେ ବଦଳି ଯାଇଥିବା ବନ୍ଦୀର ଆଉ ଏକ ପରିବର୍ତ୍ତିତ ସଂଜ୍ଞା ।

ତୃତୀୟ ପର୍ଯ୍ୟାୟରେ ଦର୍ଶକଗଣ ଅନେକ ଅପରାଧ ଦୁର୍ନୀତି ସହ ଜଡ଼ିତଥିବା ବ୍ୟକ୍ତି କିପରି ନିର୍ଦ୍ଦୋଷରେ ଖଲାସ ହୁଅନ୍ତି ତାହା ଦେଖିଥିବା ବେଳେ ଚତୁର୍ଥ ପର୍ଯ୍ୟାୟରେ ବିନା ଦୋଷରେବି ଦୋଷୀ ସାବ୍ୟସ୍ତ ହୋଇ ଜେଲ୍‌ଦଣ୍ଡ ଭୋଗୁଥିବା ଜଣେ ବ୍ୟକ୍ତିଙ୍କୁ ଭେଟିଥାନ୍ତି । କଏଦୀ ନଂ.୭୭ ବିନାଦୋଷରେ ଜେଲ୍ ଭୋଗିଛି । ସେ ହିଁ ଲକ୍ଷ୍ୟ କରିପାରିଛି କାରାଗାରର ଶକ୍ତ ପାଚେରୀ କେମିତି ଦୁର୍ବଳ ହୋଇପଡ଼ିଛି । ନରହନ୍ତା-ଦୁର୍ନୀତି ଗ୍ରସ୍ତଙ୍କ ଆଡ଼୍‌ଡା ଜମିଛି କାରାଗାରରେ । ଏହିଭଳି ଏକ ସଙ୍କଟମୟ ବେଳରେ କଏଦୀ ନଂ.୭୭ ପ୍ରତ୍ୟେକ ନିର୍ଦ୍ଦୋଷ ବ୍ୟକ୍ତିର ପ୍ରତିନିଧି ପାଲଟିଛି- ଯେଉଁମାନେ ଦୋଷ ନକରି ବି କାରାଗାର ଭିତରକୁ ଆସିଛନ୍ତି । କଏଦୀ ନଂ.୭୭ ପରି ଜଣେ ସମାଜସଚେତନଶୀଳ ପଥପ୍ରାନ୍ତ ନାଟକ କରୁଥିବା ବ୍ୟକ୍ତିକୁ ସମାଜର ଘୁଣଖିଆ ବ୍ୟବସ୍ଥା ବିରୋଧରେ ପ୍ରତିବାଦ କରିବା ଯୋଗୁ ମିଳିଛି କାରାଦଣ୍ଡ । ରାଜନୀତିକ ବ୍ୟବସ୍ଥାର ଅନ୍ଧାରି ଦିଗ ପ୍ରତି ଆକ୍ଷେପ କରି ନାଟକ ମାଧ୍ୟମରେ ବ୍ୟବସ୍ଥାକୁ ଦୋହଲାଇ ଦେଉଥିବା ବ୍ୟକ୍ତିକୁ ପୁରସ୍କାର ରୂପେ ମିଳିଛି ଆତଙ୍କବାଦୀର ପରିଚୟ । ରାଜନୀତିକ କର୍ମୀମାନେ ନେତାଙ୍କ ପ୍ରରୋଚନାରେ ସେହି ବ୍ୟକ୍ତିଙ୍କ ପତ୍ନୀ ଓ ପୁତ୍ରକୁ ବୋମା ଫିଙ୍ଗି ହତ୍ୟା କରିଛନ୍ତି । ସମାଜରେ ଆତଙ୍କ ସୃଷ୍ଟି କରୁଥିବାର ମିଛ କାରଣରୁ ବ୍ୟକ୍ତିଟି ବିନା ଦୋଷରେ ଦୋଷୀ ସାବ୍ୟସ୍ତ ହୋଇଛି । ଆଉ ସେ ପରିଚିତ ହୋଇଛି କଏଦୀ ନଂ.୭୭ ଭାବରେ । ଯେତେବେଳେ ଜେଲର କଏଦୀ ନଂ.୭୭ର କାରାମୁକ୍ତିର ଘୋଷଣା କରିଛନ୍ତି ସେତେବେଳେ କଏଦୀ ଜଣଙ୍କ ଏହି କାରାଗାରର ବାହାରକୁ ଯିବାକୁ ରାଜି ହୋଇନାହାନ୍ତି । ତା'ର ଉଦ୍ଦେଶ୍ୟ ଏହି ସଂଳାପରୁ ସ୍ପଷ୍ଟ ହୋଇଥାଏ ।

"କାହିଁକି ମୁଁ ମୁକ୍ତ ହୋଇ ଜେଲ ବାହାରକୁ ଯିବି କହିଲ ? ଏଇ ଜେଲ୍, ବନ୍ଦୀ ଶାଳାଠାରୁ ଆହୁରି ଭୟଙ୍କର ଅବସ୍ଥା ସେଠି । ନରହନ୍ତା ପିଶାଚମାନେ ସେଠି ବୁଲୁଛନ୍ତି । ଏଠିଥିବା ଦାଗୀ ଆସାମୀମାନଙ୍କଠାରୁ ସେମାନେ ଆହୁରି ଭୀଷଣ, ମାରାତ୍ମକ । ଚାରିପଟେ ଜେଲ୍‌ଠାରୁ ଆହୁରି ଶକ୍ତ ପାଚେରୀ । ( କିଛି ସମୟ ରହିଛି ଓ ପିଲାଙ୍କ ପରି କାନ୍ଦିଛି) ନା...

ନା... ମୁଁ ଏଠି ମଲାଯାଏଁ ରହିବି । ଏଇ ବନ୍ଦୀଶାଳାକୁ ଜୀବନର ତୀର୍ଥକ୍ଷେତ୍ର ରୂପେ ବରିନେବି । (ଆବେଗରେ ଜେଲରର ଦୁଇଗୋଡ଼କୁ ଜାବୁଡ଼ି ଧରି) ମତେ ମନା କରନା ଜେଲର... ଏହି ତୀର୍ଥକ୍ଷେତ୍ର ଦିନେ ମୁକ୍ତିର ଆଲୁଅ ଦେଖାଇଥିଲା... ସ୍ୱପ୍ନ ସାର୍ଥକ କରିଥିଲା । ନା...ନା... ମୁଁ ଜମା ଏହାକୁ ଛାଡ଼ି ଯିବନି... ଯିବିନି ।" (ପୃ.୩୯)

କଏଦୀ ନଂ.୭୭ଙ୍କୁ ୱାର୍ଡ଼ର ଭିତରକୁ ଘୋଷାରି, ଘୋଷାରି ନେବାପରେ ନାଟକର ଯବନିକାର ସୂଚନାଦେଇ ମଞ୍ଚରେ ପୁଣି ଉପସ୍ଥିତ ହୁଅନ୍ତି କାରାଗାର । ଶାସକର ନିର୍ଦ୍ଦେଶର ବାରମ୍ବାର ଭଙ୍ଗାଯାଇ ପୁଣି ଗଢ଼ା ହୋଇଥାଏ କାରାଗାର । ଏଣେ ମଣିଷର ଚେତନା ସ୍ତରରେ ବି ଲାଗିଥାଏ ଏହି କାରାଗାରର ଭାଙ୍ଗିବା ଆଉ ଗଢ଼ିବାର ରୀତି । କାରାଗାରର ପ୍ରକୃତ ଅସ୍ତିତ୍ୱ କାରାଗାର ଭିତରେ ନାହିଁ ଅଛି ତା ବାହାରେ । ପୁଣି କାରାଗାର ଭିତରର କାରାଗାର ଅପେକ୍ଷା ବାହାରର କାରାଗାର ବୀଭତ୍ସ – ଭୟଙ୍କର ହୋଇପଡ଼ିଛି । ଯେଉଁଠି ସାଧାରଣ ମଣିଷର ସ୍ୱାଧୀନ ଚେତନା ନିଷ୍ପେଷିତ ହୋଇପଡ଼ିଛି । ଏହା ହିଁ ସାବ୍ୟସ୍ତ କରିଛନ୍ତି ନାଟ୍ୟକାର । କାରାଗାର କହିଛି –

"ମୁକ୍ତି ସୁଦୂର ପରାହତ ବନ୍ଧୁଗଣ । ଚତୁର୍ଦ୍ଦିଗରେ ଅଦୃଶ୍ୟ ବାଡ଼ । ମୁକ୍ତି ଗୋଟେ ଭୁଲ୍ ଶବ୍ଦ । ପାପ ଆଉ ପୂଣ୍ୟ ନୀତି ଆଉ ଅନୀତିର ସୀମାରେଖା ପରି ବନ୍ଦୀ ଓ ମୁକ୍ତିର ସୀମାରେଖା ବି ଅସ୍ପଷ୍ଟ – ହାଃ... ହାଃ... ହାଃ... ! କାରାଗାର ଭାଙ୍ଗୁଥାଏ ପୁଣି ଗଢ଼ା ହେଉଥାଏ ବାରମ୍ବାର ।" (ପୃ.୪୦)

କାରାଗାର ଓ କାରାଗାରର ସଂଜ୍ଞାକୁ deconstruct କରି ନାଟ୍ୟକାର ତାଙ୍କ ନାଟ୍ୟକୁଶଳତାର ପରିଚୟ ଏଥିରେ ଦେଇଛନ୍ତି । ପର୍ଯ୍ୟାୟକ୍ରମେ ଚାରୋଟି ଭାଗ / ପର୍ଯ୍ୟାୟ ଦେଇ ନାଟକଟି ପରିବେଷିତ ହୋଇଛି । ଏକଥା ସତ ଯେ କୌଣସି ନିର୍ଦ୍ଦିଷ୍ଟ କାହାଣୀକୁ କେନ୍ଦ୍ରକରି ଏ ନାଟକଟି ରଚିତ ହୋଇନାହିଁ । ଏହା ଏକ ଅଣକାହାଣୀ ପ୍ରଧାନ ନାଟକ । ଏହି ନାଟକର ବକ୍ତବ୍ୟ ଶାଣିତ ହେବା ସହ ସମାଜ ପ୍ରତି ନାଟ୍ୟକାରଙ୍କର ଅଙ୍ଗୀକାରବଦ୍ଧତାକୁ ସୂଚାଇ ପାରିଛି । ଏଥିସହ ନାଟକ ମାଧ୍ୟମରେ ଦର୍ଶକଙ୍କ ଭିତରେ ନୂତନତାର ଆବାହନୀ ଶୁଣାଇବା ସଙ୍ଗେ ସଙ୍ଗେ ପ୍ରଥାବଦ୍ଧତା ଓ ପଚମାନ ବ୍ୟବସ୍ଥାର ଧ୍ୱଂସ ସାଧନ ପାଇଁ ଭୈରବର ଝଙ୍କାର ନାଟ୍ୟକାର ସୃଷ୍ଟି କରିପାରିଛନ୍ତି । କଥାଭାଗର ଆବଶ୍ୟକତା ଅନୁଯାୟୀ ନାଟ୍ୟକାର ଭାଗବତ, ଜାତୀୟ କବି ବୀର କିଶୋରଙ୍କ କବିତାର ଅନେକ ପଦ ଓ ନିଜରଚିତ ସଙ୍ଗୀତଗୁଡ଼ିକ ନାଟକ ଭିତରେ ଖଞ୍ଜିଛନ୍ତି । ଏଥିସହ 'କାରାଗାର'ର ବ୍ୟଞ୍ଜନାତ୍ମକ ଉପସ୍ଥାପନା ଓ ତାକୁ ଚରିତ୍ରଭାବେ ଅବତାରଣା କରି ତା'ର ଆତ୍ମ କଥନୀ ମାଧ୍ୟମରେ ନାନା ପ୍ରକାରର ଦୃଶ୍ୟ ଏବଂ କାବ୍ୟିକ ବ୍ୟଞ୍ଜନା ସୃଷ୍ଟି କରିବାରେ ନାଟ୍ୟକାର ସଫଳ ହୋଇଛନ୍ତି । ପୌରାଣିକ ଯୁଗର ଘଟଣା, ଐତିହାସିକ ଘଟଣା ଏବଂ ସାଂପ୍ରତିକ ଘଟଣାର ଅବତାରଣା ଭିତରେ ଉପଯୁକ୍ତ

ସଂଳାପ ସୃଷ୍ଟି କରିବାରେ ନାଟ୍ୟକାରଙ୍କ ଦକ୍ଷତା ଓ କୌଶଳଟି ପରିଲକ୍ଷିତ ହୋଇଥାଏ । ନାଟକର ଚରିତ୍ରମାନେ ସମୟର ବିବର୍ତ୍ତନ ଭିତରେ ନୂଆ ରୂପରେ ଯଥାଯଥ ଭାବେ ଉପସ୍ଥାପିତ ହୋଇଛନ୍ତି । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କୌଣସି ଦୃଶ୍ୟ ବିଭାଜନ ନହୋଇ ନିରବଚ୍ଛିନ୍ନ ଭାବରେ ନାଟକର ଘଟଣା ଓ ଦୃଶ୍ୟ ଗୁଡ଼ିକର ଅବତାରଣା କରାଯାଇଛି । ତେବେ ମଞ୍ଚ କୌଶଳର ସାହାଯ୍ୟ ନେଇ ନାଟ୍ୟକାର କାରାଗାରକୁ ଚରିତ୍ର ଭାବେ ଉପସ୍ଥାପନ କଲାବେଳେ ମଞ୍ଚର ପଶ୍ଚାତ ଭାଗରେ କାରାଗାରର ଏକ ଭିଜୁଆଲ ଇଫେକ୍ଟ ଦେଇ ବେଶ୍ ପ୍ରତୀକାତ୍ମକ ଭାବେ କାରାଗାରକୁ ଯେପରି ଦର୍ଶାଇଛନ୍ତି ତାହା ନିଶ୍ଚିତ ଭାବରେ ପ୍ରଶଂସନୀୟ । ବିଘଟନବାଦର କୌଶଳ ଓ ଉତ୍ତର ଆଧୁନିକ ନାଟ୍ୟରୀତିର ପ୍ରୟୋଗରେ ମଣ୍ଡିତ ହୋଇଛି ନାଟ୍ୟକାର ବିଜୟ ଶତପଥୀଙ୍କ କାରାଗାର ଚରିତ୍ର ଓ ସାମଗ୍ରିକ ଭାବରେ 'କାରାଗାରର କାହାଣୀ' ନାଟକ ।

କହିବାକୁ ଗଲେ 'କାରାଗାରର କାହାଣୀ' ନାଟକରେ ରହିଛି ବଦଳି ଯାଇଥିବା କାରାଗାରର ସଂଜ୍ଞାର ନିଛକ ଚିତ୍ର । ପୁରାଣ ଓ ଇତିହାସରେ ଯେଉଁ କାରାଗାର ପରିବର୍ତ୍ତନର ଏନ୍ତୁଡ଼ିଶାଳ ହୋଇଥିଲା, ତାହା ସଂପ୍ରତିକ ସମୟରେ ନିଜର ଅସ୍ତିତ୍ୱର ବାହାରକୁ ଚାଲିଆସିଛି । ସେଠାରେ ପ୍ରତ୍ୟେକ ବ୍ୟକ୍ତି କାରାରୁଦ୍ଧ - ଯନ୍ତ୍ରଣା ଜର୍ଜରିତ । ଭ୍ରଷ୍ଟାଚାର ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କ ପାଇଁ ସେ ପାଲଟି ଯାଇଛି ବିଳାସ ବ୍ୟସନର ପ୍ରକୋଷ୍ଠ । ଏବେ ଆଉ କାରାଗାର ପରିବର୍ତ୍ତନର ବାର୍ତ୍ତାରେ ଆଲୋକିତ ହେଉନାହିଁ ବରଂ ଅସତ୍ୟର କାଳିମାରେ ଲୁଚିଯାଉଛି, ଏହା ହିଁ ନାଟକଟିକୁ ଦେଖିଲା ପରେ ଅନୁଭବ କରିହେବ । ସତ୍ୟ-ଅସତ୍ୟ ଉଭୟର ଏନ୍ତୁଡ଼ିଶାଳରେ 'କାରାଗାରର କାହାଣୀ' ସତ୍ୟର କାହାଣୀ-ନୂଆ ଇତିହାସର ସଂଭାବିତ ଆଲୋକର କାହାଣୀ, କାରାରୁଦ୍ଧ ମଣିଷର ଚିରନ୍ତନ କାହାଣୀ ।



# ଅନ୍ଧସମାଜର ଜଡ଼ ବ୍ୟବସ୍ଥା
# 'ପକା ପଇସା ଦେଖ୍ ତାମ୍‌ସା'

ମୋଗଲ ଶାସନ ସତେଅବା ଓଡ଼ିଶାର ଜାତୀୟ ଜୀବନକୁ ପଙ୍ଗୁ କରିଦେଇଥିଲା । ମୋଗଲଙ୍କ ଅତ୍ୟାଚାରରେ ନିରୂପାୟ ଓଡ଼ିଶାବାସୀ ନିଜକୁ ପଥର କରିଦେଇ ସବୁ କଷ୍ଟ ନିର୍ଯ୍ୟାତନା ସହି ଚାଲିଥିଲେ । ଏମିତି ଏକ ସମୟରେ ଉତ୍କଳର ରାଜନୀତିକ ଅସ୍ଥିରତା, ମୋଗଲ ଶକ୍ତିର ଘନ ଘନ ଆକ୍ରମଣ, ଆଞ୍ଚଳିକ ରାଜ୍ୟମାନଙ୍କର ପରସ୍ପର ମଧ୍ୟରେ ବିବାଦ ସାମାଜିକ, ରାଜନୀତିକ ଜୀବନରେ ସୃଷ୍ଟି କରିଥିଲା ଅସ୍ଥିରତା । ମୋଗଲ ଶାସକର ଅତ୍ୟାଚାର ଓଡ଼ିଶା ବାସୀଙ୍କ ମନରେ ସୃଷ୍ଟି କରିଥିଲା 'ରମ୍ଭାପତ୍ର ପ୍ରାୟ ଭୀତ'ର ଅବସ୍ଥା । ନିୟତିର ଅଦୃଶ୍ୟ ପଟ୍ଟଭୂମିରେ ମୋଗଲ ଶାସନର ଅବସାନ ଘଟିଲା । କିନ୍ତୁ ଏହାପରେ ଓଡ଼ିଶାର ଜାତୀୟ ଜୀବନରେ ପରିବର୍ତ୍ତନ ବଦଳରେ ଆସିଥିଲା, ଆଉ ଏକ ସୂର୍ଯ୍ୟପରାଗ । ମୋଗଲମାନଙ୍କ ପରିବର୍ତ୍ତେ ମରହଟ୍ଟାମାନେ ହେଲେ ଓଡ଼ିଶାର ଶାସକ । ଏମିତି ମୋଗଲ-ମରହଟ୍ଟା ଇଂରେଜ ଶାସନର ଅବସାନ ପରେ ଭାରତରେ ଜନ୍ମନେଲା ସ୍ୱାଧୀନତାର ବାଳସୂର୍ଯ୍ୟ । ମୋଗଲ-ମରହଟ୍ଟା ଚାଲିଯାଇଥିଲେ । ଇଂରେଜମାନେ ବି ଅପସରି ଯାଇଥିଲେ । ଆଉ ସେମାନଙ୍କ ଜାଗାରେ ଆସିଲେ ଆମ ଦେଶୀ ଶାସକ । ମାତ୍ର ଅବସ୍ଥା ଯେମିତିକି ସେମିତି । ଯୁଗ ଯୁଗ ଧରି ମୁଷ୍ଟିମେୟ ଗୋଷ୍ଠୀର ସାଧାରଣ ମଣିଷ ଉପରେ ଅତ୍ୟାଚାର ଯେମିତି ଚାଲିଥିଲା ଏବେ ସେମିତି ଚାଲିଛି । ଏବେ ସେ ମୋଗଲ ଶାସନ ନାହିଁ ସତ, ମାତ୍ର ସାମାଜିକ ଜୀବନ ମୋଗଲ ମରହଟ୍ଟା ଶାସନଠାରୁ ସାଂଘାତିକ ହୋଇଉଠିଛି । ଆମରି ଲୋକେ ନୂଆ ମୋଗଲ - ମରହଟ୍ଟାର ରୂପ ନେଇ ଆମକୁ ଶୋଷି ଚାଲିଛନ୍ତି । ସବୁ କିଛି ପ୍ରହସନ, ସବୁକିଛି ତାମ୍‌ସା । ଏମିତି ଏକ ବୃହତ୍ତର ସାମାଜିକ - ରାଜନୀତିକ ସମସ୍ୟାର ଅବତାରଣା କରି ନାଟ୍ୟକାର ଡ. ବିଜୟ କୁମାର ଶତପଥୀ 'ପକାପଇସା ଦେଖ୍ ତାମ୍‌ସା' ନାଟକ ରଚନା କରିଛନ୍ତି । ସାଂପ୍ରତିକ ସମୟର ତଥା ଏହି ଅନ୍ଧ ସମାଜର ଜଡ଼ପ୍ରାୟ ଶାସନ ବ୍ୟବସ୍ଥାର ନିଚ୍ଛକ ଚିତ୍ର ନାଟକ 'ପକା ପଇସା ଦେଖ୍ ତାମ୍‌ସା'ରେ ଦେଖିବାକୁ ମିଳେ । ନାଟକର ବକ୍ତବ୍ୟ ସଂପର୍କରେ ତଥା ନାଟକର ଉଦ୍ଦେଶ୍ୟ ସଂପର୍କରେ ନାଟ୍ୟକାରଙ୍କ ନିଜସ୍ୱ ସଂଳାପକୁ ଏଠାରେ ଉପସ୍ଥାପନ କରାଯାଇପାରେ । 'ପକା ପଇସା ଦେଖ୍ ତାମ୍‌ସା' ନାଟକରେ - ''ମୁଁ ସାଂପ୍ରତିକ କାଳର

ରାଜନୈତିକ ସାମାଜିକ ଓ ସାଂସ୍କୃତିକ ବିଧି ବ୍ୟବସ୍ଥା ପ୍ରତି କଠୋର ବ୍ୟଙ୍ଗ ଓ ବିଦ୍ରୂପର ସ୍ୱର ଉତ୍ତୋଳନ କରିଛି । ନାଟକର ପ୍ରାରମ୍ଭରେ ମୋଗଲ ତାମ୍‌ସାର ଆଙ୍ଗିକ ନିଆଯାଇଛି ଓ ତାହା ସଂପ୍ରସାରିତ ହୋଇଛି ଆଜିର ତାମ୍‌ସା ଆଡ଼କୁ । ତେଣୁ ଚରିତ୍ରମାନେ ଯେତେଦୂର ଫାର୍ସିକାଲ ହେବା କଥା ସେହି ଅନୁଯାୟୀ ସଂଯୋଜିତ ହୋଇଛନ୍ତି । ନାଟକରେ ନାଟକର କାହାଣୀ ପରିବେଷିତ ହେଲାବେଳେ ମୋଗଲ ତାମ୍‌ସାର ରୀତି ସାଙ୍ଗକୁ ଆଜିର ପପୁଲାର ମ୍ୟୁଜିକ୍ ଓ ଡ୍ୟାନ୍ସର ସାହାଯ୍ୟ ନିଆଯାଇଛି । ଫଳରେ ତାମ୍‌ସାର ଆଙ୍ଗିକ ମଧ୍ୟ ଦେଇ ଏବେ ଆମର ଚତୁଃପାର୍ଶ୍ୱରେ ସତକୁ ସତ ଘଟିଚାଲିଥିବା ତାମ୍‌ସା ମଧ୍ୟରୁ କେତେକର ଦୃଶ୍ୟପଟ୍ଟକୁ ଏଥିରେ ଧରି ରଖାଯାଇଛି ।" (ଆତ୍ମନେପଦୀ - 'ପକା ପଇସା ଦେଖ୍ ତାମ୍‌ସା')

'ପକା ପଇସା ଦେଖ୍ ତାମ୍‌ସା' ନାଟକଟିରେ ସାଂପ୍ରତିକ ସମୟର ରାଜନୀତିକ-ସାମାଜିକ-ସଂସ୍କୃତିକ-ଧାର୍ମିକ ଜଡ଼ ବ୍ୟବସ୍ଥା ପ୍ରତି କଠୋର ବିଦ୍ରୂପ ଦେଖିବାକୁ ମିଳେ । ମୋଗଲ ତାମ୍‌ସାର ଆଙ୍ଗିକକୁ ମାଧ୍ୟମକରି ନାଟକର କଥାଭାଗ ଲମ୍ୱି ଆସିଛି ଏବେର ବିଚିତ୍ର ସମାଜ ବ୍ୟବସ୍ଥା ଆଡ଼କୁ । ଆମେ ଏବେ ଏମିତି ଏକ ସମାଜରେ ବାସକରୁଛେ ଯେଉଁଠି ସମସ୍ତ ଅପକର୍ମ-ଅନ୍ୟାୟ ଦେଖିବି ଆମେ ଆଖିବୁଜି ଦେଉଛେ । ଆମେ ସଭିଏଁ ଏଠି ଅନ୍ଧ । ଏ ଅନ୍ଧ ସମାଜରେ ପ୍ରତିଟି ବ୍ୟବସ୍ଥା ଯେମିତି ଅଚଳ ଓ ପ୍ରାଣହୀନ । ସେହି ବ୍ୟବସ୍ଥାର ମଞ୍ଚରୂପ ହିଁ 'ପକା ପଇସା ଦେଖ୍ ତାମ୍‌ସା' ।

ନାଟକର ପ୍ରଥମ ଦୃଶ୍ୟରେ ମଞ୍ଚ ଆଲୋକିତ ହେବା ବେଳକୁ ମୋଗଲ ସମୟର ତାମ୍‌ସାର ଦୃଶ୍ୟ ଦେଖିବାକୁ ମିଳିଥାଏ । ମୋଗଲ ତାମ୍‌ସାର ସାଙ୍ଗୀତିକ ପରିବେଶରେ ବାଧା ସୃଷ୍ଟିକରି ଜନୈକ ଦର୍ଶକ ଗ୍ୟାଲେରୀରୁ ଚିତ୍କାର କରି ଏ ତାମ୍‌ସା ବଦଳରେ ନାଟକ ପ୍ରଦର୍ଶନ କରିବା ଲାଗି ପ୍ରତିବାଦ କରିଛି । ତେବେ ନାଟ୍ୟ ନିର୍ଦ୍ଦେଶକ ମଞ୍ଚକୁ ଆସି ନାଟକ ଦେଖାଇବାର ପ୍ରତିଶ୍ରୁତି ଦେଇଛନ୍ତି । ନିର୍ଦ୍ଦେଶକଙ୍କର ପ୍ରସ୍ଥାନ ପରେ ମଞ୍ଚକୁ ଆଗମନ କରିଛନ୍ତି ନଟନଟୀ । ଦୁହେଁ ଟଙ୍କାର ମହତ୍ତ୍ୱ କିପରି ଆଜିର ସମାଜରେ ମାନବିକତା, ମୂଲ୍ୟବୋଧକୁ ଦଳି ଦେଇଛି ତାହା ନୃତ୍ୟ-ଗୀତ ମାଧ୍ୟମରେ ପ୍ରଦର୍ଶନ କରିଛନ୍ତି ।

ନଟ-ନଟୀଙ୍କ ଡୁଏଟ୍ ପରେ ମଞ୍ଚରେ ଆବିର୍ଭାବ ଘଟିଛି ରାଜନୀତିକ ନେତା ଜନ କଲ୍ୟାଣ ଏବଂ ଠିକାଦାରଙ୍କର । ଆଜିର ସମାଜରେ ଘଟୁଥିବା ଠିକାଦାରୀ ବ୍ୟବସ୍ଥା, ରାଜନୀତିକ ଦଲାଲୀ ଓ ବ୍ୟଭିଚାର ସମାଜକୁ ଯେଭଳି ଛାରଖାର କରିଚାଲିଛି ତାହା ତାଙ୍କ ଚରିତ୍ରରୁ ଜଣାପଡ଼େ । ଦୁର୍ଗମ-ଅପନ୍ତରା ଅଞ୍ଚଳରେ ବାସ କରୁଥିବା ମଳି ମୁଣ୍ଡିଆଙ୍କ ଦୁଃଖ-କଷ୍ଟ ପ୍ରତି ନେତାମାନଙ୍କର ଲୋକ ଦେଖାଣିଆ ପ୍ରୀତିକୁ ନାଟ୍ୟକାର ଚମତ୍କାର ଭାବେ ଦେଖାଇଛନ୍ତି ।

ଜନକଲ୍ୟାଣ : ଇସ୍... ଲୋକମାନେ କି ଦୁଃଖରେ ଥିବେ ଠିକାଦାର । ମୋ ପ୍ରାଣ ଖାଲି କାନ୍ଦି ଉଠୁଛି । (ସେ କାନ୍ଦିବାର ଛଳନା କରୁଛନ୍ତି ଓ ପକେଟରୁ ରୁମାଲ୍ କାଢ଼ି ଆଖି ପୋଛିଛନ୍ତି)

ଠିକାଦାର : (ତାଙ୍କ ଦେଖାଦେଖି ଜୋର୍‌ରେ କାନ୍ଦି ଉଠିଛନ୍ତି) ସାଆରେ... ସତେ ସାଆରେ... କି ଦୁଃଖ ଭୋଗୁଥିବେ ଏ ଅଞ୍ଚଳର ଲୋକେ । ହାୟ ! ହାୟ ! ତା ଆଗରୁ ମୋର ପ୍ରାଣ ନଗଲା କାହିଁକି... ହାୟ... ହାୟ । ସାଆରେ ଆମର ଲୋକଗୁଡ଼ାକ ପାଇଁ କେତେ ବେସ୍ତ ହେଉଛନ୍ତି । (ପୃ.୧୯)

ସାଧାରଣ ଜନତାର ସମସ୍ୟା ଓ ଦୁଃଖ ଆଜିର ନେତାମାନଙ୍କ ପାଇଁ ପ୍ରକୃତରେ କୁମ୍ଭୀର କାନ୍ଦଣା ପରି । ସେମାନଙ୍କ ଦୁଃଖକୁ ଏ ନେତାମାନେ ବିଦ୍ରୂପ କରନ୍ତି । ଠିକାଦାର, ବେପାରୀଠାରୁ କମ୍ପାନୀ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରୁ ଚାନ୍ଦା ନିଅନ୍ତି ନେତାଗଣ । ତାହା ଆଜିର ସମାଜରେ ଘଟୁଥିବା ଦୃଶ୍ୟର ହେଉଛି ବାସ୍ତବ ଅବତାରଣା । ଯେଉଁମାନେ ସେମାନଙ୍କ ଅନ୍ୟାୟ ଶାସନ ବ୍ୟବସ୍ଥା ବିରୋଧରେ ମୁଣ୍ଡଟେକନ୍ତି, ଏମାନେ ସେହି ବିଦ୍ରୋହୀଙ୍କୁ ଦମନ କରନ୍ତି । ସତ୍ୟର କଣ୍ଠରୋଧ କରି ଅସତ୍ୟ ନିଜର ବାଣୀ ଶୁଣାଏ । ଏହାହିଁ ଜନ କଲ୍ୟାଣ ଓ ଠିକାଦାରଙ୍କ ପାଖରେ ଦେଖିବାକୁ ମିଳେ ।

ଜନକଲ୍ୟାଣଙ୍କ ପରି ନେତାମାନେ ନିଜକୁ ଜନତାର ସେବକ ବୋଲି ଦେଖେଇହୋଇ ଲୋକଙ୍କ ମନରେ ବିଶ୍ୱାସର କଳାପଟି ବାନ୍ଧିଦେଇ ସେମାନଙ୍କୁ ଶୋଷି ଚାଲିଥାନ୍ତି । ଠିକାଦାରମାନେ ଏମାନଙ୍କ ହାତବାରିସି ହୋଇ ଜନତାଙ୍କ ପାଇଁ କରାଯାଉଥିବା ଯୋଜନାରୁ ନିଜର ମୁନାଫା ଉଠାଇନିଅନ୍ତି । ଆଜିର ସମାଜରେ ନେତାଏ କୁରାଢ଼ି ହେଲାବେଳେ ଠିକାଦାରମାନେ ହିଁ ବେଣ୍ଟ ସାଜିଛନ୍ତି । ଲୋକନାଥ ପରି ଜଣେ ଅପାଠୁଆ ନିରୀହ ମଣିଷର ପାରିବାରିକ ଜୀବନକୁ ଛାରଖାର କରିଦେବାରେ ଏପରି ବ୍ୟକ୍ତିମାନଙ୍କର ହାତ ରହିଛି । ପରିତାପର କଥା ଯେଉଁ ପ୍ରତିନିଧିମାନଙ୍କୁ ଲୋକନାଥ ପରି ସାଧାରଣ ମଣିଷ ମାନେ ନିର୍ବାଚିତ କରନ୍ତି, ସେହି ପ୍ରତିନିଧିଙ୍କ ପାଖରେ ଏମାନେ ନିଜର ହାରିଗୁହାରି ଶୁଣାଇବା ତ ଦୂରର କଥା ବରଂ ସେମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହୁଅନ୍ତି । ଧାର୍ମିକ ବିଶ୍ୱାସର ଆଢୁଆଳରେ ଲୋକନାଥର ଭଉଣୀକୁ ହତ୍ୟା କରାଯାଇଥିଲେ ବି ଲୋକନାଥ ନ୍ୟାୟ ପାଇନି । ଲୋକନାଥର ଭଉଣୀ ଦୁଃଖୀ ଦେହଲୋଭୀ ଶାଗୁଣାମାନଙ୍କ ଶିକାର ହୋଇଛି, ମାତ୍ର ନେତା-ପୁଲିସ୍ ଅଫିସରଙ୍କ ଅନ୍ଧାରୀ ଶାସନ ଭିତରେ ତାହା ମିଥ୍ୟା ବୋଲି ପ୍ରମାଣିତ ହୋଇଛି । ଲୋକନାଥ ନେତାଙ୍କୁ ଗୁହାରି ଜଣାଇବାକୁ ଆସିଛି, କିନ୍ତୁ ଠିକାଦାରଙ୍କ ପୋଷାଗୁଣ୍ଡାଙ୍କ ଦ୍ୱାରା ମାଡ଼ ଖାଇ ଲହୁଲୁହାଣ ହୋଇଛି । ଅବଶ୍ୟ ପ୍ରଭାକର ପିସ୍ତଲଧରି ଗୁଣ୍ଡାମାନଙ୍କୁ ଫାଇରିଂ କରିବାର ଉଦ୍ୟମ କରିବାରୁ ଲୋକନାଥ ନିଶ୍ଚିତ ମୃତ୍ୟୁମୁଖରୁ ବଞ୍ଚି ଯାଇଛି ।

ନାଟକର ଦ୍ୱିତୀୟ ଦୃଶ୍ୟରେ ଭାରତୀୟ ଆଧ୍ୟାତ୍ମିକ ଧାର୍ମିକ ବିଶ୍ୱାସର ଆଢୁଆଳରେ ଥିବା ସୁବିଧାବାଦୀ ଧାର୍ମିକ ଛଦ୍ମତାକୁ ଲକ୍ଷ୍ୟ କରାଯାଇଥାଏ । ଭଣ୍ଡ ଧର୍ମଗୁରୁ ଭୋଳାନନ୍ଦ ଓ ତାଙ୍କ ଶିଷ୍ୟ ରସାନନ୍ଦ ମିଥ୍ୟା ଧର୍ମ ବିଶ୍ୱାସକୁ ଆଧାର କରି ସାଧାରଣ ଜନତାଠାରୁ ଉଚ୍ଚ ପଦସ୍ଥ ବ୍ୟକ୍ତିଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଶୋଷଣ କରିଛନ୍ତି । ଏହି ଦ୍ୱିତୀୟ ପର୍ଯ୍ୟାୟରେ ଭଣ୍ଡ

ଧର୍ମଗୁରୁମାନଙ୍କୁ ଭଗବାନଭାବେ ସ୍ୱୀକାର କରି ଉଚ୍ଚବର୍ଗର ବ୍ୟକ୍ତିମାନେ ମଧ୍ୟ ସାଂଘାତିକ ଭାବରେ ଠକି ହୋଇଛନ୍ତି । ପୂର୍ବ ଦିଗରୁ ଆସିଥିବା ଶିଳ୍ପପତି ରାମନାରାୟଣ ଜନ କଲ୍ୟାଣଙ୍କ ଦ୍ୱାରା ଲୁଟ୍‌ର ଶିକାର ହୋଇ ଚେତି ନଥିବା ବେଳେ ପୁଣି ଭୋଳାନନ୍ଦଙ୍କୁ ଅର୍ଥଦେଇ ତାଙ୍କଠାରୁ ଆଶୀର୍ବାଦ ଭିକ୍ଷା କରିଛନ୍ତି । ରାମ ନାରାୟଣଙ୍କର ଅଖଣ୍ଡ ବିଶ୍ୱାସର ଫାଇଦା ଉଠାଇ ଧର୍ମଗୁରୁ ଭୋଳାନନ୍ଦ ତାଙ୍କୁ ଶୋଷଣ କରି ଚାଲିଛନ୍ତି । ରାମନାରାୟଣଙ୍କ ପରେ କୀର୍ତ୍ତନ ବିହାରୀ ରଣାଙ୍କ ପରି କୁତ୍ସିତ ବ୍ୟକ୍ତି ବି ଭୋଳାନନ୍ଦଙ୍କ ଶରଣାପନ୍ନ ହୋଇଛି । କୀର୍ତ୍ତନ ବିହାରୀଙ୍କ ବ୍ୟକ୍ତିତ୍ୱକୁ ରସାନନ୍ଦ ଯେପରି ବ୍ୟଙ୍ଗାତ୍ମକ ଭାବେ ଉପସ୍ଥାପନ କରିଛି । ତାହା ହାସ୍ୟରସ ସୃଷ୍ଟି ଅପେକ୍ଷା ତା'ର କଦର୍ଯ୍ୟ ପ୍ରକୃତିକୁ ହିଁ ସୂଚାଉଛି ।

ରସାନନ୍ଦ : ବାବା ! ପୂର୍ବଦିଗରୁ ଆଇଥିଲେ ରାମ ନାରାୟଣ ଏବେ ପଶ୍ଚିମ ଦିଗରୁ ଆସିବେ କୀର୍ତ୍ତନ ବିହାରୀ । କୀର୍ତ୍ତନ ବିହାରୀ ରଣା । ଭାଷା ସାହିତ୍ୟର ଅଧ୍ୟାପକ, ରାତିଦିନ ଭଜନ କୀର୍ତ୍ତନରେ ବ୍ୟସ୍ତ ରହନ୍ତି । ଆପଣଙ୍କର ପରମ ଭକ୍ତ । କୀର୍ତ୍ତନ ଗୀତ ବି ଫାନ୍ଦିଛନ୍ତି ଆପଣଙ୍କ ନାଆଁରେ । ହେଲେ ତାଙ୍କ ନାଆଁରେ କିଏ ଗୋଟେ ଦିଟା ପାଜି ପିଲା ଉପରକୁ ଲେଖିଦେଲେ ଯେ ତାଙ୍କର ବଦଳି ହେଉଛି କେ.ବି.କେ ଜିଲ୍ଲାକୁ (ଟିକେ ସମୟ ରହି) ହେଲେ ତାଙ୍କର ଆଲୁଦୋଷ ଟିକେ ଅଛି... କୀର୍ତ୍ତନ ବେଳେ ବାଛବିଚାର ରଖନ୍ତି ନାଇଁ ଝିଅ ପୁଅର... ଥାନ ଜ୍ଞାନ ରଖନ୍ତି ନାହିଁ । ଆଏଁ ତା'ବୋଲି ବଦଳି କଣ ହେବନି ? (ପୃ.୪୦-୪୧)

ଅଧ୍ୟାପକ କୀର୍ତ୍ତନ ବିହାରୀ ନିଜର ସହଯୋଗୀ ଓ ସୁନ୍ଦରୀ ରସ ରଂଗିନୀଙ୍କ ସହିତ ଆସି ବାବା ଭୋଳାନନ୍ଦଙ୍କ ନାମରେ କୀର୍ତ୍ତନ କରିଛନ୍ତି । ସେ ବି ପ୍ରତାରଣାର ଶିକାର ହୋଇ ନିଜର ସର୍ବସ୍ୱ ହରେଇଛନ୍ତି । ଭୋଳାନନ୍ଦ ତାଙ୍କର ସହଯୋଗୀ ରସରଂଗିନୀଙ୍କ ଉପରେ ଲୋଲୁପ ଦୃଷ୍ଟି ପକାଇବା ସହ ରସରଂଗିନୀଙ୍କୁ ନିଜର ଆଶ୍ରମରେ ରଖିଛନ୍ତି । ସେହିପରି ଉତ୍ତର ଦିଗରୁ ଆସିଥିବା ଅବକାରୀ ମାଲର ବେପାରୀ ବନବିହାରୀ ବାବା ଭୋଳାନନ୍ଦଙ୍କୁ ଗଞ୍ଜେଇ ଯୋଗାଇ ଯୋଗାଇ ଶୋଷିତ ହୋଇଛନ୍ତି, ଏପରିକି ବାବାଙ୍କୁ ଅର୍ଥଦେଇ ତାଙ୍କୁ ସନ୍ତୁଷ୍ଟ କରିବାକୁ ପଡ଼ିଛି । ଅନ୍ୟପକ୍ଷରେ ପୁଲିସ୍ ଅଫିସର କରୁଣାକର ନିଜର ଦାୟିତ୍ୱରେ ଅବହେଳା କରିବା ସହ ବାବା ଭୋଳାନନ୍ଦଙ୍କୁ ସମର୍ଥନ, ସହଯୋଗ କରି ଆଇନ୍‌କୁ ଫାଙ୍କିଛନ୍ତି । ଆଧ୍ୟାତ୍ମିକ ବିଶ୍ୱାସକୁ ଢାଲକରି ଭୋଳାନନ୍ଦ ଓ ତାଙ୍କ ଶିଷ୍ୟ ରସାନନ୍ଦ ଯେପରି ଲୋକଙ୍କୁ ଶୋଷଣ କରିଛନ୍ତି, ଆଇନ୍ ବିରୋଧୀ କାର୍ଯ୍ୟ କରିଛନ୍ତି, ତାହା ମୋଗଲ ସମୟର ଅତ୍ୟାଚାରକୁ ଅତିକ୍ରମ କରିଯାଇଛି ।

ନାଟକର ତୃତୀୟ ଦୃଶ୍ୟରେ ସତ୍ୟ-ନ୍ୟାୟର କଣ୍ଠ ଅବରୁଦ୍ଧ କରି ଅନ୍ୟାୟ ଅନୀତି କିପରି ସତ୍ୟର ମରୀଚିକା ଦେଖାଏ, ତାହାର ଅବତାରଣା କରାଯାଇଛି । ନେତା ଜନ

କଲ୍ୟାଣଙ୍କର ପ୍ରିୟଭାଜନ ହେବା ପାଇଁ ସୁବୁଦ୍ଧି ପରି ଧୂର୍ତ୍ତ କୁଜିନେତା-ଛୋଟ ବ୍ୟବସାୟୀମାନେ ଯେ କେତେ ନୀଚ ସ୍ତରକୁ ଯାଇପାରନ୍ତି, ତାହା ଏହି ପର୍ଯ୍ୟାୟରେ ଦେଖିବାକୁ ମିଳେ । ଯେଉଁ ଲୋକନାଥ ତା'ର ଭଉଣୀ ଦୁଃଖୀର ମୃତ୍ୟୁ ପାଇଁ ନ୍ୟାୟ ମାଗୁଥିଲା, ସେଇ ଲୋକନାଥ ସୁବୁଦ୍ଧି ଚକ୍ରାନ୍ତରେ ନିଜକୁ ବିକ୍ରୀ କରିଛି । ରାଜନୀତିର ଦଲାଲ୍ଙ୍କ ପାଖରେ ସାମାନ୍ୟ ଟଙ୍କା ପାଇଁ ଲୋକନାଥ ନ୍ୟାୟକୁ ଆଖିଠାର ମାରି ଅନ୍ୟାୟକୁ ସମର୍ଥନ କରିଛି । ପ୍ରକୃତ ଦୋଷୀକୁ ନିର୍ଦ୍ଦୋଷ ଭାବେ ସାବ୍ୟସ୍ତ କରିବା ଏବଂ ନିର୍ଦ୍ଦୋଷ ପ୍ରଭାକରକୁ ଅପରାଧୀ ଭାବେ ପ୍ରମାଣ କରିବା ପାଇଁ ଲୋକନାଥ ନିଜର ସ୍ୱାଭିମାନକୁ ଜଳାଞ୍ଜଳି ଦେଇ ଜନକଲ୍ୟାଣ ଓ ସୁବୁଦ୍ଧି ସହିତ ମିଶିଯାଇଛି । ତେଣୁ ଲୋକନାଥ ସୁବୁଦ୍ଧିର ପ୍ରରୋଚନାରେ ଜନ କଲ୍ୟାଣକୁ କହିଛି-

ସୁବୁଦ୍ଧି ଆରେ... ଲୋକା... ଦୁଃଖୀ ବିଷୟରେ କ'ଣ ସାକ୍ଷୀ ଦେବୁ... ଆମେ ଯୋଉ ରିହାର୍‌ସାଲ୍ କରିଥିଲେ ଆମ ସାର୍‌ଙ୍କୁ ସେଇଟା ଶୁଣେଇ ଦଉନୁ । ଦେ-ଶୁଣେଇ ଦେ ।

ଲୋକନାଥ : ସେଇ କଥାତ ମୁଁ ଶହେବାର କହିବି । ଦୁଃଖୀ ମରିବା ପାଇଁ ପ୍ରଭାକର ଦାୟୀ । ଠିକାଦାର ଦେଶବନ୍ଧୁ ମତେ ବଦନାମ କରିବା ପାଇଁ ମିଛ କହିବା ଲାଗି ବାଧ କରିଥିଲା । (ପୃ.୫୪)

ଯେଉଁ ଠିକାଦାର ଦେଶବନ୍ଧୁ ଦିନେ ଜନକଲ୍ୟାଣଙ୍କର ଖାସ୍ ଲୋକ ହୋଇ ରହିଥିଲା, ସୁବୁଦ୍ଧି ନିଜର କୁବୁଦ୍ଧି ବଳରେ ତା'ପ୍ରତି ଜନ କଲ୍ୟାଣଙ୍କ ମନରେ ବିଷ ଭରିଦେଇଛି । ଏପରିକି ଠିକାଦାରର କୌଣସି ଆପତ୍ତି ନ ଶୁଣି ନେତା ଜନକଲ୍ୟାଣ ତାକୁ ପାଦରେ ଆଡ଼େଇ ଚାଲିଯାଇଛି ।

ନାଟକର ଚତୁର୍ଥ ଦୃଶ୍ୟରେ ଶିବଙ୍କର ଭଜନ କୀର୍ତ୍ତନ ବାବା ଭୋଳାନନ୍ଦଙ୍କ ଆଶ୍ରମରେ ଚାଲୁଥିବାର ଦର୍ଶକେ ଦେଖିପାରିବେ । ନେତା ଜନକଲ୍ୟାଣ, ଚାମ୍‌ଚା ସୁବୁଦ୍ଧି, ତାଙ୍କ ଚେଲା ଚାମୁଣ୍ଡା ଓ ରସରଂଗିନୀଙ୍କ ଗହଣରେ କୀର୍ତ୍ତନରେ ମଗ୍ନଥିବା ବାବା ଭୋଳାନନ୍ଦଙ୍କ ଛାତିରେ ଗୁଳି ବାଜିଛି । ବାବା ଗୁଳିମାଡ଼ରେ ଟଳିପଡ଼ିବାପରେ ଅନ୍ୟମାନେ ଗୁଳିର ଆବାଜ୍‌ରେ ଛତ୍ରଭଂଗ ହୋଇଛନ୍ତି । ପିସ୍ତଲ ଧରି ପ୍ରଭାକର ଅନ୍ୟମାନଙ୍କୁ ମାରିବା ଲାଗି ଆହତ ସିଂହ ଭଳି ଗର୍ଜନ କରିଛି । ତା' ଭିତରେ ଏକ ବିଦ୍ରୋହୀ - ବିପ୍ଳବୀ ବ୍ୟକ୍ତି ସତ୍ତା ଜନ୍ମ ନେଇଛି, ଯିଏ ସବୁ ଅନ୍ୟାୟ- ଅତ୍ୟାଚାରକୁ ଜାଳି ପୋଡ଼ି ଛିନ୍ନ ଭିନ୍ନ କରି ଦେବାର ସଂକଳ୍ପ ନେଇଛି ।

ପ୍ରଭାକର : (ଭୋଳାନନ୍ଦଙ୍କୁ ଚାହିଁ) ଏଇ ସାଧୁବେଶୀ ସଇତାନ୍‌ଟା ମଲାନି ଯେ ବର୍ତ୍ତିଗଲା । କୁଆଡ଼େ ଗଲା ସେ ହାରାମଜାଦା ଜନ କଲ୍ୟାଣଟା ? (ପାଦରେ ଭୋଳାନନ୍ଦଙ୍କ ଶବକୁ ଗଡ଼େଇ) ଏଇ ଭଳି ଲୋକମାନଙ୍କ ଚାଲାକିରେ ଦେଶ ରସାତଳକୁ ଗଲାଣି । ଭଣ୍ଡ ଗୁଡ଼ା । ଶଳା...ମଠ କରିଛନ୍ତି । ସନ୍ନ୍ୟାସୀ

ହୋଇଛନ୍ତି । ମୁଁ ସବୁ ଧ୍ୱଂସ କରିଦେବି, ଉଡ଼େଇଦେବି ଯେତେ ଭ୍ରଷ୍ଟାଚାର, ଦୁର୍ନୀତି, କୁଆଡ଼େ ଗଲା ସେ ଜନ କଲ୍ୟାଣ ? (ପୃ. ୫୬)

ଜନ କଲ୍ୟାଣକୁ ନିଶ୍ଚିହ୍ନ କରିଦେବା ଲାଗି ପ୍ରଭାକର ଯେଉଁ ସଂକଳ୍ପ ନେଇଛି, ତା'ର ପରିଣତି ଶେଷ ଦୃଶ୍ୟରେ ଅବତାରଣା କରାଯାଇଛି । ପ୍ରଥମ ଦୃଶ୍ୟରେ ଯେପରି ଦେଶବନ୍ଧୁ ଠିକାଦାର ଜନକଲ୍ୟାଣକୁ ପଥ କଢ଼େଇ ନେଉଥିଲା, ସେପରି ଅନ୍ତିମ ଦୃଶ୍ୟରେ ସୁବୁଦ୍ଧି ତାଙ୍କୁ ନେଇଯାଉଛି । ତେବେ ନାଟକର ଶେଷ ବେଳକୁ ପ୍ରଭାକର କହିଛି – "ଲୋକଶକ୍ତିକୁ ଜାଗ୍ରତ କରି ଏ ସବୁ ତାମ୍‌ସାର ଅବସାନ ଘଟେଇବାକୁ ପଡ଼ିବ । ପ୍ରତିବାଦର ଭାଷାକୁ ପହଞ୍ଚେଇବାକୁ ହେବ ଦଳିତର ପ୍ରାଣରେ । ଯଥେଷ୍ଟ ସହିଲେଣି ସାଧାରଣ ମଣିଷ । ଆଉ ନୁହେଁ... ।"(ପୃ.୫୮)

ନାଟକର ଶେଷଦୃଷ୍ୟ ଦେଖିଲା ପରେ ଅନୁଭବ କରିହେବ, ପ୍ରକୃତରେ ଏଇ ଦୃଶ୍ୟ ନାଟକର ଶେଷ ଦୃଶ୍ୟ ନୁହେଁ । କାରଣ ପ୍ରଭାକର ନେଇଥିବା ଶପଥ ପୂର୍ଣ୍ଣ ହେଲେ ନାଟକର ପରିସମାପ୍ତି ଘଟିବ । ଶେଷରେ ନିର୍ଦ୍ଦେଶକ ମଞ୍ଚ ଉପରକୁ ଆସି ଏହା ଶୁଣାଇଛନ୍ତି । ଅସମାପ୍ତ ଭାବେ ନାଟକଟିକୁ ଛାଡ଼ିଦେଇ ଶେଷ ଦୃଶ୍ୟର ମାୟାଲୋକ ତିଆରି କରି ନାଟକର ପରିସମାପ୍ତି ନାଟ୍ୟକାର ସୂଚିତ କରିଛନ୍ତି । ନଟ-ନଟୀଙ୍କର ନୃତ୍ୟ ପ୍ରଦର୍ଶନ ଭିତରେ ନାଟକର ଯବନିକା ପଡ଼ୁଛି ସତ, ମାତ୍ର ନାଟକର ଯେମିତି ଶେଷଦୃଶ୍ୟ ସଂଘଟିତ ହେଉନାହିଁ, ଏହାହିଁ ନାଟକଟି ସୂଚାଇଛି ।

ମୋଗଲ ତାମ୍‌ସାର ଆଙ୍ଗିକରୁ ଆରମ୍ଭ ଏହି ନାଟକର ପରିଣତି ସାଂପ୍ରତିକ ସମୟର ତାମ୍‌ସାରେ ଘଟିଛି । ଲୋକପ୍ରିୟ ନୃତ୍ୟ ସଂଗୀତ ମାଧ୍ୟମରେ କାହାଣୀ ପରିବେଷିତ ହୋଇଛି । ସମାଜରେ ସଂପ୍ରତି ଘଟୁଥିବା ଠିକାଦାରୀ ବ୍ୟବସ୍ଥା ଉକ୍ତ ସୁବିଧାବାଦୀ ଧର୍ମଗୁରୁମାନଙ୍କର ବ୍ୟଭିଚାର, କେଲେଙ୍କାରୀ ଆଜିର ସମାଜ ଜୀବନକୁ ଯେପରି ବିପର୍ଯ୍ୟସ୍ତ କରିଚାଲିଛି ତା'ର ଦୃଶ୍ୟରୂପ 'ପକା ପଇସା ଦେଖ୍ ତାମ୍‌ସା' ନାଟକରେ ଦେଖିବାକୁ ମିଳେ । ଧର୍ମର ଢାଙ୍କୁଣୀ ତଳେ ବ୍ୟଭିଚାରୀ-ଭ୍ରଷ୍ଟାଚାରୀମାନେ ଲୁଚି ରହି କଳା ଟଙ୍କା ମାଧ୍ୟମରେ ସତ୍ୟ-ନ୍ୟାୟ ବ୍ୟବସ୍ଥାକୁ କିଣିପାରନ୍ତି । ପଇସା ପାଖରେ ନ୍ୟାୟ ପାଇଁ ଲଢୁଥିବା ବ୍ୟକ୍ତି ମଧ୍ୟ ନିଜକୁ ବିକିପାରେ, ଯାହା ଏହି ନାଟକରେ ରୂପାୟିତ ହୋଇଛି । ଏହି ପଇସା ରାଜ୍‌ର ଅବସାନ ଘଟିବ ପ୍ରଭାକରର ସଂକଳ୍ପରେ । ତେଣୁ ପ୍ରଭାକରର ସଂକଳ୍ପ ହିଁ ନାଟକକୁ ଶେଷ ହେବାକୁ ଦେଉନାହିଁ, ଏ ନାଟକର ଯେମିତି ଶେଷଦୃଶ୍ୟ ନାହିଁ, ଏହାହିଁ ନାଟ୍ୟକାର ଦର୍ଶାଇବାର ପ୍ରୟାସ କରିଛନ୍ତି ।

ନାଟକର ପ୍ରତ୍ୟେକ୍ ଚରିତ୍ର (କେବଳ ପ୍ରଭାକରକୁ ବାଦ୍ ଦେଇ) ଆଜିର ବିଚିତ୍ର ତାମ୍‌ସାର ଜଣେ ଜଣେ ଅଂଶୀଦାର । ନେତା ଜନକଲ୍ୟାଣ ଜନର କଲ୍ୟାଣ ପରିବର୍ତ୍ତେ

ଯେଉଁ ଅକଲ୍ୟାଣ କରିଚାଲିଛି ତାହା ଅକ୍ଷମଣୀୟ । ଜନକଲ୍ୟାଣ ପରି ଦୁଷ୍ଟବୁଦ୍ଧି ନେତାମାନଙ୍କ ବେଣ୍ଟ ସାଜି ଠିକାଦାର ଦେଶବନ୍ଧୁ ଓ ସୁବୁଦ୍ଧି ଆତ୍ମ ସ୍ୱାର୍ଥ ସାଧନରେ ଓସ୍ତାଦ୍ ହୋଇଛନ୍ତି । ବ୍ୟଭିଚାରୀ ଧର୍ମଗୁରୁ ଭୋଲାନନ୍ଦ ଧର୍ମ ନାଆଁରେ ଭ୍ରଷ୍ଟାଚାର ବଢ଼େଇ ଚାଲିଛି । ଲୋକନାଥ ପରି ବ୍ୟକ୍ତି ବି ଟଙ୍କା ପାଖରେ ନିଜ ଭଉଣୀର ଇଜ୍ଜତକୁ ବଳି ଦେଇଛି । କେବଳ ପ୍ରଭାକର ହିଁ ପ୍ରକୃତ ବିଦ୍ରୋହୀ ସାଜି ଏ ଅରାଜକତାକୁ ଲୋପ କରିବାର ପ୍ରତିଜ୍ଞା କରିଛି ।

ନାଟକର ସଂଳାପକୁ ଯଦି ତର୍ଜମା କରାଯାଏ, ତେବେ ଲକ୍ଷ୍ୟ କରାଯିବ ଯେ ମୋଗଲ ତାମ୍‌ସାର ସଂଳାପକୁ ନାଟକର ପ୍ରାରମ୍ଭରେ ବ୍ୟବହାର କରି ନାଟ୍ୟକାର ନାଟକକୁ ଆହୁରି ବାସ୍ତବଧର୍ମୀ କରିଛନ୍ତି । ପରେ ସଂଳାପରେ ତାମ୍‌ସା ରୀତି ନ ଥିଲେ ବି ନାଟକର ଆତ୍ମିକ ସଂପଦରେ ବା ବକ୍ତବ୍ୟରେ ତାମ୍‌ସାକୁ ଲକ୍ଷ୍ୟ କରେ ପାଠକ ଓ ଦର୍ଶକ । ନାଟକର ପ୍ରାରମ୍ଭରେ ସଂଯୋଜିତ ମୋଗଲ ତାମ୍‌ସାର ଗୋଟିଏ ଅଂଶରୁ ଉଦାହରଣଟିଏ ନିଆଯାଇପାରେ ।

ମିର୍ଜା ସାହେବ — କିରମଁକ୍ୱା ଇମ୍‌ସବ୍ ମକାମ୍ ବରଖଁତା କରନ୍ଦା ଅନ୍ଦ୍, ରୌନ୍‌କେ ବାଜାର ଅଂଜୁମର ବଗାରଦ୍ କରନ୍ଦାଅନ୍ଦ । ଏବଲାକୟା

ଚୋପଦାରଦ୍ୱୟ : — ଲଚେକ ।

ମିର୍ଜା — ଯାଏ ନିମସ୍ତେ ମନ୍‌କୁ ଯାଆସ୍ତ ?

ମୋଗଲ ଯୁଗର ଉପରୋକ୍ତ ସଂଳାପ ସହିତ ଲୋକ ଉପାଦାନ ଭିତ୍ତିକ ନଟ-ନଟୀଙ୍କ ସଂଳାପ ନାଟକକୁ ଆହୁରି ଦର୍ଶକାଦୃତି ଦେଇ ପାରିଛି । କିଛି କିଛି ସଂଳାପ ଦୀର୍ଘଧର୍ମୀ ହୋଇଥିଲେ ବି ତାହା ଅନେକ ସମୟରେ ବିଦୂପର ଇଙ୍ଗିତ ଦେଇଛି । ନ୍ୟାୟ-ଅନ୍ୟାୟ, ସତ୍ୟ-ଅସତ୍ୟର ଦ୍ୱନ୍ଦ୍ୱ ଭିତରେ ଭୋଲାନନ୍ଦ ପରି ଭ୍ରଷ୍ଟାଚାରୀର ପତନ, ଜନକଲ୍ୟାଣର ପଳାୟନ ପନ୍ଥୀ ମନୋବୃତ୍ତି ଭିତରେ ଅନ୍ୟାୟ-ଅରାଜକତାର ପରାଜୟ ହିଁ ଘଟିଛି ।

ନାଟକର ପ୍ରଥମ ଦୃଶ୍ୟକୁ ବାଦ୍‌ଦେଲେ ନାଟକର ମଞ୍ଚ ସଜ୍ଜା ସେପରି ଜଟିଳ ହୋଇନାହିଁ । ପ୍ରଥମ ଦୃଶ୍ୟରେ ଶିବ ମନ୍ଦିରର ସମ୍ମୁଖ ଭାଗରେ ତାମ୍‌ସାର ଆସର ସୃଷ୍ଟି କରାଯାଇଥିଲାବେଳେ ପରିବର୍ତ୍ତିତ ଦୃଶ୍ୟପଟ୍ଟରେ ନଟ-ନଟୀଙ୍କ ସଂଗୀତ ପରିବେଷଣର ଦୃଶ୍ୟ ଅବତାରଣା କରିବା ଲାଗି ମଞ୍ଚକୁ ଦୁଇଟି ପର୍ଯ୍ୟାୟଭୁକ୍ତ କରାଯାଇଛି । ପୁନଶ୍ଚ ତାମ୍‌ସାବେଳେ ଦର୍ଶକ ଗ୍ୟାଲେରୀରୁ ଚରିତ୍ର ଆଣି ମଞ୍ଚ ଉପସ୍ଥାପନ କରିବା ବି ସହଜ କଥା ନୁହେଁ । ମଞ୍ଚର ଗୋଟିଏ ପାଖେ ତାମ୍‌ସା ଆସର, ନଟନଟୀଙ୍କ ସଂଗୀତ ପରିବେଷଣ ସହିତ ଅନ୍ୟପଟେ ଦୃଶ୍ୟ ଅନୁଯାୟୀ ମଂଚସଜ୍ଜା ବେଶ୍ କୌଶଳର ସହ ନାଟକରେ ସଂପାଦିତ ।

ମୋଟ ଉପରେ କହିବାକୁଗଲେ ସାଂପ୍ରତିକ ସମୟର ଅବ୍ୟବସ୍ଥା – ଅନ୍ଧ ସମାଜର ଜଡ଼ ବ୍ୟବସ୍ଥାକୁ ଯଦି ଦେଖିବାକୁ ପଡ଼ିବ ତେବେ ପଇସା ଫିଙ୍ଗିଲେ ତାହା ଦୃଶ୍ୟମାନ ହେବ । ଏମିତି ଏକ ବ୍ୟଙ୍ଗୋକ୍ତି ଏହି ନାଟକରେ ଉପସ୍ଥାପିତ ହୋଇଛି । ପଇସା ରାଜ୍ ପାଖରେ

ଆଜିର ଅବ୍ୟବସ୍ଥା ମୋଗଲ-ମରହଟ୍ଟା ଯୁଗର ତାମ୍‌ସାକୁ ବଳିଯାଇଛି । ତେବେ ଦିନେ ଭ୍ରଷ୍ଟାଚାର-ଅରାଜକତାର ଲୋପ ପାଇବ ହିଁ ପାଇବ । ସେଥିପାଇଁ ନାଟକର ଶେଷଦୃଶ୍ୟ ସଂଘଟିତ ହୋଇନାହିଁ । ଅସମାପ୍ତ ଏହି ନାଟକ ପଇସାର ତାମ୍‌ସାକୁ ଅବସାନ କଲାପରେ ହିଁ ଶେଷଦୃଶ୍ୟରେ ଉପନୀତ ହେବ । ମୁକ୍ତଧାରା ଶୈଳୀରେ ରଚିତ ଏହି ନାଟକରେ ନାଟ୍ୟକାର ଏଷ୍ଟାବ୍ଲିଶ୍‌ମେଣ୍ଟ ବିରୋଧୀ ସ୍ୱର ଉତ୍ତୋଳନ କରିବା ସହ ବ୍ୟଙ୍ଗ ଓ ବିଦ୍ରୂପର ଶାଣିତ ଖଡ୍‌ଗ ପ୍ରହାର କରିଛନ୍ତି ।



# ପ୍ରବୃତ୍ତି-ନିବୃତ୍ତିର ଲୁଚକାଳି ଖେଳ : 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ'

ପ୍ରାଚୀନ-ମଧ୍ୟଯୁଗୀୟ ପୁରାଣ ଓ କାବ୍ୟରେ ବର୍ଣ୍ଣିତ ବିଲ୍ୱମଙ୍ଗଳ ଉପାଖ୍ୟାନର ଅବଲମ୍ବନରେ ନାଟ୍ୟକାର ଡ. ଶତପଥୀ 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକର ପରିକଳ୍ପନା କରିଛନ୍ତି । ପ୍ରବୃତ୍ତି ଓ ନିବୃତ୍ତିର ଦ୍ୱନ୍ଦ୍ୱ ଭିତରେ ବିଲ୍ୱମଙ୍ଗଳଙ୍କ ମାନସିକତାର ଯେଉଁ ରୂପାନ୍ତର ଘଟିଛି, ତାହାକୁ ଅତି ସୂକ୍ଷ୍ମ ଭାବରେ ନାଟ୍ୟକାର ଏହି ନାଟକ ଭିତରେ ଦେଖାଇଛନ୍ତି । ଏହି ନାଟକର ଆତ୍ମନେପଦୀରେ ନାଟ୍ୟକାର ଲେଖିଛନ୍ତି "ମୁକ୍ତଧାରାର ନାଟ୍ୟରୀତି ଗ୍ରହଣ କରି ନୃତ୍ୟ, ଗୀତ, ବାଦ୍ୟର ଝଙ୍କାର ସୃଷ୍ଟିକରି ଓ ମେଲୋଡ୍ରାମାଟିକ ପରିବେଶଗୁଡ଼ିକ ମାଧ୍ୟମରେ ମୁଁ ଯେଉଁ ବିଲ୍ୱମଙ୍ଗଳଙ୍କ କାହାଣୀ ଏ ନାଟକରେ କହିଛି ତାହା ଠିକ୍ ପୌରାଣିକ ଯୁଗର ବିଲ୍ୱମଙ୍ଗଳ କାହାଣୀ ନୁହେଁ । ତାହା ରୂପାନ୍ତର ମଧ୍ୟ ଦେଇ ସତ୍ୟର ଅନୁସନ୍ଧାନ, ଯାହା ଏହି ନାଟକ ପରି ମୋର ଆଉ କେତେକ ନାଟକରେ ସମାଲୋଚକମାନଙ୍କର ଦୃଷ୍ଟିଆକର୍ଷଣ କରିଛି ।" ପ୍ରବୃତ୍ତି ପ୍ରବଣ ନାୟକ ବିଲ୍ୱମଙ୍ଗଳ ପ୍ରବୃତ୍ତିର ପଥକୁ ପରିତ୍ୟାଗ କରି କୃଷ୍ଣପ୍ରେମରେ ନିମଜ୍ଜିତ ହୋଇ ଯେପରି ନିବୃତ୍ତି ମାର୍ଗକୁ ଗ୍ରହଣ କରିଛନ୍ତି, ତାଙ୍କ ଚରିତ୍ରର ଏପରି ଚିତ୍ତାକର୍ଷକ ରୂପାନ୍ତର ନାଟକଟିକୁ ଉଚ୍ଚତର ସୋପାନକୁ ନେଇଯାଇଛି ।

ବଙ୍ଗୀୟ କବି ଲୀଳାଶୁକ ତାଙ୍କର ବିଲ୍ୱମଙ୍ଗଳ କାବ୍ୟରେ ଓ ମଧ୍ୟଯୁଗୀୟ ଓଡ଼ିଆ କବି ରାମ ଦାସ ତାଙ୍କର 'ଦାର୍ଢ୍ୟତା ଭକ୍ତି'ରେ ବିଲ୍ୱମଙ୍ଗଳ କାହାଣୀକୁ କୃଷ୍ଣଭକ୍ତିର ପୃଷ୍ଠଭୂମିରେ ଉପସ୍ଥାପନ କରିଛନ୍ତି । ବାରମ୍ବାର ପ୍ରବୃତ୍ତି ଦ୍ୱାରା ବଶୀଭୂତ ହେଉଥିବା ବିଲ୍ୱମଙ୍ଗଳ ନିଜର ଚକ୍ଷୁ ନଷ୍ଟ କରିଦେଇ କୃଷ୍ଣପ୍ରେମରେ ଦୀକ୍ଷିତ ହୋଇ ଚକ୍ଷୁ ଲାଭ କରିବା ସହ ପ୍ରଭୁଙ୍କ ଦର୍ଶନ ମଧ୍ୟ ପାଇଛନ୍ତି । ସେ ପାଇଥିବା ଜ୍ଞାନର ଗୁରୁଭାବେ ମନେ କରିଛନ୍ତି ଚିନ୍ତାମଣିକୁ । ଶେଷରେ ଚିନ୍ତାମଣି ଓ ବିଲ୍ୱମଙ୍ଗଳ କୃଷ୍ଣପ୍ରେମରେ ମଗ୍ନହୋଇ ପ୍ରବୃତ୍ତି ମାର୍ଗରୁ ଓହରି ନିବୃତ୍ତି ପଥରେ ଯାତ୍ରା କରିଛନ୍ତି । 'ଦାର୍ଢ୍ୟତା ଭକ୍ତି'ରେ ବର୍ଣ୍ଣିତ –

"ଧନ୍ୟ ତୁମ୍ଭର ଅନୁରାଗ । ଧନ୍ୟ ନିର୍ମଳ ଭକ୍ତି ଯୋଗ ॥
ଧନ୍ୟ ଜଗତେ ଦୁଇପ୍ରାଣୀ । ବିଲ୍ୱମଙ୍ଗଳ ଚିନ୍ତାମଣି ॥
ଦୁହେଁ ତ ମହାପାପୀ ଥିଲେ । ଦୁହେଁ ହିଁ ମହାସାଧୁ ହେଲେ ॥
ତରି ତରାଇ ପରସ୍ପରେ । ଯଶ ରଖିଲେ ମହୀପରେ ॥"

ମୂଳ ବିଲ୍ୱମଙ୍ଗଳ ଉପାଖ୍ୟାନର ପୁନର୍ଗଠନ କରି ବିଜୟ କୁମାର ଶତପଥୀ 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକଟିକୁ ନୂତନ ଆଙ୍ଗିକ ଓ ଆତ୍ମିକରେ ନବ୍ୟରୂପ ପ୍ରଦାନ କରୁଛନ୍ତି । ନାଟକଟିରେ ବିଲ୍ୱମଙ୍ଗଳ ଉପାଖ୍ୟାନ ଶେଷକୁ ବିଘଟିତ ହୋଇ ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି'ର ଆବେଦନକୁ ଅତିକ୍ରମ କରିଛି ଫଳରେ ନାଟକଟି ହୋଇଛି ହୃଦୟଗ୍ରାହୀ ।

ମଞ୍ଚସଜ୍ଜା ଦୃଷ୍ଟିରୁ ନାଟକର ମଞ୍ଚ ଦୁଇ ଭାଗରେ ବିଭକ୍ତ ହୋଇଛି । ମଞ୍ଚର ସମ୍ମୁଖ ଅଂଶଟି ତାର ପଶ୍ଚାତ୍ ଭାଗର ଅଂଶଠାରୁ ଅଳ୍ପ ଉଚ୍ଚରେ ରହିଛି । ଏହିପରି ଦୁଇଟି ଜୋନ୍‌ରେ ମଞ୍ଚକୁ ବିଭକ୍ତ କରି ନାଟ୍ୟକାର ଲୋକଉପାଦାନ ତଥା ଲୋକନାଟକର ପତରଂଶଉରାନାଟକୁ ଆଙ୍ଗିକ ଭାବେ ଗ୍ରହଣ କରି ନଟ-ନଟୀଙ୍କ ମାଧ୍ୟମରେ ନାଟକର ଆରମ୍ଭ କରିଛନ୍ତି ।

ନାଟ୍ୟରୀତି ଅନୁଯାୟୀ ଇଷ୍ଟସ୍ତୁତି ପରେ ନାଟକର କଥାବସ୍ତୁ ଅଗ୍ରଗତି କରିଛି । ନାଟକର ଖିଅ ସହ ଦର୍ଶକଙ୍କୁ ଯୋଡି ଦେବାଲାଗି ଆବିର୍ଭାବ ଘଟିଛି ସୂତ୍ରଧାରଙ୍କର । ବିଲ୍ୱମଙ୍ଗଳ ଉପାଖ୍ୟାନ ସଂପର୍କରେ ସୂତ୍ରଧାର ଦର୍ଶକଙ୍କୁ ଅବଗତ କଲାପରେ ନଟ-ନଟୀ ନାଟକର କଥନିକାର ସୂଚନା ଦେଇ ଅପସରିଯାଆନ୍ତି ମଞ୍ଚରୁ । ନାଟ୍ୟକାର ଶତପଥୀଙ୍କ ଅନ୍ୟାନ୍ୟ ନାଟକ ପରି ଲୋକନାଟ୍ୟ ରୀତିକୁ ଆଙ୍ଗିକରେ ଗ୍ରହଣ କରି ନାଟକକୁ ଦର୍ଶକାଭିମୁଖୀ ଓ ଲୋକପ୍ରିୟ କରିବାର କୌଶଳଟି ନାଟ୍ୟକାର ଏହି ନାଟକ ଭିତରେ ମଧ୍ୟ ଦେଖାଇଛନ୍ତି ।

ନାଟକଟି ତିନୋଟି ପର୍ଯ୍ୟାୟ ଦେଇ ଗତିଶୀଳ ହୋଇଛି । ପ୍ରଥମ ପର୍ଯ୍ୟାୟରେ ବିଲ୍ୱମଙ୍ଗଳଙ୍କ ପ୍ରବୃତ୍ତି ପ୍ରବଣତା ଦ୍ୱିତୀୟ ପର୍ଯ୍ୟାୟରେ ପ୍ରବୃତ୍ତି ନିବୃତ୍ତିର ମାନସିକ ଦ୍ୱନ୍ଦ୍ୱ ଭିତରେ ବିଲ୍ୱମଙ୍ଗଳଙ୍କର ସତ୍ୟ ଅନ୍ୱେଷଣ, ତୃତୀୟ ପର୍ଯ୍ୟାୟରେ ବିଲ୍ୱମଙ୍ଗଳଙ୍କର ଚକ୍ଷୁଲାଭ-ଜ୍ଞାନଲାଭ ଓ ଚିନ୍ତାମଣି ପାଖରୁ ରିକ୍ତ ହସ୍ତରେ ଫେରିବାର ଦୃଶ୍ୟର ଅବତାରଣା କରାଯାଇଛି । ନାଟକଟି ବିଲ୍ୱମଙ୍ଗଳ ଚରିତ୍ର ପ୍ରତି ଦର୍ଶକଙ୍କ ଚିତ୍ତଲୋକରେ ଆବେଦନ ସୃଷ୍ଟି କରିବାକୁ ସକ୍ଷମ । ବିଲ୍ୱମଙ୍ଗଳଙ୍କୁ କେନ୍ଦ୍ରକରି ନାଟକର ଗତି ଓ ପରିଣତି ସାଧିତ ହୋଇଛି । ତେଣୁ ବିଲ୍ୱମଙ୍ଗଳଙ୍କୁ ଚିହ୍ନିବା ପାଇଁ ତାଙ୍କ ରୂପାନ୍ତରର ରହସ୍ୟ ଜାଣିବାପାଇଁ ଏହି ତିନୋଟି ପର୍ଯ୍ୟାୟକୁ ଲକ୍ଷ୍ୟ କରିବାକୁ ପଡ଼ିବ । ଏହି ପର୍ଯ୍ୟାୟ ଦେଇ ବିଲ୍ୱମଙ୍ଗଳ ସକଳ ମଙ୍ଗଳ ଅମଙ୍ଗଳର ଊର୍ଦ୍ଧ୍ୱରେ କିଭଳି ଅମୃତ ଆଲୋକର ସନ୍ଧାନ କରିଛନ୍ତି ତାହା ଅନୁଧ୍ୟାନ କରାଯାଇପାରେ ।

ପ୍ରଥମ ପର୍ଯ୍ୟାୟରେ ରୂପ- ସୌନ୍ଦର୍ଯ୍ୟର ପୂଜାରୀ ତଥା ପ୍ରବୃତ୍ତିର ତାଡ଼ନାରେ କବଳିତ ବିଲ୍ୱମଙ୍ଗଳଙ୍କୁ ଆମେ ଭେଟିଥାଉ । ଦୁର୍ଘଟଣାବଶତଃ ନବବିବାହିତା ରମଣୀ ଚିନ୍ତାମଣିଙ୍କୁ ବିଲ୍ୱମଙ୍ଗଳଙ୍କ ଚର ଉଠାଇଆଣିବା, ସବୁ ଘଟଣା ସମ୍ପର୍କରେ ଅବଗତ ହେବା ପରେ ଚିନ୍ତାମଣିଙ୍କ ନାରୀତ୍ୱକୁ ସମ୍ମାନଦେଇ ମୁକ୍ତ କଲା ଭିତରେ ବିଲ୍ୱମଙ୍ଗଳଙ୍କ କାମନା ସର୍ବସ୍ୱ ଦିଗ ଅପେକ୍ଷା ମାନବୀୟ ଗୁଣାବଳୀର ଶ୍ରେଷ୍ଠ ଦିଗଟି ପ୍ରତିଭାତ ହୋଇଥାଏ ।

ବିଲ୍ୱମଙ୍ଗଳ : ମୁଁ ତ ଚାହିଁଥିଲି ଏହି ପ୍ରମୋଦ ବାଟିକା ରୂପଶ୍ରୀମାନଙ୍କ ନାଚଗୀତରେ ମୁଖରିତ ହୋଇଉଠୁ । ରୂପ ଓ ସୌନ୍ଦର୍ଯ୍ୟର ପିପାସା ନେଇ ମୁଁ ଖାଲି ଜୀବନ ଓ ଯଉବନର ଜୟଗାନ କରିଚାଲିଥାଏ । ଅସଂଖ୍ୟ ପକ୍ଷୀର କାକଳି ପରି

ସେମାନେ ମୋ ଜୀବନ ବୃକ୍ଷଟିକୁ ମୁଖରିତ କରୁଥାନ୍ତୁ । (ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ, ପୃ.୧୯)

ବିଲ୍ୱମଙ୍ଗଳଙ୍କ ପରି ମହାପାପୀର ଅନ୍ତର ଭିତରେ ସୁପ୍ତ କୋମଳ ସୁବାସିତ ପୁଷ୍ପିତ ହୃଦୟଟିକୁ ଉପରୋକ୍ତ ସଂଳାପ ଭିତରେ ନାଟ୍ୟକାର ଦର୍ଶାଇଛନ୍ତି । ପାପର କାଳିମା ଭିତରେ ସେ ଆବିଷ୍କାର କରିଛନ୍ତି ନାଟକର ନାୟକଙ୍କ ଭିତରୁ ଆଲୋକତି ଦିଗଟିକୁ । ଚିନ୍ତାମଣି ସ୍ୱାମୀଙ୍କଠାରୁ ପ୍ରତ୍ୟାଖାତ ହେଲା ପରେ ପୁରୁଷ ସମାଜ ଉପରେ ପ୍ରତିଶୋଧ ନେବାକୁ ଯାଇ ନିଜ ରୂପର ରୋଷଣୀରେ ସେମାନଙ୍କୁ ଯେପରି ଦଗ୍ଧ କରିଛି ବିଲ୍ୱମଙ୍ଗଳ ସେଥିରୁ ମୁକ୍ତ ହୋଇପାରିନାହାନ୍ତି । ବେଶ୍ୟା ଚିନ୍ତାମଣିର ସାନ୍ନିଧ ଲାଭ କରିବା ପାଇଁ ରୋଗରେ ପଡ଼ିଥିବା ପିତାଙ୍କୁ ହତାଦର କରି ପ୍ରବୃତ୍ତି ପୀଡ଼ିତ ହୋଇ ସେ ବଢ଼ିଲା ନଦୀର ଶବକୁ ଭେଳା କରି ଏବଂ ସର୍ପକୁ ରଜ୍ଜୁ କରି ଯେଭଳି ଚିନ୍ତାମଣି ପାଖରେ ପହଞ୍ଚିଛନ୍ତି ସେଥିପାଇଁ ଚିନ୍ତାମଣି ଧିକ୍କାର କରିଛି ତାଙ୍କୁ । ଚିନ୍ତାମଣି ଓ ବିଲ୍ୱମଙ୍ଗଳ ଚରିତ୍ର ଦୁଇ ବିରୋଧାଭାସୀ ଗୁଣରେ ଗତିଶୀଳ ହୋଇଛି । ଚିନ୍ତାମଣି ପ୍ରବୃତ୍ତିକୁ ନିଜକୁ ନିୟନ୍ତ୍ରଣରେ ରଖିପାରିଥିବା ବେଳେ ବିଲ୍ୱମଙ୍ଗଳ ପ୍ରବୃତ୍ତିର ଦାସ ହୋଇଛନ୍ତି । ତାଙ୍କୁ ଏହି ପ୍ରବୃତ୍ତି କବଳରୁ ମୁକ୍ତ କରିବାର ପ୍ରୟାସ କରିଛି ଚିନ୍ତାମଣି । ଚିନ୍ତାମଣି ସମୟ ସଚେତନଶୀଳ, ସେ ଜୀବନର ଅସାରତାକୁ ଜାଣେ ଓ ଜଗତର ଅଳୀକତାକୁ ବୁଝେ । ସେଥିପାଇଁ ସେ ନିରାଶ କରିଛି କାମନାର ନିଆଁରେ ଜଳିଯାଉଥିବା ବିଲ୍ୱମଙ୍ଗଳଙ୍କୁ । ବିଲ୍ୱମଙ୍ଗଳ ଓ ଚିନ୍ତାମଣିର ଭକ୍ତି ପ୍ରତ୍ୟୁକ୍ତିକୁ ଲକ୍ଷ୍ୟ କରାଯାଉ –

ବିଲ୍ୱମଙ୍ଗଳ : ତୁମର ଚନ୍ଦ୍ରମୁଖ, ବନ୍ଧୁଲୀ ଅଧର, ମୀନ ନୟନ, ଶୁଭ୍ର ଦନ୍ତପଂକ୍ତି ଏ ସବୁ ମୋ ପାଇଁ ମୁକ୍ତି – ତମ ଦେହ ମୋ ପାଇଁ ନିର୍ମାଲ୍ୟ ।

ଚିନ୍ତାମଣି ଏ ନର୍କ, ନିର୍ମାଲ୍ୟ ନୁହେଁ କୁମାର – ଧିକ୍ ଶତଧିକ୍ ତୁମକୁ । ତୁମପରି ଗୋଟେ ପ୍ରବୃତ୍ତି ପ୍ରବଣ ନାୟକର ମୁହଁ ଚାହିଁବାକୁ ମୋର କୁଣ୍ଠା ଆସୁଛି । ଦେହ, କାମନା ଏସବୁ ବଡ଼ ନୁହେଁ କୁମାର – ଏହାର ଉର୍ଦ୍ଧ୍ୱରେ ଆଉ ଗୋଟେ ଜଗତ ରହିଛି । ତାର ସଂଧାନ କର କୁମାର, ମତେ ଭୁଲିଯାଅ ।

ଦେହ-ଦେହଳୀର ଉର୍ଦ୍ଧ୍ୱରେ ଥିବା ସ୍ତରକୁ ସନ୍ଧାନ କରିବା ଲାଗି ଚିନ୍ତାମଣି ବିଲ୍ୱମଙ୍ଗଳଙ୍କୁ ନିର୍ଦ୍ଦେଶ ଦେଇ ତାର ଦେହଜ କାମନାକୁ ପ୍ରତ୍ୟାଖାନ କଲାପରେ ବିଲ୍ୱମଙ୍ଗଳ ସେହି ଅଜ୍ଞେୟ ସତ୍ୟର ଅନୁସନ୍ଧାନ ଲାଗି ଅଗ୍ରସର ହୋଇଛନ୍ତି । ପ୍ରଥମ ପର୍ଯ୍ୟାୟରେ ବିଲ୍ୱମଙ୍ଗଳଙ୍କ ପ୍ରବୃତ୍ତି ପ୍ରବଣତା, ରୂପାନ୍ତରିତ ହୋଇଛି ସତ୍ୟ ଓ ପରମର ସନ୍ଧାନ ପାଇଁ ବହିର୍ଗତ ହେବାରେ ।

ନାଟକର ଦ୍ୱିତୀୟ ପର୍ଯ୍ୟାୟରେ ଦେହ-ଦେହାତୀତ, ରୂପ-ରୂପାତୀତ, ପ୍ରବୃତ୍ତି-ନିବୃତ୍ତିର ଦ୍ୱନ୍ଦ୍ୱ ଭିତରେ ବିଲ୍ୱମଙ୍ଗଳଙ୍କ ଆତ୍ମବିରୋଧ, ମାନସିକ ଦ୍ୱନ୍ଦ୍ୱ, ଅସହାୟତାକୁ ଲକ୍ଷ୍ୟ କରାଯାଇପାରେ । ତାଙ୍କ ଭିତରେ ପ୍ରବୃତ୍ତି-ନିବୃତ୍ତି ମଧ୍ୟରେ ଯେଉଁ ଲୁଚକାଳି ଖେଳ ଘଟିଛି, ସେଥିରେ ଯେବେ ନିବୃତ୍ତି ଅପେକ୍ଷା ପ୍ରବୃତ୍ତି ଶକ୍ତିଶାଳୀ ହୋଇଛି, ପୁଣି ତାଙ୍କ ଭିତରେ

ଆସିଛି ଦେହର ଲାଳସା । ପରିଧାନରେ, ବାହ୍ୟ ଆବରଣରେ ସେ ସନ୍ନ୍ୟାସୀ ମନେ ହେଉଥିଲେ ହେଁ, ତାଙ୍କ ଭିତରେ କାମନାର ପଙ୍କିଳ ରୂପ ଅଧିକ ପ୍ରଭାବଶାଳୀ ହୋଇପଡ଼ିଛି । ପ୍ରବୃତ୍ତି-ପ୍ରବଣ ହୋଇ ସେ ଜନୈକ ସାଧବଙ୍କ ପତ୍ନୀକୁ ଉପଭୋଗ କରିବାକୁ ଆଗେଇ ଆସିଛନ୍ତି । କିନ୍ତୁ ନିବୃତ୍ତି ଦିଗଟି ଯେତେବେଳେ ସଚେତନ ହୋଇଛି ସେତେବେଳେ ବିଲ୍ୱମଙ୍ଗଳ ନିଜ କର୍ମ ପାଇଁ ଅନୁତପ୍ତ ହୋଇଛନ୍ତି । ସାଧବ ପତ୍ନୀଠାରୁ ଭର୍ତ୍ସନା ଶୁଣିବା ପରେ ତାର ମୁଣ୍ଡ ଖୋସାର କଣ୍ଟା ଦିଓଟିକୁ ସେ ଭିକ୍ଷା କରିଛନ୍ତି ।

ବିଲ୍ୱମଙ୍ଗଳ : ସ୍ମୃତିର ପାଥେୟ ସୁଚେତା । ସାଙ୍ଗରେ ତାକୁ ନେଇଯିବି... ଯେଉଁଠି ଥିଲେବି ସେହି କଣ୍ଟା ଦୁଇଟିକୁ ଦେଖି ମୁଁ ଭାବିବି ସାଧନାର ପଥ ବଡ଼ କଣ୍ଟକିତ- ବୈଷ୍ଣବର ସାଧନା ହେଉ ବା ସତୀ ନାରୀର ସାଧନା ହେଉ ଏ ସବୁ କଣ୍ଟକିତ ।

ସେହି କଣ୍ଟାକୁ ନେଇ ନିଜର ଚକ୍ଷୁନଷ୍ଟ କରିଦେଇ ବୃନ୍ଦାବନ ବିହାରୀ ଶ୍ରୀକୃଷ୍ଣଙ୍କୁ ସେ ଅନ୍ୱେଷଣ କରିଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ବିଲ୍ୱମଙ୍ଗଳଙ୍କ ଆତ୍ମଦ୍ୱନ୍ଦ୍ୱ, ଆତ୍ମବିରୋଧ ଏବଂ ନିଜ ଚକ୍ଷୁକୁ ଫୁଟାଇ ଦେଇ ଅନ୍ଧ ହୋଇ ଭଗବାନଙ୍କୁ ପାଇବାର ବ୍ୟାକୁଳତା ନାଟକରେ ନୂଆମୋଡ଼ ସୃଷ୍ଟି କରିଛି ।

ତୃତୀୟ ପର୍ଯ୍ୟାୟରେ ଶ୍ରୀକୃଷ୍ଣଙ୍କ କୃପାରୁ ବିଲ୍ୱମଙ୍ଗଳ ଚକ୍ଷୁ ଫେରିପାଇବା ସହ ପ୍ରବୃତ୍ତିର ପଙ୍କ ଭିତରୁ ମୁକ୍ତହୋଇ ନୂତନ ସତ୍ୟକୁ ଉପଲବ୍ଧି କରିଛନ୍ତି । ତାଙ୍କ ଭିତରେ ଏ ଯେଉଁ ରୂପାନ୍ତର ଘଟିଛି ତାର ଶ୍ରେୟ ସେ ଦେଇଛନ୍ତି ଚିନ୍ତାମଣିକୁ । ରାଧାକୃଷ୍ଣଙ୍କ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ବୃନ୍ଦାବନ ଯିବାଲାଗି ଚିନ୍ତାମଣିଙ୍କ ପାଖକୁ ଯାଇ ତାଙ୍କୁ ସେ ନିଜର କୃତଜ୍ଞତା ଜଣାଇଛନ୍ତି । ତେବେ ତାକୁ ସଂଗୀ କରି ନେବାକୁ ବିଲ୍ୱମଙ୍ଗଳ ଯେଭଳି ମନସ୍ଥ କରିଥିଲେ ତାହା ଧୂଳିସାତ୍ ହୋଇଛି । ଚିନ୍ତାମଣି ଏହାକୁ ଅସ୍ୱୀକାର କରିଛି । ଚିନ୍ତାମଣି ପୁନର୍ବାର ବିଲ୍ୱମଙ୍ଗଳଙ୍କ ସନ୍ୟାସୀ ରୂପ ଭିତରେ ଖୋଜିଛି ସୌନ୍ଦର୍ଯ୍ୟର ପୂଜାରୀ ବିଲ୍ୱମଙ୍ଗଳଙ୍କୁ । ତେଣୁ ସନ୍ନ୍ୟାସୀ ବିଲ୍ୱମଙ୍ଗଳଙ୍କୁ ସେ ପ୍ରତ୍ୟାଖ୍ୟାନ କରିଛି । ମୂଳ କାହାଣୀରେ ଚିନ୍ତାମଣି ଓ ବିଲ୍ୱମଙ୍ଗଳ ବୃନ୍ଦାବନ ପଥର ଯାତ୍ରୀ ହେବା ପ୍ରସଂଗକୁ ନାଟ୍ୟକାର ଆଡ଼େଇଦେଇ ବିଲ୍ୱମଙ୍ଗଳ ଓ ଚିନ୍ତାମଣିଙ୍କୁ ଦୁଇ ଭିନ୍ନ ମାର୍ଗର ପଥିକ ରୂପେ ଚିତ୍ରଣ କରିଛନ୍ତି । ବିଲ୍ୱମଙ୍ଗଳ ନିବୃତ୍ତିର ଶୀର୍ଷ ସୋପାନରେ ପହଞ୍ଚିଲାବେଳେ ଚିନ୍ତାମଣି ସମସ୍ତ ବାସନା-କାମନା ଭିତରେ ହିଁ ଜୀବନର ସାର୍ଥକତାକୁ ଖୋଜିଛି । ଉଭୟଙ୍କ ଚିନ୍ତାଧାରାର ପରିବର୍ତ୍ତନ କରିବା ଭିତରେ ନାଟ୍ୟକାର ପୂର୍ବୋକ୍ତ ବିରୋଧାଭାସକୁ ଶେଷ ପର୍ଯ୍ୟନ୍ତ ଦୁଇ ଚରିତ୍ର ଭିତରେ ଦେଖାଇ ଚାଲିଛନ୍ତି । ରୂପାନ୍ତର ହେଉଛି ସତ୍ୟ ଓ ସମୟ ଆଣେ ରୂପାନ୍ତରର ବିସ୍ମୟ ଏହା ପ୍ରତିପାଦିତ ହୋଇଛି ନାଟକରେ ।

ନଟ-ନଟୀଙ୍କୁ ମିଶାଇ ନାଟକରେ ମୋଟ ବାରଟି ଚରିତ୍ର ରହିଛନ୍ତି । ବିଲ୍ୱମଙ୍ଗଳ କେନ୍ଦ୍ରୀୟ ଚରିତ୍ର ହୋଇଥିବା ସ୍ଥଳେ, ଚିନ୍ତାମଣି ହେଉଛି ନାଟକର ନାୟିକା । ଏହି ଦୁଇ

ଚରିତ୍ରଙ୍କ ବ୍ୟତୀତ ସୂତ୍ରଧାର ନାଟକର ଅଗ୍ରଗତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି । ନଟ-ନଟୀ ସଂଗୀତ ପରିବେଷଣ ସହ ନାଟକୀୟ ଉତ୍କଣ୍ଠାକୁ ନୃତ୍ୟ ମାଧ୍ୟମରେ ଆଗକୁ ବଢ଼ାଇବାରେ ସହାୟ ହୋଇଛନ୍ତି । ରସ ଶେଖର ଚରିତ୍ର ନାଟକରେ ହାସ୍ୟରସ ସୃଷ୍ଟି କରିବା ସହ ନାଟକୀୟ ଦ୍ୱନ୍ଦ୍ୱ ସହିତ ନିଜର ଉପସ୍ଥିତିକୁ ସାବ୍ୟସ୍ତ କରିଛନ୍ତି । ଏମାନଙ୍କ ବ୍ୟତୀତ ଚିନ୍ତାମଣିଙ୍କ ସ୍ୱାମୀ ସନାତନ, ସାଧବ, ସାଧବପତ୍ନୀ, ଚଣ୍ଡ ବାହୁ, ନିୟତି, ଗୋପାଳ (ଶ୍ରୀକୃଷ୍ଣ) ପ୍ରଭୃତି ଗୌଣ ଚରିତ୍ର ନାଟକର କାହାଣୀ ଅନୁଯାୟୀ ପରିକଳ୍ପିତ ହୋଇଛନ୍ତି । ନାଟକକୁ ଦର୍ଶକଙ୍କ ରୁଚି 'ସହ, ଇଚ୍ଛାସହ ଯୋଡ଼ି ଦେବାରେ ସୂତ୍ରଧାର ବେଶ୍ ସଫଳ ହୋଇଛନ୍ତି । ନାଟକରେ ଆବଶ୍ୟକତା ଅନୁଯାୟୀ ସେ ବାରମ୍ବାର ମଞ୍ଚକୁ ଆସି ଚରିତ୍ର-କଥାବସ୍ତୁ ସହ ଦର୍ଶକଙ୍କୁ ଏକାତ୍ମ କରିଦେଇଛନ୍ତି । ନାଟକକୁ ଅଗ୍ରଗତି କରିବାରେ, ମୋଡ଼ ବୁଲାଣି ଦେବାର ଇଙ୍ଗିତଟି ସୂତ୍ରଧାର ହିଁ ପ୍ରଦାନ କରିଛନ୍ତି । ଯେପରି –

ସୂତ୍ରଧାର : ବିଲ୍ୱମଙ୍ଗଳ କେବଳ ଗୋଟିଏ ସମୟର ନୁହଁନ୍ତି ବନ୍ଧୁଗଣ ! ସେ ଚିରକାଳ ଅନ୍ଧ ଓ ମାୟାଗ୍ରସ୍ତ ମଣିଷ ମାନଙ୍କ ପାଇଁ ଆଣନ୍ତି ଆଲୋକର ବାର୍ତ୍ତା । ପ୍ରବୃତ୍ତି ଓ ନିବୃତ୍ତିର ଦ୍ୱନ୍ଦ୍ୱ ଭିତରେ ସେ ଖୋଜନ୍ତି ପ୍ରତିଷ୍ଠା । ପାପ ଓ ଆତ୍ମଦହନ ଭିତରେ ସନ୍ତୁଳି ହେଉଥିବା ମଣିଷକୁ ସେ ଶିଖେଇ ଦିଅନ୍ତି ଆଧ୍ୟାତ୍ମିକତାର ଅନ୍ୱେଷଣ ।

ବିଲ୍ୱମଙ୍ଗଳ ଦୃଷ୍ଟିଶକ୍ତି ଫେରି ପାଇବା ପରେ ତାଙ୍କର ଉପଲବ୍ଧି ସଂପର୍କରେ ସୂତ୍ରଧାର ଦର୍ଶକଙ୍କୁ ଅବଗତ କରାଇପାରିଛନ୍ତି, ଉପରୋକ୍ତ ସଂଳାପ ମାଧ୍ୟମରେ । ଅନେକ ପ୍ରାସଙ୍ଗିକତା ସହ ଦର୍ଶକଙ୍କୁ ପରିଚିତ କରାଇବା ଲାଗି ଏହି ନାଟକରେ ସୂତ୍ରଧାରଙ୍କ ଭୂମିକା ଆଦୌ ନ୍ୟୂନ ନୁହେଁ ।

ଚିନ୍ତାମଣି ଚରିତ୍ର ଭିତରେ ପ୍ରତିଶୋଧ ପରାୟଣା ନାରୀର ସତ୍ତା ଅପେକ୍ଷା ସଂସାରର କ୍ଷଣଭଂଗୁରତାକୁ ଉପଲବ୍ଧି କରିଥିବା ପ୍ରବୁଦ୍ଧ ସତ୍ତାଟି ଅଧିକ ପ୍ରତୀୟମାନ ହୋଇଛି । ନିୟତିର ତାଡ଼ନାରେ ସେ ବେଶ୍ୟା ପାଲଟିଛି ସତ, କିନ୍ତୁ ସେ ପ୍ରବୃତ୍ତିକୁ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ରଖିଛି । ବିଲ୍ୱମଙ୍ଗଳକୁ ପ୍ରବୃତ୍ତି ପ୍ରବଣତାରୁ ମୁକ୍ତ କରି ଭଗବତ ଚେତନାଶ୍ରୟୀ ହେବାକୁ ଦେଇଥିବା ପରାମର୍ଶରୁ ଚିନ୍ତାମଣି ଚରିତ୍ରର ଚିନ୍ତା କରିବାର ଶକ୍ତି ଭଲମନ୍ଦ-ଉଚିତ୍-ଅନୁଚିତ୍ ଜାଣିପାରୁଥିବା ବିଜ୍ଞପଣ ପ୍ରତିଭାତ ହୋଇଥାଏ । ସେ ଜାଣେ ଏ ସଂସାରରେ ରୂପ-ସୌନ୍ଦର୍ଯ୍ୟ ସବୁ ମିଥ୍ୟା । ସମୟର କରାଳ ସ୍ରୋତ ସବୁକିଛି ଲୀନ କରିପାରେ । ତେଣୁ ବିଲ୍ୱମଙ୍ଗଳଙ୍କୁ ସେ କହିଛି –

ଚିନ୍ତାମଣି : (ଚିତ୍କାର କରି) ମିଛ... ମିଛ କୁମାର । ଦିନେନା ଦିନେ ମୋ ରୂପ ମଉଳିଯିବ । ସମୟର ଡେଣା ମାଡ଼ରେ ମୁଁ କଦାକାର ହୋଇଯିବି ତୁମେବି ବୃଦ୍ଧ ପାଲଟିଯିବ-କ'ଣ ଏହାର ମୂଲ୍ୟ ସବୁ ?"

ନାଟକର ପରିଣତିରେ ଚିନ୍ତାମଣି ପ୍ରବୃତ୍ତିର ପଙ୍କରୁ ବାହାରି ଆସିଥିବା ବିଲ୍ୱମଙ୍ଗଳଙ୍କ ସନ୍ନ୍ୟାସୀ ହେବାର ନିଷ୍ପତ୍ତିକୁ ସ୍ୱୀକାର କରିପାରିନାହିଁ । ସେ ବୈରାଗ୍ୟରେ ବିଶ୍ୱାସ କରେନି, ଅନୁରାଗର ଜୀବନ ତା'ର ଏକାନ୍ତ କାମ୍ୟ । ସେ କାମନାର ନିୟନ୍ତ୍ରଣ ଉପରେ ଗୁରୁତ୍ୱ ଦେଇଛି ସତ, କିନ୍ତୁ ଦେହର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିବାର ସାହସ ରଖିନାହିଁ । ବିଲ୍ୱମଙ୍ଗଳଙ୍କ ସହ ବୃନ୍ଦାବନର ଯାତ୍ରୀ ହେବା ଅପେକ୍ଷା ସେ ସେହି ପୂର୍ବ ଜୀବନ ବଞ୍ଚିବାକୁ ଚାହିଁଛି । ଚିନ୍ତାମଣି ଅନୁଭବ କରିଛି ମହାକାଳ ଅତ୍ୟନ୍ତ ପରାକ୍ରମୀ, ତା' ସାମ୍ନାରେ କୃଷ୍ଣ ଭକ୍ତି - ରୂପାନ୍ତର, ମଣିଷର କାମନା, ରୂପ ସବୁ ଅସ୍ଥାୟୀ । ତେଣୁ ଅନୁରାଗରେ, ଭୋଗରେ ସେ ଜୀବନ କାଟିବାର ଆସ୍ପର୍ଦ୍ଧା ରଖିଛି । ମୋଟ ଉପରେ ଚିନ୍ତାମଣି ଚରିତ୍ର ଦର୍ଶକଙ୍କୁ ତା'ର ଚିନ୍ତାଧାରା, ବିଜ୍ଞ ବିଦୂଷୀ ପଣ ଲାଗି ପ୍ରଭାବିତ କରିବାରେ ସଫଳ ହେବାସହ ବିଲ୍ୱମଙ୍ଗଳଙ୍କ ରୂପାନ୍ତରରେ ମାଧ୍ୟମ ଭାବେ ସେ ଆତ୍ମପ୍ରକାଶ କରିଛି ।

ନାଟକର ମୁଖ୍ୟ ଚରିତ୍ର ବିଲ୍ୱମଙ୍ଗଳ ପ୍ରବୃତ୍ତି ଦ୍ୱାରା ନିୟନ୍ତ୍ରିତ ହୋଇ ବାରମ୍ବାର ନିଜ ଭିତରେ ନିଜକୁ ସମ୍ମୁଖୀନ ହୋଇଛନ୍ତି । ଆତ୍ମ ଦ୍ୱନ୍ଦ୍ୱ, ଆତ୍ମ ବିରୋଧ ଭିତରେ ତାଙ୍କ ବ୍ୟାକୁଳତାଟି ବାହାରକୁ ଜଣାପଡ଼ିଛି । ତାଙ୍କ ଭିତରେ କାମନାର ଉତ୍କଟ କ୍ଷୁଧା ଥିବା ସତ୍ତ୍ୱେ ସେ ସୌନ୍ଦର୍ଯ୍ୟ-ରୂପର ଆରାଧନା କରନ୍ତି ପୁଣି ତାଙ୍କ ଭିତରେ ଥିବା ଆଲୋକିତ ଦିଗଟି ସୂକ୍ଷ୍ମଭାବେ ବାରି ହୋଇପଡ଼େ । ଚିନ୍ତାମଣିଠାରୁ ନିରାଶ ହୋଇ ଫେରିବା ପରେ ପ୍ରବୃତ୍ତି-ନିବୃତ୍ତିର ଦ୍ୱନ୍ଦ୍ୱ ଭିତରେ ଚକ୍ଷୁକୁ ଫୁଟାଇ ଅନ୍ଧ ହେବା, ପରେ ଭଗବତ ଚେତନା ପ୍ରାପ୍ତହେବା ଏବଂ କୃଷ୍ଣଙ୍କ ସାନ୍ନିଧ ଲାଭ କରିବାପରେ ଆମେ ବିଲ୍ୱମଙ୍ଗଳଙ୍କ ଭିତରେ ରୂପାନ୍ତରକୁ ଲକ୍ଷ୍ୟ କରିଥାଉ । ସେ ଅବକ୍ଷୟର ସୂଚନା ଦେବା ଅପେକ୍ଷା ମଣିଷ ଭିତରେ ଚେତନାରୂପୀ ଆଲୋକର ଉତ୍ତରଣ ଲାଗି ବାର୍ତ୍ତା ଦିଅନ୍ତି । ଆଧ୍ୟାତ୍ମିକ ଓ ମାନସିକ ସଙ୍କଟ ଭୋଗୁଥିବା ମଣିଷ ପାଇଁ ସେ ନୂଆ ଜୀବନର ଛନ୍ଦ ସୃଷ୍ଟି କରନ୍ତି, ରୂପାନ୍ତରର ସନ୍ଦେଶ ଆଣନ୍ତି । ଆପଣା କାମନା, ପ୍ରବୃତ୍ତିର ତାଡ଼ନା ଭିତରେ ସେ ବନ୍ଦୀ ହୋଇଥିଲେ ହେଁ, ପ୍ରବୃତ୍ତିର ଘନଘୋର ଅନ୍ଧକାର ମଧ୍ୟରେ ଆଲୋକର ସନ୍ଧାନ କରିଛନ୍ତି । ବିଲ୍ୱମଙ୍ଗଳଙ୍କ ରୂପାନ୍ତର ପ୍ରମାଣ କରିଦିଏ – ସତ୍ୟ ହେଉଛି ଏକ ଅନ୍ୱେଷଣ, ଗୋଟିଏ ଦିଗହୀନ ଯାତ୍ରା । ପ୍ରବୃତ୍ତି-ନିବୃତ୍ତି ମଧ୍ୟରେ ସେ ପ୍ରତିଷ୍ଠା ପାଇବାସହ ଆଧ୍ୟାତ୍ମିକତାର ଅନ୍ୱେଷଣ କରିବାଲାଗି ଦର୍ଶକ-ସମୁଦାୟକୁ ଜନସମାଜକୁ ଇଙ୍ଗିତ ଦିଅନ୍ତି । କୃଷ୍ଣଙ୍କ କୃପା ଫଳରେ ଦିବ୍ୟଜ୍ଞାନ ଲାଭକରି, ଏହାର ଶ୍ରେୟଦେବାକୁ ବିଲ୍ୱମଙ୍ଗଳ ଯେତେବେଳେ ଚିନ୍ତାମଣିଙ୍କ ପାଖକୁ ଫେରନ୍ତି, ସେତେବେଳେ ଚିନ୍ତାମଣି ତାଙ୍କୁ ପ୍ରତ୍ୟାଖ୍ୟାନ କରନ୍ତି । ଚିନ୍ତାମଣିଙ୍କ ପାଖରୁ ନିରାଶ ହେବା ପରେ ବିଲ୍ୱମଙ୍ଗଳ ଉପଲବ୍ଧିର ଯେଉଁ ସଂଳାପଟି କହିଛନ୍ତି, ତାହା ଚମତ୍କାର ଭାବେ ନାଟକରେ ଉପସ୍ଥାପିତ ହୋଇଛି । ଯେପରି –

ବିଲ୍ୱମଙ୍ଗଳ : ଚିନ୍ତାମଣି ! ମୁଁ ଆସିଥିଲି ତମ ପାଇଁ ମଙ୍ଗଳର ବାର୍ତ୍ତାନେଇ... ଦିନେ ମୁଁ ଥିଲି ଅନ୍ୟମାନଙ୍କ ପାଇଁ ଅମଙ୍ଗଳର ଅଶୁଭର ଗୋଟେ ରାହୁ, ଝନ୍‌ଜା ... ଆଜି ମୁଁ ହୋଇଛି ମଙ୍ଗଳର ସମାହିତ ମନ୍ତ୍ରଧ୍ୱନି । (ଆକୁଳ କଣ୍ଠରେ) ମତେ... ମତେ ଫେରାଇ ଦିଅନା ଚିନ୍ତାମଣି ।

ପ୍ରବୃତ୍ତିର ପଙ୍କ ଭିତରୁ ନିବୃତ୍ତିର ଜୟମାଲ୍ୟ ନେଇ ବିଲ୍ୱମଙ୍ଗଳ ନିରାଶ ହୋଇ ଶେଷରେ ବୃନ୍ଦାବନ୍‌ଯାତ୍ରା କରିବା ଭିତରେ ନାଟକର ପରିସମାପ୍ତି ଘଟିଛି । ସତ୍ୟ-ଅସତ୍ୟ, ପାପ-ପୂଣ୍ୟ, ମଙ୍ଗଳ-ଅମଙ୍ଗଳ ପ୍ରକୃତରେ ଗୋଟିଏ ବିନ୍ଦୁରେ । ପ୍ରତ୍ୟେକ ମଣିଷ ଭିତରେ ଥିବା ଅନ୍ଧାରି ଦିଗକୁ ନାଟ୍ୟକାର ବିଲ୍ୱମଙ୍ଗଳ ଚରିତ୍ର ଦ୍ୱାରା ଅଙ୍ଗୁଳି ନିର୍ଦ୍ଦେଶ କରିବା ସହ ଚେତନାର ଉତ୍ତରଣ ଲାଗି ବାର୍ତ୍ତା ଦେଇଛନ୍ତି । ପୁରାଣର ବିଲ୍ୱମଙ୍ଗଳ ନାଟ୍ୟକାର ବିଜୟ ଶତପଥୀଙ୍କ ଏହି ନାଟକରେ ଚିନ୍ତାଧାରା, ଭାବନା ଓ ଚେତନା କ୍ଷେତ୍ରରେ ବହୁ ଊର୍ଦ୍ଧ୍ୱକୁ ଚାଲିଯାଇ ମହାନାୟକର ମାନ୍ୟତା ଲାଭ କରିଛି ।

ନାଟକର ସଂଳାପଗୁଡ଼ିକ ସଂପର୍କରେ ଅନୁଧ୍ୟାନ କଲାବେଳେ ମନେହୁଏ, ଏହା ହୋଇଛି ଆବେଗଧର୍ମୀ ଓ କାବ୍ୟିକଗୁଣ ମଣ୍ଡିତ । ସମୟ, ଭାଗ୍ୟ ଓ ମୃତ୍ୟୁ ସଂପର୍କୀୟ ଦାର୍ଶନିକ ଉଚ୍ଚାରଣମାନ ନାଟ୍ୟକାର ବିଲ୍ୱମଙ୍ଗଳ ଓ ଚିନ୍ତାମଣି ଚରିତ୍ର ମୁହଁରେ ନାଟ୍ୟକାର ଦେଇଛନ୍ତି ପରିବେଶ ଅନୁଯାୟୀ ।

ଚିନ୍ତାମଣି : ସମୟ ସବୁ ଚୋରି କରିନେଇଛି । ସବୁଠି ତା'ର ଛାପ । ଦେହରେ ମନରେ । ଦେଖୁନ, ମୋର ଶିଥିଳ ଚର୍ମ, ମଳିନ କାନ୍ତିକୁ, କେଶ ପାଶରେ ଧୂସର ମେଘର ସ୍ପର୍ଶ । ଆଖିତଳେ ବିଷାଦର କାଳିମା, ଓଠବି ବିବର୍ଣ୍ଣ, ପାଣ୍ଡୁର ।

ନାଟକର ପରିସମାପ୍ତି ବେଳକୁ ରୂପାନ୍ତରିତ ଓ ବୈଷ୍ଣବ ଧର୍ମରେ ଦୀକ୍ଷିତ ବିଲ୍ୱମଙ୍ଗଳ ଚିନ୍ତାମଣି ନିକଟକୁ ଯେତେବେଳେ ଅନେକ ଦିନ ପରେ ଫେରିଛନ୍ତି ଓ ଚିନ୍ତାମଣିକୁ ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ କହିଛନ୍ତି ସେହି ପରିସ୍ଥିତିକୁ ଅନୁଧ୍ୟାନ କରାଯାଇପାରେ ।

ଚିନ୍ତାମଣି : ମଙ୍ଗଳ... ଅମଙ୍ଗଳ, ଅମଙ୍ଗଳ... ପୁଣି ମଙ୍ଗଳ, ଶୁଭ ଅଶୁଭ... ଆସିବା ଫେରିବା, ଆରମ୍ଭ ପୁଣି ଶେଷ... ଏସବୁ ମଣିଷ ମନର କଳ୍ପନା । ସମୟ ଯେମିତି ନିଷ୍ଠୁର ସେମିତିବି ନିସ୍ତରଙ୍ଗ, ଆଉ କାଳ ବଡ଼ ଅବିଶ୍ୱାସୀ । ବାର୍ଦ୍ଧକ୍ୟର ପ୍ରଥମ ପାହାଚରେ ପାଦଦେଇ ମୋର ଏଇ ଅନୁଭବ ହୋଇଛି । ଅନ୍ୟମାନଙ୍କ ପରି କାଳ ହାତରେ ଆମେବି ଖେଳନା । (କିଛି ସମୟ ରହି) ତୁମେ ଯାଅ... (ପୂର୍ବଠାରୁ ଆହୁରି ଦୃଢ଼ ଓ ଉଚ୍ଚ କଣ୍ଠରେ)... ହଁ ଚାଲିଯାଅ... (ଏଣିକି ସେ ଚିତ୍କାର କରିଛି) ଚାଲିଯାଅ... ପ୍ରଳାପର ପ୍ରୟୋଜନ ନାହିଁ ।

ସେହିପରି ରୋମାଣ୍ଟିକ୍ ଅନୁଭବର ମାର୍ମିକ ସଂଳାପ ପୁଣି ଖଞ୍ଜି ଦିଆଯାଇଛି କୌଣସି ଏକ ପରିବେଶକୁ ଅର୍ଥପୂର୍ଣ୍ଣ କରିବା ନିମିତ୍ତ । ଯେମିତି -

ବିଲ୍ୱମଙ୍ଗଳ : ଅବିଳମ୍ବେ ଚାଲ ରସଶେଖର, ଏ ସୁନ୍ଦର ସନ୍ଧ୍ୟାଟାକୁ ନଷ୍ଟ ହେବାକୁ ଦିଅନା- ବ୍ୟର୍ଥ କରି ଦିଅନା... ଏ ସନ୍ଧ୍ୟା ଆଣିଛି ମୋ ରକ୍ତରେ କାମନାର ତରଙ୍ଗ... ଆବେଗର ଶୀତ୍‌କାର... ବୋଳି ଦେଇଚି ଅଜସ୍ର ପୁଷ୍ପରାଗ ମୋ ମନରେ । ଚାଲ... ରସଶେଖର ଚାଲ ।

ସମଗ୍ର ନାଟକ ଭିତରେ ଯେଭଳି ନାଟକୀୟ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ତାହା ନାଟକର କଳାପକ୍ଷକୁ ଜୀବନ୍ତ କରିପାରିଛି । ବିଶେଷ କରି ବିଲ୍ୱମଙ୍ଗଳଙ୍କ ଭିତରେ ପ୍ରବୃତ୍ତି-ନିବୃତ୍ତିର ଦ୍ୱନ୍ଦ୍ୱ ନାଟକକୁ ବଳିଷ୍ଠ କରିଛି । ସତ୍ୟ ସହ ଅସତ୍ୟର, କ୍ଷଣ ଭଂଗୁରତା ସହ ଚିରନ୍ତନତାର ମହାକାଳ ସହ ମଣିଷର ଆସ୍ପର୍ଦ୍ଧାର, ଦେହ ସହ ଦେହାତୀତର, ମଣିଷର ଅନ୍ଧାରୀ ଦିଗ ସହ ଆଲୋକିତ ଚେତନାର ଯେଉଁ ଦ୍ୱନ୍ଦ୍ୱର ଅବତାରଣା ହୋଇଛି, ତାହା ନାଟକକୁ ଦର୍ଶକଙ୍କ ପ୍ରିୟଭାଜନ ହେବା ଲାଗି ପ୍ରବୋଧିତ କରିଛି ।

ଅନ୍ୟପକ୍ଷରେ ନାଟକୀୟ ଉତ୍କଣ୍ଠା ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଦର୍ଶକଙ୍କୁ ବାନ୍ଧି ରଖିବାରେ ସଫଳ ହୋଇଛି । ନାଟକରେ ଅନେକଥର ମୋଡ଼ ବୁଲାଣି ଆସିବାସହ ପ୍ରତିଟି ପର୍ଯ୍ୟାୟରେ ଆଗକୁ କ'ଣ ଘଟିବ ଏ ନେଇ ଦର୍ଶକଙ୍କ ଭିତରେ ସୃଷ୍ଟି ହୋଇଛି ଉତ୍କଣ୍ଠା । ବିଲ୍ୱମଙ୍ଗଳ ଚିନ୍ତାମଣିଙ୍କୁ ତାଙ୍କ ସ୍ୱାମୀଙ୍କୁ ପାଖକୁ ଫେରାଇ ଦେବା, ଚିନ୍ତାମଣି ବେଶ୍ୟାବୃତ୍ତିକୁ ଗ୍ରହଣ କରିବା, ପ୍ରବୃତ୍ତି ପ୍ରବଣ ବିଲ୍ୱମଙ୍ଗଳକୁ ଉତ୍କଟ କାମନା ବାସନା ଲାଗି ଧିକ୍‌କାର କରିବା, ବିଲ୍ୱମଙ୍ଗଳ ବାରମ୍ବାର ପ୍ରବୃତ୍ତିଦ୍ୱାରା ବଶ ହେବା, ନିଜକୁ ଦୃଷ୍ଟିହୀନ କରିଦେବା, ପୁନଶ୍ଚ ଚକ୍ଷୁଲାଭ କରିବାସହ ଦିବ୍ୟଜ୍ଞାନ ପ୍ରାପ୍ତିପରେ ଚିନ୍ତାମଣି ନିକଟକୁ ଯିବା, ଏସବୁ ପ୍ରସଂଗ ଭିତରେ ଦର୍ଶକଙ୍କ ଉତ୍କଣ୍ଠା ତୀବ୍ର ହେବା ସ୍ୱାଭାବିକ । ବଳିଷ୍ଠ ନାଟ୍ୟଦ୍ୱନ୍ଦ୍ୱ ଓ ନାଟକୀୟ ଉତ୍କଣ୍ଠା ଲାଗି 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକଟିକୁ ମଞ୍ଚ ସଫଳତା ମିଳିଛି ।

ଅତଏବ ଅମଙ୍ଗଳର ଅନ୍ଧାର ଓ ପୂତିମୟ ଦୁର୍ଗନ୍ଧ ଭିତରେ ବିଲ୍ୱମଙ୍ଗଳ ମଙ୍ଗଳର ଯେଉଁ ଆଲୋକ ବର୍ତ୍ତିକା ଆଣିଦେଇଛନ୍ତି, ତାହା ନାଟ୍ୟକାର ବିଜୟକୁମାର ଶତପଥୀ ନିଜସ୍ୱ ଦକ୍ଷତା ଅନୁଯାୟୀ ନାଟକର କଳେବର ମଧ୍ୟରେ ରୂପାୟିତ କରିଛନ୍ତି । ଶେଷରେ ଏତିକି କୁହାଯାଇପାରେ, ସଂଗୀତ, ନୃତ୍ୟ ଓ (ଭଂଜ ସାହିତ୍ୟର ପଙ୍‌କ୍ତି, ପୁରାଣର କେତୋଟି ନିର୍ବାଚିତ ପଦ ଓ ନାଟ୍ୟକାରଙ୍କ ରଚିତ କେତୋଟି ଗୀତ) ଆଲୋକ ସଂପାତ ମାଧ୍ୟମରେ ନଟ-ନଟୀଙ୍କ ସହାୟତାରେ ସମଗ୍ର ନାଟକଟିକୁ ନାଟ୍ୟକାର ଯେଉଁଭଳି ପରିବେଷଣ କରିଛନ୍ତି, ତାହାହିଁ ତାଙ୍କର ନାଟ୍ୟ କୌଶଳ-ଦକ୍ଷତା । ତେଣୁ 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ନାଟକ ମଞ୍ଚକଳାଠାରୁ ଦର୍ଶକୀୟ ରୁଚି, ଆବେଦନ ସବୁଥିରେ ସଫଳ ଏକ ଉଚ୍ଚାଙ୍ଗ କୃତି ଭାବେ ଶ୍ରେୟ ପାଇବାକୁ ହକ୍‌ଦାର ।



# 'ସୁନ୍ଦରୀ ପ୍ରତିଯୋଗିତା ଓ ଅନ୍ୟାନ୍ୟ ନାଟିକା' : ଏକ ଅନୁଶୀଳନ

ସମାଜନିଷ୍ଠ ମନୋଭାବ ସହ ସିରିୟସ୍ ଥିମ୍‌କୁ ନେଇ ନାଟ୍ୟକାର ବିଜୟ କୁମାର ଶତପଥୀ ନାଟକ ରଚନା କରିଥିଲେ ମଧ୍ୟ 'ସୁନ୍ଦରୀ ପ୍ରତିଯୋଗିତା ଓ ଅନ୍ୟାନ୍ୟ ନାଟିକା' ସଂକଳନରେ ସ୍ଥାନ ପାଇଥିବା ପାଞ୍ଚଗୋଟି ଛୋଟ ନାଟକ ତାଙ୍କ ନାଟ୍ୟଧାରାଠାରୁ ହୋଇଛି ଭିନ୍ନ ରୀତିର । ଲଘୁହାସ୍ୟ ରସମଣ୍ଡିତ ତାଙ୍କର ଏହି ପାଞ୍ଚଗୋଟି ଛୋଟ ନାଟକ ହାସ୍ୟରସ ସୃଷ୍ଟି କରିବା ସହ ଦର୍ଶକାଦୃତି ଲାଭ କରିଛି । ବ୍ୟଙ୍ଗ ବିଦ୍ରୂପ ଭିତରେ ବି ଏହି ନାଟକଗୁଡ଼ିକରୁ ସାମାଜିକ ସମସ୍ୟା, ସାମାଜିକ ପଟ୍ଟଭୂମି ବାଦ୍ ପଡ଼ିନାହିଁ । ଛୋଟ ନାଟକର କଳା ଓ ଏକାଙ୍କିକାର କଳା ମଧ୍ୟରେ ପାର୍ଥକ୍ୟ ରହିଛି । ଏକାଙ୍କିକାର ଗତି ପଥରେ ଏହା ଏକ ଆନ୍ଦୋଳନ । "ବିଶ୍ୱ ସାହିତ୍ୟରେ ଏକାଙ୍କିକାର ବିକାଶ ପୂର୍ବକୁ ପର୍ଯ୍ୟାଲୋଚନା କଲେ ଜଣାଯିବ ଯେ ଏହା ସମୟ କ୍ରମେ ନୂତନ ଭାବ ସଂପଦ ଆହରଣ କରିବା ସଙ୍ଗେ ସଙ୍ଗେ ନବ ନବ ପ୍ରୟୋଗ ଓ ପରୀକ୍ଷାରୀତିକୁ ମଧ୍ୟ ଗ୍ରହଣ କରିଆସିଛି । ଊନବିଂଶ ଶତକର ଶେଷ ଭାଗରେ ପ୍ୟାରିସ୍‌ଠାରେ ଆତ୍ମପ୍ରକାଶ କରିଥିବା Little Theatre Movement ବା ଜର୍ମାନୀରେ ଦେଖା ଦେଇଥିବା Free Buhne ହେଉଛି ଏକାଙ୍କିକା କ୍ଷେତ୍ରରେ ଏକ ଏକ ଆନ୍ଦୋଳନ । ଏହି Little Threatreକୁ ଓଡ଼ିଆରେ ଛୋଟ ନାଟକ ବୋଲି କୁହାଯାଇପାରିବ । ପରବର୍ତ୍ତୀ କାଳରେ ଅର୍ଥାତ୍ ବିଂଶ ଶତକରେ ଏହି ଛୋଟ ନାଟକର ଧାରା ବିଶ୍ୱ ସାହିତ୍ୟ ଓ ପ୍ରାନ୍ତୀୟ ସାହିତ୍ୟରେ ବିକାଶ ଲାଭ କରିଛି । ମନୋରଂଜନ ଦାସ ହେଉଛନ୍ତି ଓଡ଼ିଆ ନାଟ୍ୟ ସାହିତ୍ୟରେ ଯଥାର୍ଥତଃ ଏହି ଛୋଟନାଟକ ରୀତିର ପ୍ରବର୍ତ୍ତକ ।" (ମନୋରଂଜନଙ୍କ ଶ୍ରେଷ୍ଠ ଏକାଙ୍କିକା ସଂ ଡ. ବିଜୟ ଶତପଥୀ, ପୃ.୨୧)

ଏହି ଛୋଟ ନାଟକର ରଚନା ଧାରାରେ ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ 'ସୁନ୍ଦରୀ ପ୍ରତିଯୋଗିତା ଓ ଅନ୍ୟାନ୍ୟ ନାଟିକା' ଭଳି ନାଟକଗୁଡ଼ିକ ଶିଳ୍ପକଳା ଦୃଷ୍ଟିରୁ ବେଶ୍ ଶକ୍ତିଶାଳୀ ହୋଇପାରିଛି । 'ପତ୍ନୀ ନିର୍ଯ୍ୟାତନା ଭୋଗୀ ସଂଘ', 'କପିଧ୍ୱଜ ପ୍ରସଙ୍ଗ', 'ସୁନ୍ଦରୀ ପ୍ରତିଯୋଗିତା', 'ନିର୍ଧୂମ ପାହାର ଓ କବି କଳ୍ପଦ୍ରୁମ' ଏବଂ 'ନିଖିଳ ଉତ୍କଳ ଶାଶୁ ସମ୍ମିଳନୀ' ଭଳି ପାଞ୍ଚଟି ଛୋଟ ନାଟକ ସରଳ ସେଟ୍ ଡିଜାଇନ୍ ସହ ସହଜ ଭାବରେ ମଞ୍ଚାୟନ ହେବାର ଯୋଗ୍ୟତା ବହନ କରିଛି ।

ପ୍ରଥମେ 'ପତ୍ନୀ ନିର୍ଯ୍ୟାତନା ଭୋଗୀ ସଂଘ' ନାଟକ ସମ୍ପର୍କରେ ବିଚାର କରାଯାଉ । ପାଞ୍ଚଜଣ ପୁରୁଷ ଚରିତ୍ର ଓ ତିନିଜଣ ନାରୀ ଚରିତ୍ରକୁ କେନ୍ଦ୍ର କରି ନାଟକଟି ଗଢ଼ିଉଠିଛି । ନାଟକର ପ୍ରଥମ ଦୃଶ୍ୟଟି ଗଢ଼ିଉଠିଛି କବି ବାଳମୁକୁନ୍ଦଙ୍କ ବୈଠକଖାନାକୁ ନେଇ । ଏହି ଦୃଶ୍ୟରେ କବି ବାଳମୁକୁନ୍ଦ ତାଙ୍କ କବିତା ପାଇଁ ବିଶେଷ କରି 'ପ୍ରିୟତମା' ଶବ୍ଦ ପାଇଁ ପତ୍ନୀଙ୍କର ସନ୍ଦେହଭାଜନ ହେବା ସହ ନିଜ କବିପଣ ପାଇଁ ତିରସ୍କୃତ ହୋଇଛନ୍ତି । ନାଟକର ଦ୍ୱିତୀୟ ଦୃଶ୍ୟରେ ଆକସ୍ମିକ ଭାବେ ପ୍ରିୟତମା ନାମକ ଛାତ୍ରୀ କବି ବାଳମୁକୁନ୍ଦଙ୍କ କବିତା ଉପରେ ଗବେଷଣା କରୁଥିବାରୁ କବିଙ୍କୁ ଦେଖା କରିବାକୁ ଆସି କବି ପତ୍ନୀଙ୍କ ସନ୍ଦେହ ଓ ଅଭଦ୍ର ଆଚରଣର ଶିକାର ହୋଇଛି । ଏପରିକି ତାଙ୍କୁ ଟେରରିଷ୍ଟ୍‌ର ଆଖ୍ୟା ଦେଇ ପୋଲିସ୍ ଥାନାକୁ ନେଇଯାଇଛି । ପ୍ରିୟତମା ପାଇଁ କେବଳ ବାଳମୁକୁନ୍ଦଙ୍କୁ ନିଜ ପତ୍ନୀଙ୍କ ପାଖରୁ ବାରମ୍ବାର ନିନ୍ଦା ଶୁଣିବାକୁ ପଡିଛି । ନାଟକର ତୃତୀୟ ଦୃଶ୍ୟରେ ବାଳମୁକୁନ୍ଦ ନିଜ ବୈଠକ ଘରେ ଏକାକୀ ଥିବାବେଳେ ଏକ ପତ୍ରିକାର ସଂପାଦିକା ନୀଳିମା ନାରୀ ଜାଗରଣ ସମ୍ପର୍କରେ କବିତା ଲେଖିବା ଲାଗି କବିଙ୍କୁ ଅନୁରୋଧ କରିଛନ୍ତି । ସେ କବିଙ୍କ ସାକ୍ଷାତ୍‌କାର ନେଇଥିବା ବେଳେ ତା'ପାଖରେ କବି ବାଳମୁକୁନ୍ଦ ନିଜ ପତ୍ନୀଙ୍କ ନିର୍ଯ୍ୟାତନାର ଗୁମର ଖୋଲି ଦେଇଛନ୍ତି । ନୀଳିମା ପ୍ରତି ବାଳମୁକୁନ୍ଦଙ୍କ ଆବେଗ ଅନୁରାଗ ମଣ୍ଡିତ ସଂଳାପ ମଧ୍ୟରେ ଋକର ଭଜିଆ ପ୍ରବେଶ କରି ତାଙ୍କ ଭାବନାରେ ବ୍ୟାଘାତ ସୃଷ୍ଟି କରିଛି । ନାଟକର ଚତୁର୍ଥ ଦୃଶ୍ୟରେ ବାଳମୁକୁନ୍ଦଙ୍କ ବୈଠକ ଘରେ ପତ୍ନୀ ନିର୍ଯ୍ୟାତନା ଭୋଗ କରୁଥିବା କେତେକ ବ୍ୟକ୍ତି ଏକତ୍ର ହୋଇ ପତ୍ନୀ ନିର୍ଯ୍ୟାତନା ବିରୋଧରେ ସଂଘ ଗଢ଼ିବାର ମସୁଧା ଚଳାଇଛନ୍ତି । କିନ୍ତୁ ସେମାନଙ୍କ ସଭାରେ ନୀଳିମା ଉପସ୍ଥିତ ରହି ପତ୍ନୀମାନଙ୍କ ସପକ୍ଷରେ ଅକସ୍ମାତ ସମର୍ଥନ ଜଣାଇଛି । ପତ୍ନୀ ନିର୍ଯ୍ୟାତନା ଭୋଗ କରୁଥିବା ଏହି ବ୍ୟକ୍ତିମାନଙ୍କ କଥୋପକଥନ ଭିତରେ ପତ୍ନୀ ନିର୍ଯ୍ୟାତନାରୁ ବର୍ତ୍ତିବା ପାଇଁ ଯେଉଁ ଯୋଜନା କରିଛନ୍ତି, ତାହା ହାସ୍ୟରସର ଖୋରାକ ଯୋଗାଇଛି । ନାଟକର ଶେଷ ଦୃଶ୍ୟରେ କବି ବାଳମୁକୁନ୍ଦ ସନ୍ନ୍ୟାସୀ ହେବାର ବାହାନା ଦେଖାଇ କୋକିଳଙ୍କ ପାଖରୁ ମୁକ୍ତି ପାଇବାକୁ ଉଦ୍ୟମ କରିଛନ୍ତି । ମାତ୍ର ସବୁ ସତ ଘଟଣା ଜାଣିବାପରେ କୋକିଳ ନିଜର ତ୍ରୁଟି ସ୍ୱୀକାର କରିନେଇଛନ୍ତି । କିନ୍ତୁ ଶେଷବେଳକୁ ନୀଳିମା ପହଞ୍ଚି ବାଳମୁକୁନ୍ଦଙ୍କ ଅସଲ ଉଦ୍ଦେଶ୍ୟ ସମ୍ପର୍କରେ ସମସ୍ତଙ୍କୁ ଜଣାଇ ଦେଇଛି । ସେ ନାରୀଜାଗରଣ ଆନ୍ଦୋଳନର ନେତୃତ୍ୱ ନେବା ସହ ପତ୍ନୀ ନିର୍ଯ୍ୟାତନା ଭୋଗୀ ସଂଘ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । ପରିଶେଷରେ ବନ୍ଧୁ ସୁଧାକରର ପରାମର୍ଶରେ ପତ୍ନୀ ନିର୍ଯ୍ୟାତନା ଭୋଗୀ ସଂଘ ନୀଳିମାଙ୍କ ନାରୀ ଜାଗରଣ ସଂଘ ସହ ସନ୍ଧି କରିଛି । ବାଳମୁକୁନ୍ଦ ସନ୍ଧି ପରେ "ଆଜି ମୁଁ ତ ଭଗ୍ନଜାନୁ / ହାତେ ନାଇଁ ଅସ୍ତ୍ର" କବିତା ଆବୃତ୍ତି କରି ନିଜ ସଂଘର ପଛଘୁଞ୍ଚାକୁ ସ୍ୱୀକାର କରିଛନ୍ତି । ଏଥିସହିତ ନାଟକର ପରିସମାପ୍ତି ଘଟିଛି । ସମାଜରେ ନାରୀ ଉପରେ ନିର୍ଯ୍ୟାତନା ହେଉଥିବାବେଳେ ନାରୀ ଜାଗରଣ ସ୍ଲୋଗାନ ସହ ଏହାର ପ୍ରତିକାର କରିବା ପାଇଁ ବିଭିନ୍ନ ଅନୁଷ୍ଠାନ ଓ ସରକାରୀ ଆଦେଶନାମା ଥିଲାବେଳେ, ପତ୍ନୀମାନଙ୍କ ଦ୍ୱାରା

ମାନସିକ ନିର୍ଯ୍ୟାତନା ଭୋଗୁଥିବା ପତିମାନେ ଲଜ୍ଜାରେ ମୁହଁ ଖୋଲିପାରନ୍ତି ନାହିଁ । ନାଁ ସେମାନଙ୍କ ଏ ଦୁର୍ଦ୍ଦଶା ପାଇଁ କୌଣସି ପ୍ରତିକ୍ରିୟା ଥାଏ ନା ଥାଏ ସରକାରୀ ଅନୁକମ୍ପା । ସେମାନଙ୍କର ଏହି ଅସହାୟତାକୁ ନାଟ୍ୟକାର 'ପତ୍ନୀ ନିର୍ଯ୍ୟାତନା ଭୋଗୀ ସଂଘ' ନାଟକ ମାଧ୍ୟମରେ ହାସ୍ୟରସ ଛଳରେ ଦର୍ଶାଇପାରିଛନ୍ତି ।

'କପିଧ୍ୱଜ ପ୍ରସଙ୍ଗ' ନାଟକଟିରେ ଶିକ୍ଷା ବ୍ୟବସ୍ଥା ତଥା ଶିକ୍ଷାନୁଷ୍ଠାନ ଭଳି ପବିତ୍ର ପୀଠକୁ କବ୍‌ଜା କରିବାକୁ ବିଶୃଙ୍ଖଳ ଅସାଧୁ ପ୍ରବୃତ୍ତିର ଲୋକେ ପ୍ରୟାସ କରି କିପରି ବିଫଳ ହୋଇଛନ୍ତି ତାହା ଦର୍ଶାଇ ଦିଆଯାଇଛି । ନାଟକ ଆରମ୍ଭ ହେଲାବେଳକୁ କୌଣସି ଏକ ସଭା ଆରମ୍ଭ ହେବାର ଦୃଶ୍ୟର ଅବତାରଣା ହୋଇଛି । ସଭାକୁ ଜଣେ ବିସ୍ମୟକର ଆଚରଣ ପ୍ରଦର୍ଶନ କରୁଥିବା ବ୍ୟକ୍ତି କପିଧ୍ୱଜ ଅତିଥି ଭାବେ ନିଜର ଚେଲାଚମୁଣ୍ଡାଙ୍କୁ ଧରିଆସିଛି । ସଭାରେ ଗୋଟିଏ ବିଦ୍ୟାଳୟର ଜନୈକ ପ୍ରଧାନ ଶିକ୍ଷକଙ୍କୁ ସମ୍ବର୍ଦ୍ଧନା ଜଣାଇ ସଭା ଅନୁଷ୍ଠିତ ହେବାର ସୂଚନା ମିଳିଛି । କିନ୍ତୁ ସେଠାରେ କପିଧ୍ୱଜ ସେହି ଆଦର୍ଶ ଶିକ୍ଷକ ଦଣ୍ଡପାଣିଙ୍କ ନିନ୍ଦାଗାନ କରିବା ସହ ତାଙ୍କରି ଯୋଗୁ ସେ କପି କରି ଧରା ପଡ଼ିଥିଲା ବୋଲି ଗର୍ବର ସହ ଘୋଷଣା କରିଛି । ସଭାରେ ଉପସ୍ଥିତ ବ୍ୟକ୍ତି ଏପରିକି ସେହି ସ୍କୁଲର ପୁରାତନ ଛାତ୍ରଛାତ୍ରୀ ଏହାର ପ୍ରତିବାଦ କରିବାରୁ ସେମାନଙ୍କୁ କପିଧ୍ୱଜଙ୍କ ଗୁଣ୍ଡାମାନେ ଆୟତ୍ତ କରିଛନ୍ତି । କପିତତ୍ତ୍ୱ ପ୍ରଚାର କରିବା ସହ ସ୍କୁଲ୍‌ରେ କପି କରିବାକୁ କପିଧ୍ୱଜ ପ୍ରୋତ୍ସାହନ ଦେଇଛି । କପିଧ୍ୱଜଙ୍କ ଏଭଳି ଆଚରଣରେ ସଭାରେ ଉପସ୍ଥିତ ଜନତା ବ୍ୟତିବ୍ୟସ୍ତ ହୋଇପଡ଼ିବା ବେଳେ ପହଞ୍ଚିଛନ୍ତି ସିବିଆଇ ଇନ୍‌ସପେକ୍ଟର । କପିଧ୍ୱଜଙ୍କୁ ଜଣେ ସ୍ମଗଲ୍‌ର ବ୍ରାଉନ୍‌ସୁଗାର ବେପାରୀ ବୋଲି ଜାଣିବା ପରେ ତାଙ୍କ ଚେଲାଚମୁଣ୍ଡା କୌଶଳରେ ତାଙ୍କ ପାଖରୁ ଖସି ଯାଇଛନ୍ତି । ପୁଣି S.P. ସୁଧୀର ସେଠାରେ ପହଞ୍ଚି କପିଧ୍ୱଜକୁ ଥାନାକୁ ନେଇଯିବାକୁ ଇନ୍‌ସପେକ୍ଟରଙ୍କୁ ଆଦେଶ ଦେଇଛନ୍ତି । ବନ୍ଧୁତାର ଦ୍ୱାହି ଦେଇ କପିଧ୍ୱଜ ଖସିବାର ଚେଷ୍ଟା କରିଥିଲେ ବି ସଫଳ ହୋଇପାରିନାହାନ୍ତି । ଏହିଭଳି କୁତ୍ସିତ ବ୍ୟକ୍ତିକୁ ସଭାରେ ନିମନ୍ତ୍ରଣ କରିଥିବା କାରଣରୁ ସ୍କୁଲର ସଭାପତି ଅନାଥଙ୍କୁ ମଧ୍ୟ ସମାଲୋଚନାର ଶିକାର ହେବାକୁ ପଡ଼ିଛି । ଉଭୟ ଅନାଥ ବନ୍ଧୁ ଓ ସୁଧୀର ଶିକ୍ଷକ ଦଣ୍ଡପାଣିଙ୍କ ଛାତ୍ରଥିବାରୁ ଦଣ୍ଡପାଣିଙ୍କ ଉପସ୍ଥିତି ସେମାନଙ୍କ ମନରେ ଗୁରୁଙ୍କ ପ୍ରତି ସମ୍ମାନବୋଧ ଆଣିଛି । ନିଜ ଛାତ୍ର ସୁଧୀରର ସଫଳତା ଦଣ୍ଡପାଣିଙ୍କ ଗୁରୁପଣିଆର ମହତ୍ତ୍ୱ ବଢ଼େଇ ଦେଇଛି । ସୁଧୀର ଦଣ୍ଡପାଣିଙ୍କୁ ସଭାରେ ଉଦ୍‌ବୋଧନ ଦେବାପାଇଁ ଅନୁରୋଧ କରିବା ଭିତରେ ନାଟକର ପରିସମାପ୍ତି ଘଟିଛି । ଶିକ୍ଷାନୁଷ୍ଠାନର ପବିତ୍ର ବାତାବରଣରେ ବିଶୃଙ୍ଖଳା ଓ ଅରାଜକତା ଏବେ କିପରି ମାଡ଼ିଚାଲିଛି, ଯାହା ମୁଷ୍ଟିମେୟ ବିଶୃଙ୍ଖଳିତମାନଙ୍କ ହାତରେ ରହିଛି, ତାହାର ବ୍ୟଙ୍ଗାତ୍ମକ ଉପସ୍ଥାପନା ଏହି ନାଟକର ପରିଲକ୍ଷିତ ହୁଏ ।

ତୃତୀୟ ନାଟକ 'ସୁନ୍ଦରୀ ପ୍ରତିଯୋଗିତା' ସାଂପ୍ରତିକ ସମୟର ରିଅଲିଟି ସୋ ଓ ବିୟୁଟି କଣ୍ଟେଷ୍ଟ୍ ବିଷୟରେ ଏକ ବ୍ୟଙ୍ଗାତ୍ମକ ଆଭିମୁଖ୍ୟ ପୋଷଣ କରିଛି । ନାଟକର ପ୍ରଥମ ଦୃଶ୍ୟରେ ସୁନ୍ଦରୀ ପ୍ରତିଯୋଗିତା ହେବାର ଢେଙ୍ଗୁରା ଶୁଣିବାପରେ କିଛି ରକ୍ଷଣଶୀଳ ବ୍ୟକ୍ତି

ଏହାର ପ୍ରତିବାଦ କରିଛନ୍ତି । ସେମାନଙ୍କ ପ୍ରତିବାଦକୁ ଭ୍ରୂକ୍ଷେପ ନ କରି ହାଟ ପଡ଼ିଆରେ ବିୟୁଟି କଣ୍ଟେଷ୍ଟ୍ କରିବାକୁ ସ୍ଥାନୀୟ କଲେଜରେ ଯୁବକ ପଞ୍ଚାନନ ଓ ସରପଞ୍ଚ ମାନଧାତା ପ୍ରାଣମୂର୍ଚ୍ଛା ଉଦ୍ୟମ କରିଛନ୍ତି । ସେମାନଙ୍କ ଯୋଜନାରେ ବିଘ୍ନ ଘଟାଇ ବାବଜୀ ସାଧୁଦାସ ସଂକୀର୍ତ୍ତନମଣ୍ଡଳୀ ସହ ଉପସ୍ଥିତ ହୋଇ ହାଟ ପଡ଼ିଆରେ ସଂକୀର୍ତ୍ତନ କରିବାର ସୂଚନା ଦେଇଛନ୍ତି । ମାନ୍‌ଧାତା ଏହାକୁ ଅସ୍ୱୀକାର କରିବାରୁ ସାଧୁଦାସ ଆବଶ୍ୟକ ପଡ଼ିଲେ ସାଧୁମାନଙ୍କର ଅନଶନ ସହାୟତାରେ ସୁନ୍ଦରୀ ପ୍ରତିଯୋଗିତାକୁ ବନ୍ଦ କରି ସଂକୀର୍ତ୍ତନ କରିବାକୁ ସଂକଳ୍ପବଦ୍ଧ ହୋଇଛନ୍ତି । ତଥାପି ମାନ୍‌ଧାତା ନିଜ ଜିଦ୍‌ରୁ ନ ଓହରି ସୁନ୍ଦରୀ ପ୍ରତିଯୋଗିତା କରିବାର ଯୋଜନା ପ୍ରସ୍ତୁତ କରିଛନ୍ତି ।

ନାଟକର ଦ୍ୱିତୀୟ ଦୃଶ୍ୟରେ ଇଂରାଜୀ ଅଧ୍ୟାପକ ଅମର ତାଙ୍କର ଛାତ୍ରୀ ମିତ୍ରାକୁ ଏହି ସୁନ୍ଦରୀ ପ୍ରତିଯୋଗିତା ବନ୍ଦ କରି କବିତା ପାଠୋତ୍ସବର ଆୟୋଜନ କରିବା ଲାଗି ପରାମର୍ଶ ଦେଇଛନ୍ତି । ଅମର ଓ ମିତ୍ରାଙ୍କ କଥୋପକଥନକୁ ପଞ୍ଚାନନ ସନ୍ଦେହ ଦୃଷ୍ଟିରେ ଦେଖିବା ସହ ମିତ୍ରାକୁ ସୁନ୍ଦରୀ ପ୍ରତିଯୋଗିତା ପ୍ରତି ସମର୍ଥନ ଜଣାଇବା ଲାଗି ଅନୁରୋଧ କରିଛି । ମାତ୍ର ମିତ୍ରା ପଞ୍ଚାନନର ଅସଭ୍ୟ ଆଚରଣରେ ବ୍ୟତିବ୍ୟସ୍ତ ହୋଇ ତାକୁ ପ୍ରତ୍ୟାଖ୍ୟାନ କରି ଚାଲିଯାଇଛି । ମିତ୍ରା ଯିବା ପରେ ପଞ୍ଚାନନର ବାପା ଚନ୍ଦ୍ରାନ୍ନା ନିଜ ପୁଅକୁ ଏଇ ଭୁଲ୍ ରାସ୍ତାରୁ ବାହାରି ସୁଧୁରିଯିବାର ପରାମର୍ଶ ଦେଇଛନ୍ତି । ଚନ୍ଦ୍ରାନ୍ନା ପରେ ମଞ୍ଚକୁ ହିଞ୍ଜଡା ସତିଆ ପ୍ରବେଶ କରି ସେଠାରେ ସୁନ୍ଦରୀ ପ୍ରତିଯୋଗିତା ବଦଳରେ ହିଞ୍ଜଡା ସମ୍ମିଳନୀ କରିବାର ସୂଚନା ଦେଇଛି । ନାଟକର ତୃତୀୟ ଦୃଶ୍ୟରେ ଏମ୍.ଏଲ୍.ଏ. ଚୂଡ଼ାମଣି ଓ ସରପଞ୍ଚ ମାନ୍‌ଧାତା, ତୋଷାମଦିଆ କରୁଣାକର, ମହିଳା ନୋମିନୀ ମାତାଜୀ ହାଟ ପଡ଼ିଆରେ ବସି ସୁନ୍ଦରୀ ପ୍ରତିଯୋଗିତାକୁ ସଫଳଭାବେ ଆୟୋଜନ କରିବାର ଯୋଜନା କରୁଥିଲାବେଳେ ଚୂଡ଼ାମଣିଙ୍କ ନାତି ଟୁନା ହାତରେ ବ୍ୟାଟ୍ ଧରି ସେଇ ପଡ଼ିଆରେ କ୍ରିକେଟ୍‌ମ୍ୟାଚ୍ କରିବାର ସଙ୍କେତ ଦେଇଛି । ନାଟକର ଚତୁର୍ଥ ଦୃଶ୍ୟରେ ହାଟ ପଡ଼ିଆରେ ଉପସ୍ଥିତ ସଭାଜନଙ୍କୁ ନାରୀନେତ୍ରୀ ସରିତା ଉଦ୍‌ବୋଧନ ଦେଇ ସୁନ୍ଦରୀ ପ୍ରତିଯୋଗିତାକୁ ବିରୋଧ କରିବାକୁ ପ୍ରବର୍ତ୍ତାଇଛି । ଠିକ୍ ସେଇ ସମୟରେ ହିଞ୍ଜଡ଼ା ସତିଆ, ବାବାଜୀ ସାଧୁଦାସ, ଟୁନା ଆସି ନିଜ ନିଜ କାର୍ଯ୍ୟ ସଂପାଦନାପାଇଁ ଦାବି ଜଣାଇଛନ୍ତି । ଏପରିକି ପଞ୍ଚାନନ ବି ସୁନ୍ଦରୀ ପ୍ରତିଯୋଗିତା ଆରମ୍ଭ କରିଦେଇଛନ୍ତି । ପରବର୍ତ୍ତୀ କାଳରେ ଏମାନେ ପରସ୍ପର ଭିତରେ ଗଣ୍ଡଗୋଳ କଲାବେଳେ ପୋଲିସ୍ ସବ୍ ଇନସ୍‌ପେକ୍ଟର ପହଞ୍ଚି ପରିସ୍ଥିତିକୁ ନିୟନ୍ତ୍ରଣାଧୀନ କରିଛନ୍ତି । ସମସ୍ତ ପ୍ରୋଗ୍ରାମ୍ ବାତିଲ୍ କରିବା ସହ ପଞ୍ଚାନନ ଓ କରୁଣାକରକୁ ସେହି ସ୍ଥାନରେ ଶାନ୍ତି ପ୍ରତିଷ୍ଠା ପାଇଁ ସହଯୋଗ କରିବାକୁ ଅନୁରୋଧ କରି ସାଥିରେ ଡାକିନେଇଛନ୍ତି । ପରିଶେଷରେ ସେଠାରେ କୌଣସି ପ୍ରତିଯୋଗିତା ନ ହେବା ସହ ସୁନ୍ଦରୀ ପ୍ରତିଯୋଗିତା ବାତିଲ୍ ହେବାର ସୂଚନା ଡେଙ୍ଗୁରାବାଲା ଦେଇଛି ଓ ଏଥିସହିତ ନାଟକଟି ଶେଷ ହୋଇଛି । ସୁନ୍ଦରୀ ପ୍ରତିଯୋଗିତା ଭଳି ଅନ୍ୟାନ୍ୟ

ପ୍ରତିଯୋଗିତାକୁ କେନ୍ଦ୍ର କରି ଯେଉଁ ବିଶୃଙ୍ଖଳ ପରିସ୍ଥିତି ସୃଷ୍ଟି ହୋଇଛି ନାଟ୍ୟକାର ତାହାକୁ ବିଦ୍ରୂପାତ୍ମକ ଭାବରେ ଏଠାରେ ଉପସ୍ଥାପନ କରିଛନ୍ତି । ସଂପ୍ରତି ବିଶ୍ୱ ସୁନ୍ଦରୀଠାରୁ ଏସିଆ ପୁଣି ଭାରତ ସୁନ୍ଦରୀ ଓ ଦିଲ୍ଲୀ ସୁନ୍ଦରୀ ବା ବମ୍ବେ ସୁନ୍ଦରୀ ପରି ଯେଉଁ ପ୍ରତିଯୋଗିତାମାନ ଅନୁଷ୍ଠିତ ହେଉଛି ସେଥିପ୍ରତି ନାଟ୍ୟକାରଙ୍କର ଶାଣିତ ବ୍ୟଙ୍ଗକୁ ଏଠାରେ ଲକ୍ଷ୍ୟ କରାଯାଇପାରେ ।

'ନିର୍ଧୂମ ପାହାର ଓ କବି କଳ୍ପଦ୍ରୁମ' ନାଟକରେ ସାହିତ୍ୟ, କଳାର ଦଲାଲୀ ଓ ବ୍ୟବସାୟୀକରଣ ବ୍ୟବସ୍ଥାକୁ ବିଦ୍ରୂପ କରାଯାଇଛି । କବି କଳ୍ପଦ୍ରୁମ 'ନିର୍ଧୂମ ପାହାର' ନାମକ ଛୋଟକାଟିଆ ପତ୍ରିକାଟେ ସଂପାଦନା କରି ନବ ପ୍ରତିଭାମାନଙ୍କୁ ଶୋଷଣ କରିଚାଲିଛନ୍ତି । ସାହିତ୍ୟିକମାନଙ୍କ ପାଖରୁ ଅର୍ଥନେଇ ସେମାନଙ୍କୁ ସମ୍ବର୍ଦ୍ଧନା ଓ ସମ୍ମାନ ଦେଉଥିବା କଳ୍ପଦ୍ରୁମ ଭିତରେ ନାଟ୍ୟକାର ଏକ ଭୟଙ୍କର ସାହିତ୍ୟର ଦଲାଲକୁ ଚିହ୍ନଟ କରିଛନ୍ତି । ହୁତାଶନ ଭଳି ଯୁବକବିର କବିତା ଛାପିବା ପାଇଁ ଅର୍ଥ ନେବା ପୁଣି ଜାନୁଘଣ୍ଟ ଭଳି ନବୀନ ଲେଖକଠାରୁ ଅର୍ଥ ନେଇ ସେ ସାହିତ୍ୟ ଓ କଳାର ଦଲାଲି ଓ ବ୍ୟବସାୟ କରିଛି । ଏପରିକି କଳ୍ପଦ୍ରୁମ ତା'ର ପତ୍ରିକା କାର୍ଯ୍ୟରେ ସହଯୋଗ କରୁଥିବା ଘନ ଓ କଳ୍ପନାକୁ ସେମାନଙ୍କ ପାରିତୋଷିକ ପ୍ରଦାନ କରିବାରେ କୁଣ୍ଠାବୋଧ କରିଛି । ଆହୁରି ମଧ୍ୟ ପୁଣ୍ଡରୀକ ଶ୍ରୀଚନ୍ଦନ ପରି ଅଭିନେତା କଳ୍ପଦ୍ରୁମ ପାଖକୁ ପୁରସ୍କାର ଲାଳସାରେ ଧାଇଁ ଆସି ଅର୍ଥଦେଇ ପୁରସ୍କାର ନେବାର ମସୁଧା କରିଛି । ନୃତ୍ୟପ୍ରବୀଣ ନଟବନ୍ଧୁ ମଧ୍ୟ ଅର୍ଥ ମାଧ୍ୟମରେ ପୁରସ୍କାର ନେବାକୁ ଲାଳାୟିତ ହୋଇଛି । ଅପରପକ୍ଷରେ କଳ୍ପନା ଓ ହୁତାଶନ ମଧ୍ୟରେ ପ୍ରେମ ସମ୍ପର୍କ ଗଢ଼ିଉଠିଛି । ଦୁହେଁ ନିଜର ଅଧ୍ୟାପକ ବନବିହାରୀଙ୍କ ପାଖରୁ କବି କଳ୍ପଦ୍ରୁମଙ୍କ ସମ୍ପର୍କରେ ସତ୍ୟାସତ୍ୟ ଜାଣିବାପରେ କଳ୍ପଦ୍ରୁମ କବଳରୁ ମୁକୁଳିବାର ପ୍ରୟାସ କରିଛନ୍ତି । କଳ୍ପଦ୍ରୁମ କଳ୍ପନା ପ୍ରତି ଆସକ୍ତ ହୋଇ ତା ପ୍ରତି ଅଭଦ୍ରୋଚିତ ଆଚରଣ କଲାବେଳେ ତାର ପତ୍ନୀ ମନମୋହିନୀ ହାବୁଡ଼ରେ ପଡିଯାଇଛନ୍ତି । ତାର ଅସଲ ନାମ ଓ ପରିଚୟ ନିର୍ଧୂମ ଝାଡୁ ପ୍ରହାରରେ ବାହାରକୁ ଚାଲିଆସିଛି । ତାର ଛଦ୍ମତାର ମୁଖା ଖୋଲିଯାଇଛି । ନାଟକର ପରିଣତିରେ କଳ୍ପନା ସହ ହୁତାଶନର ପରିଣୟ ହୋଇଛି । 'ନିର୍ଧୂମ ପ୍ରହାର'ର ସଂପାଦକ କଳ୍ପଦ୍ରୁମ ଓରଫ୍ କଳ୍ପତରୁ ନିଜ ପତ୍ନୀର ହାତରୁ ଝାଡୁ ପ୍ରହାର ଖାଇ ସୁଧୁରିଯିବା ଅନ୍ୟ ସାଂସ୍କୃତିକ ସାହିତ୍ୟିକ ଦଲାଲମାନଙ୍କ ପାଇଁ ଚେତାବନୀ ସଦୃଶ ହୋଇଛି । କଳା ସଂସ୍କୃତିର ଏ ପ୍ରକାର ଦଲାଲୀ ଓ ବ୍ୟବସାୟୀକରଣକୁ ନାଟ୍ୟକାର ଚମତ୍କାର ଭାବେ ପରିବେଷଣ କରିଛନ୍ତି ।

'ନିଖିଳ ଉତ୍କଳ ଶାଶୁ ସମ୍ମିଳନୀ' ନାଟକରେ ପାରିବାରିକ ବିଚ୍ଛିନ୍ନତାବୋଧ ସମ୍ପର୍କରେ ଅବତାରଣା କରାଯାଇଛି । ପରିମଳଙ୍କ ବୈଠକଘରେ ତାଙ୍କ ପତ୍ନୀ କମଳିନୀ ଓ ଅନ୍ୟ ବୟସ୍କ ସ୍ତ୍ରୀଲୋକମାନେ ଏକତ୍ର ହୋଇ ନିଜ ବୋହୂମାନଙ୍କର ଆଚରଣ ବ୍ୟବହାର ସମ୍ପର୍କରେ ଏଣୁ ତେଣୁ ସମାଲୋଚନା କରିଛନ୍ତି । ଆଜିର ସମାଜରେ ପୁଅ ବିବାହ କଲାପରେ ନିଜ ସ୍ତ୍ରୀ

କଥାରେ ପରିଚାଳିତ ହେଉଛି ଏବଂ ବୋହୂର କର୍ତ୍ତୃତ୍ୱ ଶାଶୂ-ଶ୍ୱଶୁରଙ୍କ ଉପରେ ଜାହିର ହେଉଛି, ଯାହାର ଶିକାର ସେଠାରେ ଉପସ୍ଥିତ ଥିବା ମହିଳାମାନେ ହୋଇଛନ୍ତି । କମଳିନୀଙ୍କ ପୁଅ ନିଜ ସ୍ତ୍ରୀର କଥାରେ ପରିଚାଳିତ ହୋଇ ନିରପେକ୍ଷ ରହୁଥିବାବେଳେ ଶାଶୂ ସହିତ ବୋହୂର ମନାନ୍ତର ତୀବ୍ର ହୋଇଉଠିଛି । ତେଣୁ କମଳିନୀ କହିଛନ୍ତି –

କମଳିନୀ : ଶାଶୁମାନେ ଦାରୁଭୂତ ମୁରାରୀ, ପୁଅମାନେ ମେଣ୍ଢା, ଘରପାଲଟିଛି ଚିଡ଼ିଆଖାନା, ବୋହୂ ସେଠି ରିଂ ମାଷ୍ଟର । ତା' କଥାରେ କେତେ ଉଠ୍‌ବସ୍ ହେବେ ଶାଶୁମାନେ ।

ଏହି ଶାଶୁମାନେ ଆପଣା ବୋହୂର ଦୋଷଦୁର୍ବଳତା ଉଖାରିଲାବେଳେ କମଳିନୀଙ୍କ ବୋହୂ ଆସିବାର ସୂଚନା ପାଇ ଛତ୍ରଭଙ୍ଗ ହୋଇଛନ୍ତି । ପୁଣି କମଳିନୀଙ୍କ ବୋହୂ ନିଜର ଶାଶୂକୁ ଅମର୍ଯ୍ୟାଦା କରିବା ସହ ନିଜ ପୁଅକୁ ବୋର୍ଡିଂ ସ୍କୁଲରେ ଛାଡ଼ି ଶାଶୁଙ୍କଠାରୁ ମାନସିକ ସ୍ତରରେ ବିଚ୍ଛିନ୍ନ ହେବାର ଚେଷ୍ଟା କରିଛି । ଏପରିକି ମିନୁ ଅନ୍ୟ ଜଣେ ପୁରୁଷ ସହ ସମ୍ବନ୍ଧ ରଖି ଶାଶୂ ଘରକୁ ପଛ କରିଦେଇ ସେହି ଯୁବକ ସହିତ ଯିବାପାଇଁ ଘରୁ ବାହାରିଛି । ଏ ଘଟଣା କମଳିନୀ ଓ ତାଙ୍କ ଝିଅ ମାନିନୀକୁ ବ୍ୟଥିତ କରିଛି । ପରବର୍ତ୍ତୀ ଦୃଶ୍ୟରେ ବୋହୂ ଦ୍ୱାରା ନିର୍ଯ୍ୟାତିତ ଶାଶୁମାନେ ନିଜର ସୁରକ୍ଷା ଓ ବୋହୂଙ୍କ କବଳରୁ ମୁକ୍ତ ହେବାର ଯେଉଁ ଯୋଜନା କରିଛନ୍ତି, ତାହା ହାସ୍ୟକର ମନେହୋଇଛି । ନାଟକର ପରିଣତିରେ କମଳିନୀଙ୍କ ସ୍ୱାମୀ ପରିମଳ ଏସବୁ ଶାଶୁ ସମ୍ମିଳନୀ ଭଳି ନିରର୍ଥକ ଚିନ୍ତାଧାରାରୁ ଦୂରେଇ ଉତ୍ତମ ସମ୍ପର୍କ ଭିତରେ ପାରିବାରିକ ଜୀବନକୁ ସଜାଡ଼ିବା ପାଇଁ ପରାମର୍ଶ ପତ୍ନୀଙ୍କୁ ଦେଇଛନ୍ତି । ଏଥିସହିତ ନାଟକଟି ଶେଷ ହୋଇଛି । ପରିବାର ଭିତରେ ଶାଶୁ ବୋହୂ ବା ଅନ୍ୟ ସମ୍ପର୍କୀୟଙ୍କ ଭିତରେ ନିଜର ଅହଂଭାବ, ଉଗ୍ର ଆଚରଣ, ସ୍ୱେଚ୍ଛାଚାରୀ ଜୀବନ ବଞ୍ଚିବାର ଚିନ୍ତାଧାରା ଯେଉଁ ବିଚ୍ଛିନ୍ନତାବୋଧ ସୃଷ୍ଟି କରିଛି, ତାହାର ଅବତାରଣା କରିବା ଭିତରେ ନାଟ୍ୟକାର ଶୃଙ୍ଖଳିତ ବୁଝାମଣା ମଧ୍ୟରେ ପରିବାର ଗଠନର ପରାମର୍ଶ ଦେଇଛନ୍ତି ।

ବିଜୟ କୁମାର ଶତପଥୀଙ୍କ ହାସ୍ୟରସପୂର୍ଣ୍ଣ ଏହି ନାଟକଗୁଡ଼ିକରେ ବ୍ୟଙ୍ଗ, ହାସ୍ୟରସ ଯେତିକି ମୁଖ୍ୟ ପ୍ରସଙ୍ଗ ନ ହୋଇଛି, ତା' ତୁଳନାରେ ସମାଜ ବ୍ୟବସ୍ଥା ଭିତରେ ଥିବା ତ୍ରୁଟିଗୁଡ଼ିକ ମୁଖ୍ୟ ହୋଇ ଆମ ସାମ୍ନାରେ ଉପସ୍ଥାପିତ ହୋଇପାରିଛି । ହାସ୍ୟରସ ପରିବେଷଣର କୌଶଳକୁ ଉପଜୀବ୍ୟ କରି ତା' ମାଧ୍ୟମରେ ନାଟ୍ୟକାର ସମାଜ ବ୍ୟବସ୍ଥାର ଦୁର୍ବଳ ଦିଗଗୁଡ଼ିକ ପ୍ରତି ସଚେତନ କରାଇ ଦେଇଛନ୍ତି । ମଞ୍ଚାୟନ ପାଇଁ ଏ ନାଟକଗୁଡ଼ିକରେ କୌଣସି କୌଶଳ ବ୍ୟବହାର କରାଯାଇନାହିଁ । ସେଟ୍ ଡିଜାଇନ୍ ବି ସରଳ ହୋଇଛି । ପ୍ରତ୍ୟେକ ନାଟକ ଭିତରେ ରହିଛି ବଳିଷ୍ଠ ବାର୍ତ୍ତା । ଏହି ଛୋଟ ନାଟକଗୁଡ଼ିକ ଓଡ଼ିଆ ନାଟକର ବିକାଶ ପର୍ବରେ ନିଜର ଗୁରୁତ୍ୱକୁ ସାବ୍ୟସ୍ତ କରିବାରେ ସମର୍ଥ ହୋଇପାରିଛି ।



ପରିଶିଷ୍ଟ

# ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ ସହିତ କେତୋଟି ମୁହୂର୍ତ୍ତ...

ପ୍ରଶ୍ନ : ୧୯୭୦ ମସିହା ପରବର୍ତ୍ତୀ କାଳରେ ଆପଣ ନାଟକ ରଚନାରେ ମନୋନିବେଶ କରିଥିଲେ । ସେତେବେଳେ ମନୋରଂଜନ ଦାସ, ବିଜୟ ମିଶ୍ର, ବିଶ୍ୱଜିତ୍ ଦାସ, ରମେଶ ପାଣିଗ୍ରାହୀ ପ୍ରଭୃତିଙ୍କ ନାଟ୍ୟଧାରାଠାରୁ ଭିନ୍ନ ଏକ ନାଟ୍ୟଧାରାର ସଂକେତ ଆପଣଙ୍କ ନାଟକଗୁଡ଼ିକରେ ରହିଛି । ସେ ସମ୍ପର୍କରେ କହିବେ କି ?

ଉତ୍ତର : ୧୯୭୦ ମସିହା ପରବର୍ତ୍ତୀ କାଳରେ ଅର୍ଥାତ୍ ୧୯୭୨ ମସିହା ବେଳକୁ ମୁଁ ଯେତେବେଳେ ନାଟକ ରଚନାରେ ମନୋନିବେଶ କଲି, ସେତେବେଳକୁ କାଳୀଚରଣ ପଟ୍ଟନାୟକଙ୍କ ପ୍ରବର୍ତ୍ତିତ ରିଏଲିଷ୍ଟିକ୍ ନାଟ୍ୟଧାରା ବିଦାୟ ନେଇସାରିଥିଲା । ଖୁବ୍ ସକ୍ରିୟ ଥିଲା ମନୋରଂଜନ ଦାସ ଓ ତାଙ୍କ ସତୀର୍ଥମାନଙ୍କର ଅନ୍ତର୍ଗତ ବାସ୍ତବତାର ନାଟ୍ୟ ପ୍ରବୃତ୍ତି । ଏହି ନାଟ୍ୟଧାରାରେ ମଣିଷର ତଥା ପରିପାର୍ଶ୍ୱର external realityକୁ ଗୁରୁତ୍ୱ ଦିଆନ ଯାଇ ତା'ର inner reality ର ସୂକ୍ଷ୍ମାତିସୂକ୍ଷ୍ମ ଚିତ୍ର ଦିଆଯାଇଥାଏ । ଅବଶ୍ୟ ନାଟକ ଏହି ଧାରାକୁ ନେଇ ମୋର ଛାତ୍ର ଜୀବନରେ ମୁଁ ଗୋଟିଏ ଛୋଟ ନାଟକ 'ଫସିଲ୍‌ର ନିଦ୍ରାଭଙ୍ଗ' ଲେଖିଥିଲି । ମଣିଷର ସ୍ୱପ୍ନ ଓ ବାସ୍ତବତାର ସଂଘର୍ଷକୁ ନେଇ ନାଟକଟି ଲିଖିତ । କିନ୍ତୁ ତା'ର ବର୍ଷେ କି ଦେଢ଼ବର୍ଷ ପରେ ମୁଁ ଯେତେବେଳେ 'ଦିବଣ୍ଟି ସହର' ବୋଲି ଆଉ ଗୋଟିଏ ଛୋଟ ନାଟକ ଲେଖିଲି, ସେତେବେଳକୁ ଭିନ୍ନ ଏକ ନାଟ୍ୟ ସ୍ୱର ମତେ ଆଚ୍ଛନ୍ନ କରି ରଖିଥିଲା । ତାହା ହେଲା ଏକ ବୃହତ୍ତମ ପଟ୍ଟଭୂମିରେ ଜୀବନର ଛବି ଆଙ୍କି ସେଥିରେ ସାମାଜିକ ଅଂଗୀକାରର ବାର୍ତ୍ତା ଶୁଣାଇବା । ପ୍ରେମ, ପାରିବାରିକ ଜୀବନର ଚିତ୍ରଠାରୁ ଆହୁରି ବ୍ୟାପକ ସାମାଜିକ ଜୀବନର ଚିତ୍ର ଦେଇ ତା'ର ବିଚ୍ୟୁତିଗୁଡ଼ିକ ଦର୍ଶାଇ ସମାଜ ପରିବର୍ତ୍ତନର ସଂକେତ ଦେବା ଥିଲା ସେତେବେଳେ ମୋ ନାଟକର ଭିତ୍ତିଭୂମି । ମୋର ଧାରଣା ହେଉଛି, 'ଫସିଲ୍‌ର ନିଦ୍ରାଭଙ୍ଗ' ପରେ ମୁଁ ପାରିବାରିକ ପୃଷ୍ଠଭୂମି

ଆଧାରିତ 'କ୍ଷୁଧିତ ସରୀସୃପ' ପରି ଖଣ୍ଡେ ଦି'ଖଣ୍ଡ ନାଟକ ଲେଖିଥିବି, ନଚେତ୍ ପ୍ରାୟତଃ ମୋର ନାଟକ ଗୁଡ଼ିକରେ ରହିଛି ସମଗ୍ର ମଣିଷ ଜୀବନ ସାମ୍ନା କରୁଥିବା ସମସ୍ୟା ଓ ବିଘଟିତ ମୂଲ୍ୟବୋଧର ଚିତ୍ର । ସେଥିପାଇଁ ମୋ ନାଟକର କାହାଣୀ ଭାଗରେ ଯେମିତି ଥାଏ ବୃହତ୍ତର ସମାଜ ବ୍ୟବସ୍ଥା, ସେମିତି ତା'ର ଅନ୍ତଃସ୍ୱରରେ କରହିଥାଏ ସମାଜ ପରିବର୍ତ୍ତନର ସଂକେତ । ମୋର ସମକାଳୀନ ନାଟ୍ୟକାରମାନଙ୍କଠାରୁ ମୋର ଏହି ବ୍ୟତିକ୍ରମ ନିଶ୍ଚୟ ପାଠକ, ଦର୍ଶକ ତଥା ନାଟ୍ୟ ସମୀକ୍ଷକମାନଙ୍କର ଆଖିରେ ପଡ଼ିବ, ମୋ ନାଟକଗୁଡ଼ିକ ଅନୁଶୀଳନ କଲେ ।

**ପ୍ରଶ୍ନ :** ଆପଣଙ୍କ ପ୍ରାଥମିକ ପର୍ଯ୍ୟାୟର ନାଟକରେ ଆପଣ ପ୍ରେମ, ଯୁବସୁଲଭ ଚପଳତା, ବ୍ୟର୍ଥତା ଆଦିକୁ ଦେଖାଇବା ପାଇଁ ଆଗ୍ରହୀ ଥିଲେ । ଏ ସମ୍ପର୍କରେ କ'ଣ କହିବେ ?

**ଉତ୍ତର :** ଏଇଟା ପ୍ରାୟ ସ୍ରଷ୍ଟାର ଆଦ୍ୟ କୃତିରେ ଦେଖାଯାଇଥାଏ । 'ଫସିଲର ନିଦ୍ରାଭଙ୍ଗ' ଲେଖିଲାବେଳକୁ ମତେ କୋଡ଼ିଏ କିମ୍ବା ଏକୋଇଶି ବର୍ଷ । ରୋମାଣ୍ଟିକ୍ ମନ ନେଇ ପ୍ରେମ ଓ ପ୍ରଣୟର କାହାଣୀ ଲେଖିଛି ନିଶ୍ଚୟ । ତେବେ, ବ୍ୟର୍ଥତା ଓ ନୈରାଶ୍ୟ ଏଠି ମୁଖ୍ୟ । ଏହାପରେ ରଚିତ 'ବିଷାଦ ବୃତ୍ତର କାହାଣୀ' ନାଟକରେ (ସଂଗୀତନାଟକ ଏକାଡ଼େମୀ ତରଫରୁ ବ୍ରହ୍ମପୁରର ପ୍ରକାଶମ୍ ହଲଠାରେ ମଞ୍ଚସ୍ଥ) ମୁଁ ଏହି ବ୍ୟର୍ଥତା ଓ ନୈରାଶ୍ୟର ଚିତ୍ରପଟ୍ଟ ଆଙ୍କିଛି ଏକ ବ୍ୟାପକ ଦୃଷ୍ଟିକୋଣରୁ । ଏହି ନାଟକର ବକ୍ତବ୍ୟ ହେଲା – ଜନ୍ମ ପରଠୁ ତା'ର ମଣିଷ ମୃତ୍ୟୁ ପର୍ଯ୍ୟନ୍ତ ଏକ ବିଷାଦ ବୃତ୍ତ ମଧ୍ୟରେ ନିକ୍ଷିପ୍ତ ହୁଏ । ସେଠାରୁ ନିସ୍ତାର ପାଇବାର ଉପାୟ ନାହିଁ । ଏହି ନାଟକରେ ଗୋଟିଏ ଚରିତ୍ର ମୁକ୍ତିପାଦ ଅନ୍ୟ ଯେଉଁ ଚରିତ୍ରଗୁଡ଼ିକ ମଞ୍ଚକୁ ଆସିଛନ୍ତି, ସେମାନେ ମୁକ୍ତିପାଦର ଭିନ୍ନ ଭିନ୍ନ ଅବସ୍ଥା । ଅବସ୍ଥା ଓ ଅବସ୍ଥାନ୍ତର ଦେଇ ମୁକ୍ତି ଖୋଜୁଥିବା ମଣିଷ ବିଷାଦ ବୃତ୍ତର ପରିଧି ମଧ୍ୟରେ ଆତଯାତ ହୋଇ ଯେଉଁ କଷ୍ଟ ପାଇଥାଏ, ତା'ର ଚିତ୍ର ସେହି ନାଟକରେ ରହିଛି । ଏହାର ସଂଳାପ କବିତା ଗୁଣମଣ୍ଡିତ ଓ ଚରିତ୍ରର ଅବଚେତନକୁ ଉନ୍ମୋଚିତ କରିବାରେ ସମର୍ଥ ।

**ପ୍ରଶ୍ନ :** ଦୁଇ ନାଟକ 'ଫସିଲ୍‌ର ନିଦ୍ରାଭଙ୍ଗ' ଓ 'ବିଷାଦ ବୃତ୍ତର କାହାଣୀ'ରେ ନାୟକର ବ୍ୟର୍ଥ ପ୍ରେମ, ହତାଶା, ବିଫଳତା ପ୍ରତିଫଳିତ ହୋଇଛି । ଏଥିରେ ବ୍ୟକ୍ତିଗତ ଅନୁଭୂତିକୁ ଆପଣ ଚିତ୍ରଣ କରି ନାହାନ୍ତି କି ?

**ଉତ୍ତର :** କୌଣସି ଲେଖାରେ ସ୍ରଷ୍ଟାର ଅନୁଭୂତି ନିଶ୍ଚୟ ରହିବ । ତେବେ, କଳାତ୍ମକ ଅନୁଭୂତିଗୁଡ଼ିକର ରୂପାୟନ ସିଧାସଳଖ ଭାବରେ ଘଟେନାହିଁ; କଳାତ୍ମକ ରୀତିରେ

ସାଧିତ ହୁଏ । 'ଫସିଲ୍‌ର ନିଦ୍ରାଭଙ୍ଗ'ରେ ରହିଛି ମଣିଷର ଅସୁସ୍ଥ ମନ । ତା'ର ପ୍ରତୀକ ହେଉଛି ମୁମୂର୍ଷୁ ବ୍ୟକ୍ତି ଜଣକ । ମନଗହୀରରେ ସୁପ୍ତ ଫସିଲ୍‌ଗୁଡ଼ାକ ଜୀବନ୍ତ ହୋଇଉଠୁଛନ୍ତି ସୂତ୍ରଧାରର ଆବାହନରେ । ନାଟକର ଦୃଶ୍ୟପଟ୍ଟଗୁଡ଼ିକରେ ସେଇ ନିଦ ଭାଙ୍ଗିବାର କାହାଣୀ । ସୂତ୍ରଧାରର ଆବାହନ ନିମିତ୍ତ ମୁଁ ଲେଖିଥିବା ଗୋଟିଏ କବିତାର କେଇଧାଡ଼ି ସେତେବେଳେ ସଂଯୋଜନା କରିଥିଲି । ମୁଁ ଆଇ.ଏ. ଶ୍ରେଣୀରେ ପଢୁଥିଲାବେଳେ ଇଷ୍ଟ୍ ହଷ୍ଟେଲରେ ରହୁଥାଏ । ତା'ର ପ୍ରାଚୀର ପତ୍ରରେ ସେଇ କବିତାଟି ପ୍ରକାଶ ପାଇଥିଲା । ସୂତ୍ରଧାର ମୁହଁରେ ସଂଯୋଜିତ ସେଇ କବିତା କେତେଧାଡ଼ି ହେଲା –

"ମୃତ୍ୟୁମାନେ ହିମଶୀତଳ ସ୍ତବ୍ଧତା
ଭଡ଼ାଟିଆମାନେ ଗତକାଲି ଚାଲିଯାଇଛନ୍ତି
ପରଚୂଲା ଉଡ଼ିଯାଏ ରାତ୍ରିର ହାୱାରେ
କିଏ ଥିଲା ଏ ନିର୍ମଳ ପିଞ୍ଜରାରେ ?"

ଅନୁରୂପ ଭାବରେ ସେଇ ନୈରାଶ୍ୟ ଓ ବିଫଳତାର ଚିତ୍ର 'ବିଷାଦ ବୃତ୍ତର କାହାଣୀ'ରେ ଅଙ୍କିତ । ତେବେ, ଏଠାରେ ବ୍ୟକ୍ତିଗତ ଜୀବନର ଦିଃଖ ଓ ନୈରାଶ୍ୟ ଅପେକ୍ଷା ସମଗ୍ର ମଣିଷର ଦୁଃଖ ଓ ସନ୍ତାପକୁ ଏକ ସ୍ଥିତିବାଦୀ ଦୃଷ୍ଟିକୋଣରୁ ଦିଆଯାଇଛି ।

**ପ୍ରଶ୍ନ :** ମାର୍କସ୍‌ବାଦ ଆଡ଼କୁ ଆପଣଙ୍କର ନାଟ୍ୟ ଦୃଷ୍ଟି ଢଳିବାର କାରଣ କ'ଣ ?

**ଉତ୍ତର :** ମୁଁ ମାର୍କସ୍‌ବାଦ ସମ୍ପର୍କରେ ଗବେଷଣା କରିଛି । ସାହିତ୍ୟର ବିଚାର ଓ ଆଲୋଚନାକୁ ଏବଂ ଏହାର ଏସ୍‌ଥେଟିକ୍‌ସକୁ ବା ନନ୍ଦନତତ୍ତ୍ୱକୁ ମାର୍କସ୍‌ବାଦ ପଢିଥିବା ଯୋଗୁଁ ମୁଁ ଭିନ୍ନ ଦୃଷ୍ଟିରେ ବିଚାର କରିଛି । ତେଣୁ ମୋ ଦୃଷ୍ଟିରେ ବୃହତ୍ତର ସମାଜ-ବ୍ୟବସ୍ଥା ମଧ୍ୟରେ ପୀଡ଼ିତ ହେଉଥିବା ମଣିଷର ଗାଥା ଗୁରୁତ୍ୱପୂର୍ଣ୍ଣ ମନେ ହୋଇଛି ଓ ସେଇଥିରୁ ମୁକୁଳିବା ପାଇଁ ସେ ଜାରିରଖିବାର ସଂଘର୍ଷର କାହାଣୀକୁ ମୁଁ ଉପସ୍ଥାପନ [illegible]ଛି କଳାତ୍ମକ ରୀତିରେ । ମାର୍କସ୍‌ବାଦ ମତେ ସମାଜନିଷ୍ଠ ହେବା ପାଇଁ [illegible]ଛି । ସେ ଦୃଷ୍ଟିରୁ ନାଟ୍ୟକାର ବ୍ରେକ୍‌ଟ ମୋର ଖୁବ୍ ପ୍ରିୟ । ପଚମାନ [illegible] ବ୍ୟବସ୍ଥାକୁ ଭାଙ୍ଗିଦେବାର ଆହ୍ୱାନ ମୋ ନାଟକଗୁଡ଼ିକରେ ସେଥି[illegible] ର[illegible]ଛି ।

**ପ୍ରଶ୍ନ :** ଆପଣଙ୍କର ସମଗ୍ର ନାଟକ ମଧ୍ୟରୁ 'କଂସର ଆତ୍ମା' ଏକ ବହୁଚର୍ଚ୍ଚିତ ନାଟକ । ଏହାକୁ ଆପଣଙ୍କର ନାଟ୍ୟ ସୃଜନର ମୋଡ଼ବୁଲାଣି ବୋଲି କହିବେ କି ?

**ଉତ୍ତର :** ମିଥ୍ ଚେତନାର ପ୍ରୟୋଗ ସହ ଶୋଷଣ ରୂପରେଖ ସନ୍ଧାନ କରାଯାଇଛି ଏହି ନାଟକରେ । 'କଂସର ଆତ୍ମା' ନାଟକର ବାର୍ତ୍ତା ହେଲା ଯୁଗ ଯୁଗ ଧରି କଂସ

ଅବତୀର୍ଣ୍ଣ ହେଉଥିବ ଧରାଧାମରେ । କୃଷ୍ଣଙ୍କ ସହ କଂସର ଦ୍ୱନ୍ଦ୍ୱ, ସଂଘର୍ଷ ଇତି ନାହିଁ । କଂସ ମୃତ୍ୟୁ ପରେ ପୁଣି ଜନ୍ମ ନେଉଥିବ ଓ ତାକୁ ମାରିବା ପାଇଁ କୃଷ୍ଣ ମଧ୍ୟ ଅବତୀର୍ଣ୍ଣ ହେଉଥିବେ ପୃଥିବୀରେ ବାରମ୍ବାର । ଏହି ଦୃଷ୍ଟିଭଙ୍ଗୀକୁ ସାବ୍ୟସ୍ତ କରିବା ପାଇଁ ଯାଇ ମୁଁ ସମାଜ ବ୍ୟବସ୍ଥାର ଦୁଇଟି ପର୍ଯ୍ୟାୟରେ ନିର୍ଯ୍ୟାତନା ଓ ଶୋଷଣର ସ୍ୱରୂପକୁ ଦେଖାଇଛି ଓ ତା ବିରୁଦ୍ଧରେ ଆଲୋକ ସନ୍ଧାନୀ ମାନବାତ୍ମାର ସଂଗ୍ରାମକୁ ମୁଁ ଉପସ୍ଥାପନ କରିଛି । ବୋଧହୁଏ ଓଡ଼ିଆ ନାଟକରେ ମିଥ୍ ଚେତନା ସହ ଟ୍ରେଡ୍ ୟୁନିୟନ୍ ଧର୍ମଘଟ ତଥା ମାର୍କସୀୟ ବିଚାରବୋଧକୁ ଫେଣ୍ଟି ଏପରି କାହାଣୀର ଅବତାରଣା ମୁଁ ପ୍ରଥମେ କରିଛି ।

ପ୍ରଶ୍ନ : ଆପଣଙ୍କ ନାଟକଗୁଡ଼ିକର ଶେଷ ଦୃଶ୍ୟ ଦେଖିଲେ ମନେହୁଏ ଯେପରି ନାଟକ ଏଇଠି ସରିଯାଇନି, ଆହୁରି ବାକି ଅଛି । ଏପରି ନୂତନତା ଦେଖାଇବାର ଅର୍ଥ କ'ଣ ?

ଉତ୍ତର : ଜୀବନ ଏକ ଅସରନ୍ତି ଶୋଭାଯାତ୍ରା । ସତ୍ୟ ଓ ମୂଲ୍ୟବୋଧର ମଶାଲବାହୀ ମଣିଷର ଏ ଶୋଭାଯାତ୍ରାର ପରିସମାପ୍ତି ନାହିଁ ? ଜୀବନକୁ ନାଟକଠାରୁ ମୁଁ କେବେ ଅଲଗା ଭାବିନାହିଁ । ତେଣୁ ସେଇକଥା ହିଁ ଘଟିଛି ମୋ ନାଟକର ପରିସମାପ୍ତିରେ ।

ପ୍ରଶ୍ନ : ଆପଣ ଚାଳିଶି ବର୍ଷ ଧରି ଅନେକ ନାଟକ ଲେଖି ଆମର ନାଟ୍ୟ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଆପଣ କହିବେ କି, ବିଂଶ ଶତାବ୍ଦୀ ଓ ଏକବିଂଶ ଶତାବ୍ଦୀର ଏଇ ଆଦ୍ୟପାଦ ମଧ୍ୟରୁ କେଉଁ ସମୟରେ ନାଟକ ଦେଖିବା ପାଇଁ ଦର୍ଶମାନଙ୍କର ରୁଚି ବଢ଼ିଛି ?

ଉତ୍ତର : ଏକବିଂଶ ଶତାବ୍ଦୀ ହେଉଛି ମୋ ବିଚାରରେ visual imageର ଶତାବ୍ଦୀ । "ଯାହା ନ ଦେଖିବ ଦୁଇ ନୟନେ, ପରତେ ନ ଯିବ ଗୁରୁ ବଚନେ" - ଏ କଥାଟି ଏବେ ଅଧିକତର ସତ୍ୟ ବୋଲି ପ୍ରତିପାଦିତ ହୋଇଛି । ଇଲେକ୍ଟ୍ରୋନିକ୍ସ ମିଡ଼ିଆ ଏ କ୍ଷେତ୍ରରେ ନେଇଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । କୌଣସି ବସ୍ତୁ, ଉତ୍ପାଦିତ ସାମଗ୍ରୀର ବିଜ୍ଞାପନ ଯେପରି ଟିଭି ପରଦାରେ ଦେଖିବାକୁ ମିଳୁଛି, ତାହା ମଧ୍ୟ କେତେ ନାଟକୀୟ ଢଙ୍ଗରେ କରାଯାଉଛି । ବିଂଶ ଶତକରେ ନାଟକ ପ୍ରଦର୍ଶନ ପାଇଁ ସ୍ୱତନ୍ତ୍ର ମଞ୍ଚ ଓ କ୍ଷେତ୍ର ଥିଲା । ମାତ୍ର ତାହା ଏବେ ଆଉ ନାହିଁ । ଏବେ ସମୟ ବଦଳିଛି । ନାଟ୍ୟ ମଞ୍ଚର ଧାରଣା (concept) ବି ବଦଳିଛି । ମଞ୍ଚ ହୋଇଛି ସର୍ବାତଗାମୀ । ନଈକୂଳଠାରୁ ସମୁଦ୍ରର ବେଳାଭୂମି, ଗାଆଁ ହାଟ, ସହରର ଛକ ଜାଗା, ଡ୍ରଇଂରୁମ୍, ଛାତ ଉପର, ଆଦିବାସୀ ପଲ୍ଲୀ ଏସବୁ ସ୍ଥାନ

ଏବେ ମଞ୍ଚ ଭାବରେ ବ୍ୟବହୃତ । ସେଠାରେ ନାଟକମାନ ହେଉଛି ଦର୍ଶକର ଚିନ୍ତା ଚେତନାକୁ ଦୋହଲାଇ – ଦେବାପାଇଁ । ନାଟକ ମଧ୍ୟ ହେଉଛି ଯାତ୍ରା ମଞ୍ଚରେ, ଟିଭି, ସିନେମା ପରଦାରେ । ଏହା ବ୍ୟତୀତ ଆମର ବାସ୍ତବ ଜୀବନରେ, ଘରେ, ଗାଆଁ, ସହର, ସ୍କୁଲ କଲେଜ, ରାସ୍ତାଘାଟ, ଆସେମ୍ବ୍ଲି ହଲ୍, ପାର୍ଲାମେଣ୍ଟ ପ୍ରଭୃତି ସ୍ଥାନରେ ଯେଉଁ ନାଟକମାନ ହେଉଛି, ତାହା ଆଗରୁ କେବେ ଦେଖାଯାଇନଥିଲା କି ? ଏହା ସାଙ୍ଗକୁ ଏବେ ନାଟକ ପଶିଯାଉଛି ଧସେଇ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଯଥା ଗଳ୍ପ, ଉପନ୍ୟାସ, କବିତା, ଫିଚର ପ୍ରଭୃତିର ପରିସରକୁ । ସାହିତ୍ୟର ଯେକୌଣସି ବିଭାଗକୁ ନାଟ୍ୟ-ବିମଣ୍ଡିତ ନ କରି ପ୍ରକାଶ ନ କଲେ ଏବେ ଭଲ ଲାଗୁନି କାହାକୁ ।

ପ୍ରଶ୍ନ : ଏବେ ଯାତ୍ରାନାଟକ ମଞ୍ଚନାଟକର ବିକାଶରେ କିଛି ସଂକଟ ସୃଷ୍ଟି କରୁଛି କି ?

ଉତ୍ତର : ନା, ମୋ ବିଚାରରେ ସେମିତି କିଛି ଘଟୁ ନାହିଁ । ଉଭୟେ ନିଜ ନିଜ ମଞ୍ଚରେ ନାଟକ ହିଁ କରୁଛନ୍ତି । ଉପସ୍ଥାପନ ରୀତି ଭିନ୍ନ ହୋଇପାରେ । ଉଭୟର ପାରସ୍ପରିକ ଆଦାନପ୍ରଦାନରେ ନାଟ୍ୟରୀତି ସମୃଦ୍ଧ ହୋଇପାରିବ । ପରିତାପର ବିଷୟ, ଓଡ଼ିଆରେ-ଓଡ଼ିଶାରେ ଯାତ୍ରାଗୁଡ଼ିକ ଏବେ ପଣ୍ୟବାହୀ ସଂସ୍କୃତିର ସାମଗ୍ରୀ ହୋଇଉଠିଲାଣି । ଏ ସମ୍ପର୍କରେ କେହି ଚିନ୍ତା କରୁନାହାନ୍ତି ।





ଜ୍ଞାନରଞ୍ଜନ ପଣ୍ଡା (୨୮.୮.୧୯୮୮)

ଶ୍ରୀ ପଣ୍ଡା ସାଂପ୍ରତିକ କାଳର ନୂତନ ପ୍ରତିଭାମାନଙ୍କ ମଧ୍ୟରେ ଅନ୍ୟତମ । ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟରୁ ଓଡ଼ିଆ ସ୍ନାତକ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲାପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀବିହାର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଯଥାକ୍ରମେ ସ୍ନାତକୋତ୍ତର ଓ ଏମ୍.ଫିଲ୍ ପରୀକ୍ଷାରେ କୃତିତ୍ୱ ପ୍ରଦର୍ଶନ କରି ଉତ୍ତୀର୍ଣ୍ଣ ହୋଇଛନ୍ତି ଓ ଏବେ ସେ ରେଭେନ୍ସା ୟୁନିଭରସିଟିରେ ଗବେଷଣା କାର୍ଯ୍ୟରେ ନିୟୋଜିତ । ଛାତ୍ରାବସ୍ଥାରୁ ପ୍ରବନ୍ଧ ଓ ସମାଲୋଚନା ଲେଖିବାରେ ସେ ସିଦ୍ଧହସ୍ତ । ଶ୍ରୀ ପଣ୍ଡାଙ୍କର ଲେଖାବଳୀ 'କୋଣାର୍କ', 'ସପ୍ତର୍ଷି', 'ସାଗରିକା', 'ପ୍ରତିବେଶୀ', 'ସମାରୋହ', 'ଅଳକାନନ୍ଦା' ଓ 'ଅଭିଯାନ' ପ୍ରଭୃତି ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ପାଠକମାନଙ୍କଦ୍ୱାରା ଆଦୃତ ହୋଇଛି । ତାଙ୍କର ସମୀକ୍ଷାଗୁଡିକରେ ନୂତନ ଦୃଷ୍ଟିଭଙ୍ଗୀ ଓ ସମାଜତାତ୍ତ୍ୱିକ ବିଶ୍ଳେଷଣ ପରିଲକ୍ଷିତ ।

ଉକ୍ତ ଗ୍ରନ୍ଥଟିରେ ନାଟ୍ୟକାର ବିଜୟ କୁମାର ଶତପଥୀଙ୍କ ନୂତନ ନାଟ୍ୟଚିନ୍ତାର ବୈଶିଷ୍ଟ୍ୟ ସମ୍ପର୍କରେ ଆଲୋଚନାମାନ ସ୍ଥାନିତ ।

- ପ୍ରକାଶକ



ଅଗ୍ରଦୂତ
କଟକ-୨